Bandi Premika
(A collection of Odia Short Stories)
By Akshya Mohanty



ISBN: 81-87115-12-2

ବନ୍ଦୀ ପ୍ରେମିକ

(ଓଡ଼ିଆ ଗଳ୍ପ ସଂକଳନ)

ଅକ୍ଷୟ ମହାନ୍ତି

କଳ୍ପନା-ଜଳ୍ପନା : ନୃସିଂହ ତ୍ରିପାଠୀ

ସମ୍ପାଦନା : ଦେବବ୍ରତ ମଦନରାୟ

ସଂଯୋଜନା : ବାସୁଦେବ ସାହାଣୀ

ପ୍ରଥମ ସଂସ୍କରଣ : ୨୦୨୨

ପ୍ରକାଶକ : ନବଲିପି ପ୍ରକାଶ ଧାରା (ଟ୍ରଷ୍ଟ)
ଓଁ ସ୍ୱସ୍ତିମ୍ ଆପାର୍ଟମେଣ୍ଟ, ଲିଙ୍ଗିପୁର
ଶିଶୁପାଳଗଡ଼, ଭୁବନେଶ୍ୱର -୭୫୧୦୦୨

ମୁଦ୍ରଣ : ପ୍ରିଣ୍ଟ ଆଡ୍, ଭୁବନେଶ୍ୱର

ମୂଲ୍ୟ : ଟ୧୯୯.୦୦

# ସୂଚୀ

# ବନ୍ଦୀ ପ୍ରେମିକ

ହୁଇସ୍କି ! ମୁଁ ପଚାରିଲି - ହଁ, ସେ ଅଧାହସି କହିଲା -

ଦୁହେଁ ପାଖରେ ଥିବା ଗୋଟେ ବାର୍‌କୁ ପଶିଗଲୁ । ବାର୍‌ରେ ପ୍ରବଳ ସିଗାରେଟ୍ ଧୂଆଁ । ଆଖି ପୋଡ଼ିଉଠିଲା । ବିଅରର୍ ଆସି ଆମ ଟେବୁଲ ପାଖରେ ଛିଡ଼ାହେଲା । ମୁଁ ତାକୁ ଦୁଇଟା ହୁଇସ୍କି ପାଇଁ ଅର୍ଡ଼ର ଦେଲି ।

ସେଦିନ ସନ୍ଧ୍ୟାଟା ଖୁବ୍ ଆମୋଦଦାୟକ ସନ୍ଧ୍ୟା ହେବ ବୋଲି ମନେ ହେଉଥିଲା । କାରଣ ରଜତ ମତେ ଅପରାହ୍ଣରୁ କହି ଆସୁଥିଲା ଯେ ଆଜି ଦିନଟା ତା'ର ସବୁଠୁ ଖୁସିର ଦିନ । କିନ୍ତୁ ଖୁସିର କାରଣ ସେ ମାତେ ଆଦୌ ଖୋଲିକରି କହୁନଥିଲା ।

ରଜତ ମୋ ପିଲାଦିନର ବନ୍ଧୁ । ଅବଶ୍ୟ ସ୍କୁଲ କଲେଜରେ ପାଠ ପଢୁଥିଲାବେଳେ, ମୁଁ ନୂଆ ନୂଆ ଚାକିରି କରୁଥିଲାବେଳେ, ତା' ସହିତ ମୋର ଦେଖାହୁଏ ମୋ ଭିଣୋଇଙ୍କ ଘରେ । ସେ ସେତେବେଳେ ନୂଆନୂଆ ଏୟାରଫୋର୍ସରେ ଯୋଗଦେଇଥାଏ । ଗୋଟାଏ ଅସମ୍ଭବ ଆକର୍ଷଣରେ ଦୁହେଁ ଦୁହିଁଙ୍କ ପାଖକୁ ଚାଲିଆସିଲୁ ।

ମୋର ଆଗରୁ କେବେ କୌଣସି ପାଇଲଟ୍ ସହିତ ଘନିଷ୍ଠତା ନଥିଲା । ରଜତକୁ ଦେଖି ତା' ଜୀବନଧାରା ଉପରେ ଟିକେ ଅନୁସନ୍ଧିତ୍ସୁ ହୋଇଉଠିଲି । ତା' ସହିତ ଦୁଇ ତିନି ଦିନ ରହିଥିଲି । ସକାଳୁ ଉଠି ସେ ଉଡାଜାହାଜରେ ଅଭ୍ୟାସ ଫ୍ଲାଇଟ୍‌ରେ ଚାଲିଯାଏ । ନଅଟାବେଳକୁ ଫେରେ । ସକାଳ ପାଂଚଟାରୁ ନଅଟା । ଏଇ ଚାରିଘଣ୍ଟା ମୋର କଟେ କେବଳ ଚିନ୍ତାରେ । ସେଇଥିରୁ ଅନୁମାନ କରୁଥିଲି, ପାଇଲଟ୍‌ମାନଙ୍କ ସ୍ତ୍ରୀମାନେ କିପରି ହୃତ୍‌ସ୍ପନ୍ଦନ ଭିତରେ ରହୁଥିବେ ।

ଦିନେ ସକାଳେ ରଜତ ଓ ମୁଁ ଗୋଟିଏ ଖଟରେ ଶୋଇଛୁ । ଅଭ୍ୟାସ ଅନୁଯାୟୀ ରଜତ ଭୋର୍ ପଂଚଟାରେ ଉଠିଲା । ସେଦିନ ତା'ର କିନ୍ତୁ ଫ୍ଲାଇଟ୍ ନଥିଲା । ବରଂ ସେଦିନ ସକାଳେ ତା'ର ମୋର ସାଂଗହୋଇ ଯାଇ ସପିଂଗ୍ କରିବାର ପ୍ରୋଗ୍ରାମ ଥିଲା । ରଜତ ମତେ ଉଠେଇଲା । ମୁଁ ଖଟ ଉପରେ ବସି ଆଖି ମଳୁମଳୁ ଦେଖିଲି, ସେଇ ରୁମ୍‌ର ଆର ଖଟରେ ଯେଉଁଠି ଆଉଜଣେ ପାଇଲଟ୍ ଶୁଅନ୍ତି, ସେ ପାଇଲଟ୍ ନାହାନ୍ତି । କେବଳ ତାଙ୍କର ବିଛଣା ଗୁଡାଗୁଡ଼ି ହୋଇ ଥୁଆହୋଇଛି । ହଠାତ୍ ରଜତ ପୋଷାକ ପିନ୍ଧି ବାହାରକୁ ଚାଲିଗଲା । ପ୍ରାୟ

ଦିନ ନଅଟା ବେଳକୁ ଫେରିଲା । ପଚାରିବାରେ ଜାଣିଲି, ତା'ରୁମ୍‌ରେ ରହୁଥିବା ପାଇଲଟ୍ ଗତକାଲି ପ୍ଲେନ୍ ଆକ୍ସିଡେଣ୍ଟ୍‌ରେ ମରିଯାଇଛନ୍ତି । ତେଣୁ କାଳେ ରଜତ ମନରେ ଗୋଟେ ଭୟ ପଶଯିବ, ସେଥିପାଇଁ ତାକୁ ଆଉ ଗୋଟେ ପ୍ଲେନ୍‌ରେ ଉଠିବାକୁ ପଠେଇ ଦିଆଗଲା । ଏଇ ହେଉଛି ପାଇଲଟ୍‌ର ଜୀବନ !

ସେହି ରଜତ ଆଜି ମୋ ଆଗରେ ବସିଛି । ମୁହଁରେ କେମିତି ଗୋଟେ ଉତ୍ତେଜନା ।

ମତେ ରଜତ କହିଲା – 'ଆଜି ମୋର ସବୁଠୁ ବଡ଼ ଆନନ୍ଦର ଦିନ ।'

ମୁଁ ପଚାରିଲି – 'ଆରେ ଆନନ୍ଦ କ'ଣ ପାଇଁ କହ ?'

– 'କହିବି କହିବି । ଆଚ୍ଛା, ଆଉ ଗୋଟେ ରାଉଣ୍ଡ୍ ହୁଇସ୍କି ହୋଇଯାଉ ।'

– 'ହଉ ।'

କିନ୍ତୁ ହୁଇସ୍କି ଅର୍ଡ଼ର ଦିଆହେଲା ନାହିଁ । ରଜତ ହଠାତ୍ ଉଠିପଡ଼ି ବାର୍ ବାହାରକୁ ଚାଲିଗଲା । ମୁଁ ମଧ୍ୟ ବାର୍ ପଇସା ତୁଟେଇ ତା' ପଛେପଛେ ରାସ୍ତା ଉପରକୁ ଆସିଲି । ରଜତ ସେତେବେଳେ ଏଣେତେଣେ ସତର୍କ ଦୃଷ୍ଟିରେ ଚାହୁଁଥାଏ । ସତେଯେପରି କାହାକୁ ଖୋଜୁଛି କିମ୍ବା ଅନୁଭବ କରୁଛି, ତାକୁ କିଏ ନଜରରେ ରଖିଛି । ରାସ୍ତା ଉପରକୁ ଆସି ମୁଁ ପଚାରିଲି – 'ରଜତ ! କ'ଣ ହେଇଛି ତୋର ?'

– 'କହିଲି ପରା, ମୋର ଆଜି ସବୁଠୁ ଖୁସିର ଦିନ ।'

– 'କିନ୍ତୁ ତୁ ଏମିତି ଚଙ୍ଗ ଚଙ୍ଗ କାହିଁକି ହେଉଛୁ ?'

ସେ କହିଲା – 'ଦେଖ୍, ଚଙ୍ଗଚଙ୍ଗ ହେବା ପାଇଲଟ୍‌ମାନଙ୍କର ଗୋଟାଏ ଗୁଣ ।'

– 'ଆମେମାନେ ହଣ୍ଡ୍ରେଡ୍ ପରସେଣ୍ଟ୍ ଆକ୍ଟିଭ୍ । ମୁଁ ବର୍ତ୍ତମାନ ରିଟାୟାର୍ କରିଛି । ଭାରତ ସରକାରଠାରୁ ପୁରସ୍କାର ପାଇଛି । କିନ୍ତୁ ଜାଣିଛୁ ଆମ ଜୀବନ... ?'

– 'କ'ଣ ଜୀବନଟା ?'

– 'ମୁଁ ମିଗ୍ ପ୍ଲେନ୍ ନେଇ ଯାଏ ବମ୍ବାର୍ଡ଼ିଂ କରିବାକୁ । ଗଲାବେଳେ ରାଜା ପରି ଯାଏ, କାରଣ ମୋ' ଗୋଡ଼ ତଳେ ରାଡର୍‌ବାର୍ ଥାଏ । ଥରେ ବଜେଇଲେ ଗୋଟେ ବମ୍ ଖସିପଡ଼ିବ । ଅସଂଖ୍ୟ ନାରୀ, ପୁରୁଷ ଓ ଶିଶୁଙ୍କୁ ହତ୍ୟା କରିଛି ମୁଁ ।'

– 'ସେଥିରୁ କ'ଣ ହେଲା ? ସେଇଟା ତୋ କର୍ତ୍ତବ୍ୟ ।'

– 'ମୁଁ ଜାଣେ, ସେଇଟା ମୋ କର୍ତ୍ତବ୍ୟ, କିନ୍ତୁ ବିବେକ ବୋଲି ଗୋଟାଏ ଜିନିଷ ଅଛି ।'

– 'କିନ୍ତୁ ତୁ ବିବେକ କଥା କାହିଁକି ଚିନ୍ତାକରୁ ?'

'ମୁଁ ସବୁବେଳେ ଭାବେ ଯେ, ମୁଁ ଯାହା କରୁଛି, ଭୁଲ୍ କରୁଛି ।'

## ବନ୍ଦୀ ପ୍ରେମିକ

ତା'ପରେ ଆମେ ପୁଣି ଅନ୍ୟ ଗୋଟେ ବାର୍‌ରେ ପ୍ରବେଶକଲୁ । ଏଇ ବାର୍‌ଟା ଅପେକ୍ଷାକୃତ ଅନେକ ପରିଷ୍କାର ଏବଂ ଅବହାୱା ମଧ୍ୟ ଭଲ ।

ରଜତ କହିଲା – 'ଦେଖିଲୁ, ସେଇ କଳାଲୋକଟା ଆଉ ତା' ପାଖରେ ବସିଥିବା ସେଇ ସ୍ତ୍ରୀଲୋକଟା ।'

ମୁଁ ମୁହଁବୁଲେଇ ଅନେଇଲି । ସେମିତି ବିଶେଷ କିଛି ଲକ୍ଷ୍ୟ କରିପାରିଲିନି ।

ପୁଣି ସିଧା ହୋଇ ବସିଲି । ରଜତ କହିଲା – 'କିଛି ମାର୍କ କଲୁ ନା ?'

– 'ସେମାନେ ସ୍ୱାମୀ ସ୍ତ୍ରୀ ନୁହନ୍ତି ।'

– 'ତୁ କେମିତି ଜାଣିଲୁ ?'

– 'ସ୍ୱାମୀ ତା'ର ସ୍ତ୍ରୀଠାରୁ ଅଧିକ ଭଲପାଏ ଆଉ ଜଣକୁ ।'

ମୁଁ ହୁଇସ୍କି ପିଉ ପିଉ କିଛିସମୟପାଇଁ ଅନ୍ୟମନସ୍କ ହୋଇଗଲି ।। ଏଇ ରଜତ ପ୍ରେମକରି ବାହାହୋଇଥିଲା ରଂଜିତାକୁ । ରଂଜିତା ଜଣେ ମିଲିଟାରୀ ମେଜରଙ୍କ ଝିଅ । ଖୁବ୍ ସୁନ୍ଦରୀ । ଗୁଣବତୀ ବି । କିନ୍ତୁ ବାହାଘରର ତିନି ବର୍ଷ ପରେ ବି କୌଣସି ସନ୍ତାନ ହେଲା ନାହିଁ । ରଜତ ବଡ଼ ନିରାଶ ହୋଇଉଠିଲା ।

ରଜତର ଅନ୍ୟ ଝିଅଙ୍କ ସହ ସମ୍ପର୍କ ଗଢ଼ିଉଠିଲା । ସେକଥା ମଧ୍ୟ ସେ ମତେ ଚିଠିରେ ଲେଖି ଜଣେଇଲା । ତା' ପରେ ହଠାତ୍ ଦିନେ ଖବର ଦେଲା ଯେ, ରଂଜିତା ତାକୁ ଛାଡ଼ି ବାପଘରକୁ ଚାଲିଯାଇଛି ।

ରଂଜିତା କାରଣ ଦର୍ଶାଇଛି ଯେ ରଜତ ଖୁବ୍ ବେଶି ମଦ ପିଉଛି ଏବଂ ସେ ଜଣେ ନଂପୁସକ ।

ରଜତ ହୁଇସ୍କି ଗ୍ଲାସ୍ ଓଠପାଖକୁ ନଉ ନଉ ପଚାରିଲା – 'ସ୍ୱାମୀ ସ୍ତ୍ରୀର ସମ୍ପର୍କ କ'ଣ ?'

'ସେ ଆଉ କ'ଣ ? ସେଇଟା ଜଣାକଥା, ପୁରୁଷ ଆଉ ପ୍ରକୃତି, ସେମାନେ ଗଢ଼ିଚାଲିବେ ସଂସାର ।'

'କିନ୍ତୁ ମୋ ସଂସାର ତ ରହିଲାନି ?'

'କାହିଁକି ରହିଲାନି, ସେଇଟା ଟିକେ ଭାବି ଦେଖ୍ । ତୋର ଅତ୍ୟଧିକ ମଦପିଇବା କ'ଣ ଏଥିଲାଗି ଦାୟୀ ନୁହେଁ ?'

'ମୋ ମଦପିଇବା ସହିତ ମୋ ସଂସାରର କୌଣସି ସଂପର୍କ ନଥିଲା । ଥିଲା କେବଳ ମୋ ସ୍ତ୍ରୀ ସନ୍ଦେହ ଯେ ମୁଁ ଅନ୍ୟ କୌଣସି ସ୍ତ୍ରୀ ସହିତ ଅବୈଧ ସମ୍ପର୍କ ରଖିଛି ।'

'କାହିଁକି ?' ମୁଁ ପଚାରିଲି ।

'କାରଣ ମୁଁ ପ୍ଲେନ୍ ନେଇ ଦେଶବିଦେଶକୁ ଯାଉଛି । ସେଠିକୁ ତ ସେ ଗୁପ୍ତଚର

ପଠେଇପାରିବନି ।' ଏତିକି କହୁ କହୁ ଖୁବ୍ ଜୋର୍‌ରେ ହସିଲା । ହସୁହସୁ କହିଲା - 'ସେ ଯା' ହେଉ, ଭାରତ ବାହାରେ ମୋର ଗୋଟେ ପତ୍ନୀ ଅଛି । ମୁଁ କହିଥିଲି ଯେ ଆଜି ମୋର ସବୁଠୁ ସୁଖର ଦିନ ।'

'ହଁ, ସେଇ ସୁଖର ଦିନଟା କାହିଁକି ?' ମୁଁ ପଚାରିଲି ।

ସେଇଠୁ ସେ ଗୋଟେ ଢୋକ ନେଇ କହିଚାଲିଲା ଅନର୍ଗଳ ।

'ଦିନେ ମୁଁ ବୋମାବର୍ଷଣ କରି ଫେରୁଛି, ତଳୁ ଗୋଟେ ଗୋଳା ଆସି ପ୍ଲେନ୍‌ରେ ବାଜିଲା । ପ୍ଲେନ୍‌ରେ ନିଆଁ ଲାଗିଗଲା । ମୁଁ ବେଲ୍‌ଆଉଟ୍‌କରି ପରାସୁଟ୍‌ରେ ତଳକୁ ଓହ୍ଲେଇଲି ।' ତା'ପରେ ଆଉ ଢୋକେ ହୁଇସ୍କି ପିଇ ସେ ପୁଣି କହିଲା - 'ତଳେ ଗୋଟେ ଖପରଲି ଘର ଉପରେ ପଡ଼ିଲି । ସେ ଘରେ କେହି ଥିଲା ପରି ଲାଗିଲାନି । ଘର ଅଗଣାରେ ମୁଁ ଛିଡ଼ାହୋଇ ଚାରିଆଡ଼କୁ ଅନାଇଲି । ସମ୍ଭବତଃ ମୋର ମିଲିଟାରୀ ପୋଷାକ ଦେଖି ଡରରେ କେହି ଜଣେ କବାଟ ଦେଇଦେଇଛି । ଅଳ୍ପ ସମୟ ଅପେକ୍ଷା କଲାପରେ କବାଟ ଆସ୍ତେ ଆସ୍ତେ ଖୋଲିଲା । ଫାଙ୍କ ବାଟେ ଦେଖାଗଲା, ଦୁଇଟି ସୁନ୍ଦର ଆଖି । ମୁଁ ଆସ୍ତେ ଆସ୍ତେ କହିଲି ଯେ ମୁଁ ଶତ୍ରୁ ନୁହେଁ, ଆଶ୍ରୟୀ ।'

ତା'ପରେ ବର୍ଣ୍ଣନାରୁ ମୁଁ ଜାଣିପାରିଲି ଯେ, ସେ ଘରେ ଥିଲା କେବଳ ଜଣେ ଝିଅ । ଯାହାର ବାପା ଓ ଭାଇ ଯୁଦ୍ଧ ପରେ ପ୍ରାଣ ହରାଇଥିଲେ । ଏକା ଏକା ସେ ରହିଥିଲା ଭାଗ୍ୟ ଆଦରି । ସେ ଘରଟା ସହର ତଳି ଘର । ପାଖରେ ବଜାରହାଟ ନ ଥିଲା । ଥଲେ ବି କ'ଣ ? ବଜାରକୁ ଯିବାପାଇଁ ପାଖରେ ତା'ର ପଇସା ବି ନଥିଲା ।

ରଜତ ହୁଇସ୍କି ଗ୍ଲାସ୍ ଶେଷକରି କହିଚାଲିଲା - 'ମୁଁ ବି କେମିତି ତାକୁ ସାହାଯ୍ୟ କରିବି ? ମୋ ପାଖରେ ତ ଭାରତୀୟ ମୁଦ୍ରା । କିନ୍ତୁ ସେ କୁଆଡୁ କୁଆଡୁ ଯୋଗାଡ଼କରି ଆଣି ମତେ ଖାଇବାକୁ ଦିଏ । ବାହାରକୁ ବାହାରି ପାରିବିନି । ବାହାରିଲେ ଧରାପଡ଼ିବି । ପୁଣି ଯୁଦ୍ଧବନ୍ଦୀ ହୋଇଯିବି । ତେଣୁ ଠିକ୍ କଲି ପ୍ରେମ କରିବି ।'

'ଏତେ ବିପଦରେ ତୁ ପ୍ରେମରେ ପଡ଼ିଲୁ କେମିତି ?'

ସେ ଏକ ଅଦ୍ଭୁତ ଅନୁଭୂତି । ରଂଜିତା ସହିତ ମୋର ଗୋଟେ କକ୍‌ଟେଲ୍ ପାର୍ଟିରେ ଦେଖାହୋଇଥିଲା । ମୋଠୁ ଆହୁରି ଅନେକ ସୁନ୍ଦର ପୁରୁଷସବୁ ଥିଲେ । ରଂଜିତା ମତେ ପ୍ରଥମଦେଖାରେ ସେଇଠି ପ୍ରେମରେ ପଡ଼ିଯାଇଥିଲେ ବି ମୋଠୁ ଅପେକ୍ଷାକୃତ ସୁନ୍ଦର ଯୁବକକୁ କ'ଣ ଖୋଜୁନଥିବ ? ପ୍ରାଚୁର୍ଯ୍ୟ ହେଉଛି ଭ୍ରାନ୍ତିର କାରଣ । ଯେଉଁଥିପାଇଁ ସେ ମୋତେ ଦୋଷ ଦେଇ ମୋଠୁ ଦୂରେଇଗଲା । ଭାବ, ସେ ଯଦି ଗୋଟେ ସାଧାରଣ ଘରର ଝିଅ ହୋଇଥାଆନ୍ତା, ସେ କ'ଣ ମାଟିକାମୁଡ଼ି ମୋ ପାଖରେ ରହି ନଥାନ୍ତା ? ମୋ ସାଂଗରେ ପାର୍ଟିକୁ ଯାଇ ସେ

ଦେଖିଲା ଅନେକ ପୁରୁଷ । ମତେ ଅନ୍ୟ ସ୍ତ୍ରୀମାନଙ୍କ ସ୍ୱାମୀମାନଙ୍କ ସହିତ ତୁଳନାକଲା । ଫଳରେ ଆସିଲା ଆମ ଜୀବନରେ ଟ୍ରାଜେଡ଼ି ।'

ମୁଁ ବୁଝିଲି - ଏଇଟା ହାଇ ସୋସାଇଟିରେ ସମ୍ଭବ ।

ପଚାରିଲି - 'କିନ୍ତୁ ତୋର ସେ ମୁସଲମାନ ଝିଅ ସହିତ ପ୍ରେମ ହେଲା କେମିତି ?'

ସେ କହିଲା - 'ଦିନେ ମୁଁ ତା' କୋଠରିରେ ଲୁଚି ରହିଥାଏ । ଆଉ ଗୋଟିଏ ରୁମ୍‌ରେ ରହିଲେ କଥାବାର୍ତ୍ତା କରିବାକୁ ପଡ଼େ । ବେଳେବେଳେ ସେ ବଜାରକୁ ସଉଦା କରିବାକୁ ଯାଏ ।

'ତାକୁ କହିଛୁ ଯେ ତୁ ବିବାହିତ ?'

'ମୋ ଜୀବନର ପ୍ରତ୍ୟେକ ଘଟଣା ତାକୁ କହିଛି ।'

ମୁଁ ଆଶ୍ଚର୍ଯ୍ୟ ହେଲି, ପ୍ରଶ୍ନକଲି - 'କିନ୍ତୁ ବାହାରେ ତ ଯୁଦ୍ଧ ଲାଗିଥିଲା ଚାରିଆଡ଼େ ଗୋଳାବାରୁଦ । ଉପରେ ଉଡୁଥିଲା ବୋମାବର୍ଷୀ ବିମାନ ।'

ସେ ହସିଲା, କହିଲା - 'ସଇଠି ତ ପ୍ରେମ । ଯେତେବେଳେ ଦୁହିଁଙ୍କର ବଂଚିବାର ଆଶାଭରସା ନାହିଁ, ସେଇଠି ପ୍ରେମ ଜଡ଼ିତ - ନିବିଡ଼ରେ - ନିବିଡ଼ତମ ହୋଇଯାଏ । ଆଉ ହେଲା ବି ।'

'କେତେ ଦିନ ରହିଥିଲୁ ସେଠି ?'

'ପ୍ରାୟ ଛଅ ମାସ ।' ରଜତ ଉତ୍ତରଦେଲା ଓ ପୁଣି କହିଲା - 'ଆଉ ଏଠି ଭଲଲାଗୁ ନାହିଁ । ଚାଲ ଅନ୍ୟ ଗୋଟେ ବାର୍‌କୁ ଯିବା ।'

ଦୁହେଁ ରାସ୍ତା ଉପରକୁ ଆସିଲୁ । ରଜତ ଚାରିଆଡ଼କୁ ସତର୍କ ଦୃଷ୍ଟିଦେଇ ମୋ କାର୍‌ରେ ବସିଲା । ଆଉଗୋଟେ ନିରୋଳା ବାର୍‌ରେ ଆମେ ଆସି ବସିଲୁ । ରଜତ ଚାରିଆଡ଼କୁ ନଜର ପକେଇନେଲା, କିଏ କିଏ ବସିଛନ୍ତି । ବେଶି ଲୋକ ନଥିଲେ । ଏଇ ବାର୍‌ଟା ଅପେକ୍ଷାକୃତ ଛୋଟ । ତେଣୁ ବଡ଼ପାଟିରେ କଥା କହିହେବ ନାହିଁ ।

ରଜତ ଟେବୁଲ ଉପରେ ଝୁଙ୍କିପଡ଼ି କହିଲା- ଛଅମାସ ଭିତରେ ମୋର ଦାଢ଼ି ବଢ଼ିଗଲା । ମୁଁ ପୂରାପୂରି ମୁସଲମାନ ପରି ଦେଖାଗଲି ।

'ହଁ, ସେ ଝିଅର ନାଁ କ'ଣ ?' ମୁଁ ପଚାରିଲି ।

'ମୁଁ ତା'ର ନାଁ ଦେଇଥିଲି ସୀମା । କାରଣ ସେ ଭାରତର ସୀମାରେଖାଠାରୁ ମାତ୍ର ସାତ କିଲୋମିଟର ଦୂରରେ ରହିଥିଲା ।'

'ତା'ପରେ କ'ଣ ହେଲା ?'

'ରଂଜିତା ସହିତ ପ୍ରେମ ଓ ବିବାହ ପରେ ମୁଁ ରଂଜିତାକୁ ମାଗିଥିଲି ଗୋଟେ ସନ୍ତାନ ।

କିନ୍ତୁ ଆଶ୍ଚର୍ଯ୍ୟ ସେଇ ରଂଜିତା, ନାରୀ ହୋଇ ଗର୍ଭବତୀ ହେବାକୁ ସେ ଡରୁଥିଲା, କାରଣ ମା'ହେଲେ ତା'ର ସୌନ୍ଦର୍ଯ୍ୟ ନଷ୍ଟ ହୋଇଯିବ । ଶେଷରେ ମତେ ମାତାଲ ଓ ନପୁଂସକ କହି ଛାଡ଼ି ଚାଲିଯାଇଥିଲା । ତେଣୁ ବାଧ୍ୟହୋଇ ସୀମାକୁ ଏକ ସନ୍ତାନଭିକ୍ଷା କଲି । ସୀମା ଗର୍ଭବତୀ ହେଲା । କିନ୍ତୁ ମୋ ହାତକୁ ସନ୍ତାନ ଟେକିଦେଇପାରିଲାନି ।'

'ମାନେ, ଏବେ ତୋ ସନ୍ତାନ ପାକିସ୍ତାରେ !'

'ହଁ, ସେଇ ଖବର ପାଇଛି । ସେଥିପାଇଁ ତ କହିଲି, ଆଜି ମୋର ସବୁଠୁ ସୁଖର ଦିନ ।'

'କ'ଣ ସୁଖର ଦିନ ? ମୁଁ ଅଧୈର୍ଯ୍ୟହୋଇ ପଚାରିଲି ।

'ମୁଁ କୌଣସିମତେ ମୋ ପୁଅକୁ ଭାରତ ଆଣିବି ଆଉ ରଂଜିତାକୁ ଦେଖାଇଦେବି ଯେ ମୁଁ ବାପ ହୋଇପାରେ । କିନ୍ତୁ ଆହୁରି ବି ଗୋଟେ କଥା କହିରଖୁଛି ଯେ ଆଜି ମୋର ସବୁଠୁ ଦୁଃଖର ଦିନ ମଧ୍ୟ ।'

ରଜତ ଉଦାସ ଦିଶିଲା ।

ମୁଁ ପ୍ରଶ୍ନକଲି – 'ପୁଣି ଦୁଃଖର ଦିନ କ'ଣ ?'

ଏଥର ରଜତ ନୀରବତାରେ ତା' ଗ୍ଲାସ୍‌ରୁ ହୁଇସ୍କି ସାରି ବାର୍‌ରେ ଅନ୍ୟ ଗରାଖଙ୍କୁ ଚାହିଁଲା । ସେ ଦୃଷ୍ଟି ଏକ ସତର୍କ ଦୃଷ୍ଟି । ସତେଯେମିତି ସେ କାହାକୁ ଖୋଜୁଥିଲା ।

ରଜତ କହିଚାଲିଲା – 'ମୁଁ କୌଣସିମତେ ଖସିଆସିଲି । ଆଉ ସୀମାକୁ ବିପଦରେ ପକେଇଦେଇ ଆସିଲି । ପରେ ଅବଶ୍ୟ ମନସ୍ତାପ ହୋଇଛି, କିନ୍ତୁ ଆମକୁ ସାନ୍ତ୍ୱନା ଦେଇଛି ଯେ ଏଭ୍ରିଥିଂଗ୍ ଇଜ୍ ଫେୟାର୍ ଇନ୍ ୱାର ଏଣ୍ଡ୍ ଲଭ୍ । ମନହେଉଥାଏ, ସୀମା ସହ ଦେଖା କରିବାକୁ । ଚିଠି ମଧ୍ୟ ଦିଏ; କିନ୍ତୁ ଉତ୍ତର ପାଏନା । ବୋଧହୁଏ ଗୁଇନ୍ଦା ବିଭାଗ ସେ ଚିଠିସବୁ ଜବତ୍ କରିନିଅନ୍ତି । ଆଜି...ଆଜି କିନ୍ତୁ ଚିଠି ପାଇଛି । ସେ ଲେଖିଛି, 'ତୁମେ ଗଲାପରେ ବହୁତ କଷ୍ଟରେ ଅଛି । ଗାଁଲୋକଙ୍କ ପ୍ରଶ୍ନ, ଏ ପିଲା କାହାର ? ଗୁଇନ୍ଦା ଅଫିସରଙ୍କ ପ୍ରଶ୍ନ, ତୋ ସ୍ୱାମୀ ଠିକଣା କ'ଣ ? ଆଉ ପାରୁନି – ତମେ ଆସି ତୁମ ପୁଅକୁ ନେଇଯାଅ । ତା'ପରେ ମୋର ବଂଚିବା ଆଉ ଦରକାର ନାହିଁ ।'

ମୋର ସନ୍ତାନକୁ ମୁଁ ଆଣିବି, ସେଇଟା କ'ଣ ସୁଖର କଥା ନୁହେଁ ? ତେଣୁ ଆଜି ମୋର ସବୁଠୁ ସୁଖର ଦିନ – ହେଲେ ଆଜି ବି ମୋର ସବୁଠୁ ଦୁଃଖର ଦିନ ।

'କାହିଁକି ?'

'ମୁଁ ଯେତେବେଳେ ଏୟାରଫୋର୍ସରେ ପାଇଲଟ୍ ଥିଲି, ସେତେବେଳେ ମୁଁ ସବୁଠୁ ଦୁର୍ଦ୍ଦାନ୍ତ ପାଇଲଟ୍ ବୋଲି ଭାରତ କାହିଁକି ପାକିସ୍ତାନ ଗୁଇନ୍ଦା ମଧ୍ୟ ଜାଣିଥିଲା । ସେଥିପାଇଁ ମୁଁ

ତାଙ୍କର ହିଟ୍ ଲିଷ୍ଟରେ ଥିଲି । ଏବେ ସିନା ରିଟାୟାର୍ କରି ଆସି ଭୁବନେଶ୍ୱରରେ ରହୁଛି । କିନ୍ତୁ ଏବେ ବି ସେମାନେ ମତେ ଖୋଜୁଛନ୍ତି ।

'କିନ୍ତୁ ଇଣ୍ଡିଆ ଭିତରେ ସେମାନେ କ'ଣ ବିଗାଡ଼ିବେ ?'

'ତୁ ଜାଣିନୁ – ଆମ ଗୋଇନ୍ଦା ଯେମିତି ପାକିସ୍ତାନରେ ରହି ଗଣ୍ଡଗୋଳ କରିପାରନ୍ତି, ସେମାନେ ସେମିତି ଆମ ଦେଶରେ ଛଦ୍ମବେଶରେ ରହି ଗଣ୍ଡଗୋଳ କରିପାରନ୍ତି ।'

'ତୁ କେମିତି ଜାଣିଲୁ ଯେ ସେମାନେ ତୋ'ର ପିଛାକରୁଛନ୍ତି ବୋଲି ?

'କାରଣ ଦୁଇବର୍ଷ ପରେ ଯେଉଁ ଚିଠି ସୀମାଠୁ ପାଇଲି, ସେଇଟା କୋଡ଼ିଏ ନମ୍ବର ଚିଠି । ଅନ୍ୟ ଊଣେଇଶଟା ଚିଠି ଗାଏବ । ମୁଁ ପାକିସ୍ତାନରୁ ଆସିଲାବେଳେ ସୀମାକୁ ଦୁଇଟା ଠିକଣା ଦେଇଥିଲି । ଗୋଟିଏ ଆର୍ମି ପୋଷ୍ଟ ଅଫିସ୍‌ର, ଆଉଗୋଟେ ଘର ଠିକଣା । ହୁଏତ ଊଣେଇଶଟା ଚିଠି ସେ ମୋ ଏୟାରଫୋର୍ସ୍ ବେସ୍‌କୁ ଲେଖିଛି । ସେଠି ମତେ ଖୋଜିପାଇବା ସମ୍ଭବ ନୁହେଁ । ତେଣୁ ଶେଷରେ ସେ ମୋ ଘର ଠିକଣାରେ ଚିଠିଦେଲା । ଆଉ ସେ ଠିକଣାକୁ ଖୋଜି ଖୋଜି ହୁଏତ କୌଣସି ପାକିସ୍ତାନୀ ଗୁପ୍ତଚର ଆସିପାରିଥାଏ । ହୁଏତ ମତେ ବାନ୍ଧିକରି ନେଇଯାଇପାରେ । ହୁଏତ ଗୁଳି କରିଦେଇପାରେ । ସେଥିପାଇଁ ଆଜି ମୋର ସବୁଠୁ ଦୁଃଖର ଦିନ ମଧ୍ୟ ।'

କଥାବାର୍ତ୍ତା ଓ ହୁଇସ୍କି ସାରି ଦୁହେଁ ବାର୍‌ରୁ ବାହାରିଲୁ । ସେତେବେଳକୁ ରାସ୍ତା ଶୁନ୍‌ଶାନ ହୋଇଗଲାଣି । କାଁଭାଁ ଗୋଟାଏ ଦି'ଟା ଗାଡ଼ି ଚଉଡ଼ା ରାସ୍ତା ଉପରେ ଚାଲିଛି ।

ହଠାତ୍ ଦୂରରୁ ଗୋଟାଏ ମଟରସାଇକେଲ୍‌ର ଅବାଜ୍ ଶୁଭିଲା । ତା'ରି ହେଡ୍‌ଲାଇଟ୍ ଆଲୁଅରେ ଆମେ ରାସ୍ତା ଟପିଗଲୁ । ହଠାତ୍ ପଛଆଡୁ ରିଭଲଭର୍ ଆବାଜ୍ । ଗୋଟେ ନୁହେଁ, ପର ପର ତିନୋଟି ଗୁଳି ହଠାତ୍ ତା' ଦେହରେ ବିନ୍ଧିହେଲା । ମଟରସାଇକେଲ୍ ଆଖିପିଛୁଳାକେ ଅଦୃଶ୍ୟ ହୋଇଗଲା । ରକ୍ତାକ୍ତ ଅବସ୍ଥାରେ ରଜତ ମୋ' କୋଳରେ ଶୋଇ ଶେଷନିଶ୍ୱାସ ତ୍ୟାଗ ପୂର୍ବରୁ ଅସ୍ପଷ୍ଟ କଣ୍ଠରେ ମତେ କହିଲା – 'ମୁଁ କହି ନଥିଲି, ଆଜି ମୋର ସୁଖର ଦିନ, ପୁଣି ଦୁଃଖର ଦିନ । ଯଦି ସମ୍ଭବହୁଏ ମୋ ପୁଅକୁ ଆଣିପାରୁ । ତେବେ ରଂଜିତାକୁ ନେଇ ପୁଅକୁ ଦେଖାଇବୁ । ଆଉ କହିବୁ ମୁଁ ମଧ୍ୟ ବାପାହୋଇପାରେ ।'

# ଘଣ୍ଟା

ବଳରାମଗଡ଼ର ରାଜାବାଟୀର ଘଣ୍ଟା ଠିକ୍ ରାତି ବାରଟାବେଳକୁ ଢଂଢଂ ହୋଇ ବାଜେ । ସେଇ ଘଣ୍ଟାର ଆୱାଜ୍ ବହୁ ଦୂର ପର୍ଯ୍ୟନ୍ତ ଶୁଣାଯାଏ । ନଈ ସେପାରିରେ ଥିବା ଗାଁକୁ ବି ପରିଷ୍କାର ଶୁଣାଯାଏ । ଘଣ୍ଟା ବାଜିଲେ ଲୋକେ କୁହାକୁହି ହୁଅନ୍ତି – 'ହେଇ ପ୍ରେତିନୀ ଘଣ୍ଟା ବଜେଇଲାଣି ।' ମା'ମାନେ ତାଙ୍କ ପିଲାଙ୍କୁ କୁହନ୍ତି, 'ହେଇ ପ୍ରେତିନୀ ଘଣ୍ଟା ବଜେଇଲାଣି – ଶୋଇପଡ଼ – ଶୋଇପଡ଼ ।'

ବଳରାମଗଡ଼ ଗୋଟେ ଛୋଟ ଗଡ଼ଜାତ । ବ୍ରିଟିଶ୍ ଅମଳରେ ରାଜବାଟୀର ଅବସ୍ଥା ଭଲ ଥିଲା, କିନ୍ତୁ ସ୍ୱାଧୀନତା ପରେ ରାଜବାଟୀର ଅବସ୍ଥା ଧୀରେ ଧୀରେ ଖରାପ ହେବାକୁ ଲାଗିଲା । ରାଜବାଟୀରେ ଦୁଇ ତିନି ଘର ହାତୀ ଥିଲେ । ମାହୁନ୍ତ ଥିଲେ । ଚାରିପାଂଚଟା ଘୋଡ଼ା ଓ ତାଙ୍କ ସେବାଯତ୍ନ ପାଇଁ ସଇସ ମଧ୍ୟ ଥିଲେ । ଅନେକ ଚାକରବାକର, ଅମଲା, ନାଏବ ଥିଲେ । ଏବେ କିନ୍ତୁ କେହି ନାହାନ୍ତି । କେବଳ ରାଜାଙ୍କୁ ରୋଷେଇ କରିଦେବାପାଇଁ ଅଛି ଗୋବିନ୍ଦା ।

ବଳରମଗଡ଼ରେ ଗୋଟେ ଛୋଟ ବସ୍‌ଷ୍ଟପ୍ ଅଛି । ସେଇ ବସ୍‌ଷ୍ଟାଣ୍ଡ୍ ପାଖରେ କେତେଗୁଡ଼ିଏ ଛୋଟବଡ଼ ଦୋକାନ ମଧ୍ୟ ଅଛି । ବଜାର ଭିତରେ ସେତିକି, ଆଉ ରାଜବାଟୀଠୁ ଅଳ୍ପ ଦୂରରେ ବଳରାମଗଡ଼ ଗାଁ । ଗାଁରେ ଲୋକେ ହେବେ ହଜାରେ ଖଣ୍ଡେ । କିନ୍ତୁ ଗ୍ରାମବାସୀମାନେ କୁହନ୍ତି ବଳରାମଗଡ଼ ଟାଉନ୍ ।

ରାଜବାଟୀର ପାଖଦେଇ ଖରସୁଆଁ ନଈ ବହିଯାଇଛି । ଗାଁଲୋକଙ୍କର ରୋଜଗାରର ସୂତ୍ର ହେଲା ଏକମାତ୍ର ଏଇ ନଈ । ନଈରେ ପ୍ରଚୁର ମାଛ । ସେଇ ମାଛ ନେଇ ସେମାନେ ବଜାରରେ ବିକ୍ରିକରି ପ୍ରାୟ କୌଣସିମତେ ଚଳିଯାଆନ୍ତି ।

କିମ୍ବଦନ୍ତୀରୁ ଜଣାଯାଏ, ଏ ଘଣ୍ଟା ବାଜିବାର କାରଣ । ରାଜା, ଯାହାକୁ ସମସ୍ତେ ଛାମୁଁ ବୋଲି ଡାକନ୍ତି, ବର୍ତ୍ତମାନ ପ୍ରାୟ ସତୁରି ଚଉସ୍ତରି ବର୍ଷର ବୃଦ୍ଧ । ତାଙ୍କ ଟୋକାଦିନେ ସେ ଖୁବ୍ ଭଲ ଦେଖିବାକୁ ଥିଲେ । ସେ ସବୁବେଳେ ଘୋଡାଗାଡ଼ିରେ ବୁଲାଚଲା କରୁଥିଲେ । ବେଳେବେଳେ ତାଙ୍କୁ ହାତୀ ଉପରେ ବସି ବୁଲିବାର ମଧ୍ୟ ବଳରାମଗଡ଼ର ବୁଢ଼ାବୁଢ଼ୀମାନେ ଦେଖିଛନ୍ତି ବୋଲି କୁହନ୍ତି ।

ସେତେବେଳେ ସେ ଯୁବରାଜ ଥିଲେ । ବୁଢ଼ାରାଜା ବଂଚିଥିଲେ । ସେ ଖୁବ୍ ସୌଖୀନ ଲୋକ ଥିଲେ । ପୁଅକୁ ପାଠ ପଢ଼େଇବାକୁ ସେ ରାଜକୁମାର କଲେଜକୁ ପଠେଇଥିଲେ । ବର୍ଷରେ ମାସକପାଇଁ ଛୁଟି ନେଇ ଯୁବରାଜ ଆସନ୍ତି । ସେଇ ସମୟରେ ସେ ଘୋଡ଼ାଚଢ଼ି ବଳରାମଗଡ଼ ସାରା ବୁଲାବୁଲି କରନ୍ତି । ଗରିବଙ୍କର ଦୁଃଖ ଗୁହାରି ଶୁଣନ୍ତି । ମୋଟ ଉପରେ ଯୁବରାଜଙ୍କୁ ସମସ୍ତେ ଭଲ ପାଆନ୍ତି । ଥରେ ସେ ଖରାଛୁଟିରେ ଆସିଥିଲେ । ସେଇ ସମୟରେ ବୁଢ଼ାରାଜାଙ୍କର ଦେହାନ୍ତ ହେଲା । ଯୁବରାଜଙ୍କୁ ରାଜା ରୂପେ ଅଭିଷେକ କରାଗଲା ଓ ତା'ପରେ ତାଙ୍କ ପିତାଙ୍କ ଶରୀର ଶ୍ମଶାନକୁ ଗଲା ।

ପିତାଙ୍କ ଦେହାନ୍ତ ପରେ ଯୁବରାଜ ଅର୍ଥାତ୍ ନୂଆ ଛାମୁଁ କେମିତି ବେପରୁଆ ହୋଇଗଲେ । ତହବିଲ୍‌ରୁ ଅନେକ ପଇସା ନେଇ କଲିକତା, ବମ୍ବେ ଯାଇ ଖର୍ଚ୍ଚ କରିଦେଇ ଆସନ୍ତି । ରାଜକୁମାର କଲେଜରେ ପାଠପଢ଼ା ମଧ୍ୟ ଇତି ହେଲା ।

ଦିନେ ସକାଳେ ଦେଖାଗଲା – ବସ୍‌ରୁ ଜଣେ ସୁନ୍ଦରୀ ଯୁବତୀ ଓହ୍ଲାଇଲେ । ସେ ପାଖ ଦୋକାନରେ ପଚାରିଲେ ବଳରାମଗଡ଼ ରାଜବାଟୀର ଠିକଣା । ଠିକଣା ଜାଣି ସେ ଚାଲିଚାଲି ଚାଲିଗଲେ ରାଜବାଟୀ ଆଡ଼କୁ । ଲୋକମାନେ କୁହାକୁହି ହେଲେ ଯେ, ଇଏ ବୋଧହୁଏ ଜଣେ ରାଜକୁମାରୀ ।

ତା'ପରେ ତାଙ୍କୁ ଆଉ କେହି ଦେଖିନି । ସେ ଯେଉଁ ଥରେ ରାଜବାଟୀ ଭିତରେ ପଶିଗଲେ, ଆଉ ବାହାରି ନାହାନ୍ତି । ଛାମୁଁଙ୍କର ବାହାଘର ହୋଇଥିଲେ ବଳରାମଗଡ଼ରେ ତ ସମସ୍ତେ ଜାଣିଥାଆନ୍ତେ, କିନ୍ତୁ ଦିନେ ଗୋଟେ ଅଦ୍ଭୁତ ଚରିତ୍ର ଆସି ବସ୍‌ରୁ ଓହ୍ଲାଇଲା, ଲୋକମାନଙ୍କୁ ସେଇ ଯୁବତୀ ସମ୍ପର୍କରେ ପ୍ରଶ୍ନ କଲା । କେହି କେହି ଖବରଦେଲେ ଯେ, ସେଇ ଯୁବତୀ ରାଜବାଟୀ ଆଡ଼କୁ ଯାଇଛନ୍ତି । ଲୋକଟା ବିଡ଼ି ଟାଣି ଟାଣି ରାଜବାଟୀ ପାଖରେ ପହଂଚିଲା । ବାହାରେ ଛିଡ଼ା ହୋଇଥିବା ପାଇକ ତାକୁ ଭିତରକୁ ଯିବାକୁ ଦେଲା ନାହିଁ । ସେ ବଜାରକୁ ଫେରିଆସି ଗୋଟେ ଚା' ଦୋକାନରେ ବସି ଚା' ପିଇବାକୁ ଆରମ୍ଭ କଲା ।

ଚା'ଦୋକାନର ମାଲିକ ବଳରାମଗଡ଼ର ଜଣେ ପ୍ରସିଦ୍ଧ ଲୋକ । ତା' ନାମ ଭମର ସାହୁ । ଭମର ସାହୁ ମନରେ ସନ୍ଦେହ ହେଲା । ସେ ପଚାରିଲା –

## ବନ୍ଦୀ ପ୍ରେମିକ

– 'ଭାଇ, କୋଉଠୁ ଆସିଲ ?'

ଲୋକଟା ବଙ୍ଗଳାରେ ଉତ୍ତରଦେଲା, 'କଲିକତାରୁ ଆସିଛି ।'

– 'କ'ଣ ରାଜାସାହେବଙ୍କ ସହିତ କିଛି କାମ ଥିଲା ?'

– 'ହଁ, ସେମିତି ।'

– 'ଆଉ ଯାଇଥିଲ ତ ରାଜାବାଟୀକୁ, ଗଲନି ରାଜାସାହେବଙ୍କ ପାଖକୁ ?'

– 'ମୋ ନାଁ ଶୁଣି ସେ ଗେଟ୍‌କିପର୍ ଛାଡ଼ିଲାନି । ଆଗରୁ ବୋଧହୁଏ କୁହାହୋଇଥିଲା ମତେ ନ ଛାଡ଼ିବାକୁ ।

ଭମର ସାହୁ ଏ ରହସ୍ୟ ବୁଝିପାରିଲାନି । ଆଉ ପ୍ରଶ୍ନ କରିବାକୁ ତା'ର ସାହସ କୁଳେଇଲାନି । ସେ ଲୋକଟା ରାଜବାଟୀ ଉପର ଗମ୍ବୁଜକୁ ଚାହିଁ ଖାଲି ବିଡ଼୍‌ବିଡ଼୍ ହେଉଥିଲା । ସତେଯେମିତି ସେ ରାଜବାଟୀକୁ ଭସ୍ମ କରିଦେବ । ଗୁଡେ ଅକଥନୀୟ ଭାଷାରେ ସେ ରାଜାଙ୍କୁ ଗାଳିଦେବାକୁ ଆରମ୍ଭ କରିଦେଲା । ଭମର ସାହୁ ଆଉ ସହ୍ୟ କରିପାରିଲାନି । ଏଥର ମୁହଁ ଖୋଲିଲା –

– 'ହେଇତି, ତମେ ଆମ ରାଜ୍ୟରେ ବସି ଆମ ରାଜାକୁ ଶୋଧି ପାରିବନି । ମୁଣ୍ଡଗଣ୍ଡି ଅଲଗା ହେଇଯିବ । କ'ଣ ହୋଇଛି କୁହ ।'

– 'ମାସକ ତଳେ ଟୋକୀ ଜଣେ ଏଇଠି ବସ୍‌ଷ୍ଟାଣ୍ଡ୍‌ରୁ ଓହ୍ଲେଇ ରାଜବାଟୀକୁ ଯାଇଥିଲା ?'

– 'ହଁ ଯାଇଥିଲା । କ'ଣ ହେଲା ?'

– 'ସେ ଟୋକୀ କିଏ ଜାଣ ?'

– 'ଲୋକମାନେ କହୁଥିଲେ, ସେ ଜଣେ ରାଜକୁମାରୀ ।'

– 'ମିଛ ମିଛ, ସେ ଜନ୍ମାରୁ ରାଜକୁମାରୀ ନୁହେଁ । ସେ କଲିକତାର ସୋନାଗାଛିର ଗୋଟେ ବେଶ୍ୟା । ମୁଁ ତା'ର ଦଲାଲ୍ । ରାଜାସାହେବ ସାତଦିନ ପାଇଁ ମୋଠୁ ଭଡାରେ ଆଣିଥିଲେ । କିନ୍ତୁ ମାସେ ହୋଇଗଲା, ଫେରେଇବାର ନାମଗନ୍ଧ ମଧ୍ୟ ଧରୁନାହାନ୍ତି ।'

ଭମର ସାହୁ ପ୍ରଥମେ ବୁଝିପାରିଲାନି । ଯେଉଁ ଝିଅଟାକୁ ଦେଖି ପ୍ରଥମେ ସେ ଭାବିଥିଲା ଯେ ରାଜକୁମାରୀ ହୋଇଥିବ ବୋଲି – ସେ ଜଣେ ବେଶ୍ୟା ! ନା ନା, ରାଜାସାହେବ ଏପରି କରିପାରିବେନି । ସେ କାହିଁକି ଜଣେ ବେଶ୍ୟାକୁ ଆଣିବେ ! ତାଙ୍କୁ କ'ଣ ରାଜକୁମାରୀ ଅପ୍ରାପ୍ତ ହୋଇଛନ୍ତି ! ଭମର ସାହୁ ପଚାରିଲା –

– 'ତମେ ସତ କହୁଛ ?'

– 'ସତ କି ମିଛ ତୁମ ରାଜାଙ୍କୁ ଯାଇ ପଚାରିଆସ ।'

ପ୍ରକୃତରେ ସେଇ ଝିଅ ଆସିବାଦିନରୁ ଛାମୁଁ ରାଜବାଟୀରୁ ବାହାରି ନାହାନ୍ତି କି ସେ

ଝିଅକୁ ଆଉ କେହି ଦେଖି ନାହାନ୍ତି । କେବଳ ଦିନେ ଦେଖାଯାଇଥିଲା, ଛାମୁଁ ସେ ଝିଅକୁ ନେଇ ସିଂହଦ୍ୱାରରେ ଘଣ୍ଟା ଦେଖାଇ ଥିଲେ ଆଉ ବଜାଇଥିଲେ ।

ଘଣ୍ଟାର ଉଚ୍ଚତା କେତେ କେହି ଜାଣନ୍ତିନି । କାରଣ ଗମ୍ବୁଜ ଉପରକୁ ଉଠିବାକୁ କାହାକୁ ଅନୁମତି ଦିଆଯାଏନା । ଘଣ୍ଟା ଯେଉଁ ଦଉଡ଼ିଦ୍ୱାରା ଟଣାହୁଏ, ସେଇଟା ପୁରୀ ଜଗନ୍ନାଥଙ୍କ ରଥଦଉଡ଼ି ପରି ଶକ୍ତ । ଘଣ୍ଟା ପୁଣି ଟଙ୍ଗା ହୋଇଛି ଖୁବ୍ ଶକ୍ତ ଲୁହା ଶିକୁଳିରେ ।

ସେଇ ଘଣ୍ଟା ଦେଖିବା ପରେ ଝିଅଟି ଯେ ନହର ଭିତରକୁ ଗଲା, ଆଉ ବାହାରିଲା ନାହିଁ । ଏଣେ ବଜାର ଭିତରେ ଆଗନ୍ତୁକ ଯୁବକଟି କଲିକତା ଫେରିବାକୁ ନାରାଜ । ସେ ଜିଦ୍ ଧରିବସିଛି, ସେଇ ସୋନାଗାଛିର ବେଶ୍ୟାକୁ ନେଇ ଫେରିବ । ଭମର ସାହୁ ଦୋକାନଘର ବାରଣ୍ଡାରେ ସେ ପ୍ରତ୍ୟେକ ଦିନ ଶୁଏ ।

ବଲରାମଗଡ଼ ବଜାର ରାତି ନଅଟାବେଳକୁ ଶୁନ୍‌ଶାନ୍ ହୋଇଯାଏ । ଶୁଣାଯାଏ, ରାତି ଦଶଟା ପରେ ବଜାର ରାସ୍ତାରେ ବାଘ ବୁଲାଚଲା କରନ୍ତି । କନ୍ତୁ ସେଇ ଦଲାଲ୍‌ର ଡର ନାହିଁ ।

ଦିନେ ଭମର ସାହୁ ସାହସକରି ରାଜବାଟୀକୁ ଗଲା । ସିପେଇ ହାତରେ ଖବରଦେଲା । ଛାମୁଁ ଡକେଇପଠେଇଲେ । ଭମର ସାହୁ ହାତଯୋଡ଼ି କହିଲା –

– 'ଛାମୁ ମାଫ୍ କରିବେ...'

– 'କ'ଣ କହିବାର ଅଛି କହ ?'

– 'ଛାମୁଁ, କଲିକତାରୁ ଗୋଟେ ଲୋକ ଆସି ନିଜକୁ ଦଲାଲ ବୋଲି କହୁଛି । ଆପଣ ଯେଉଁ ଝିଅଟି ଆଣିଛନ୍ତି, ତାକୁ ନ ନେଲେ ସେ ଫେରିବ ନାହିଁ । ମାସେ ହେବ ସେ ମୋ ଦୋକାନ ବାରଣ୍ଡାରେ ଶୋଉଛି । ମୁଁ କ'ଣ କରିବି ଛାମୁଁ ?'

– 'ସେ ଲୋକକୁ ଆମ ପାଖକୁ ପଠାଇଦିଅ । ଆମେ ତା'ର ବିଚାର କରିବା ।'

ସେଦିନ ସନ୍ଧ୍ୟାବେଳେ ଦଲାଲ୍‌ଟା ବିଡ଼ି ଟାଣି ଟାଣି ସିଂହଦ୍ୱାର ପାଖରେ ପହଂଚିଲା । ସିପେଇକୁ ରାଜାଙ୍କୁ ଖବରଦେବାକୁ କହିଲା । ପ୍ରାୟ ଅଧଘଣ୍ଟା ପରେ ସିପେଇ ଆସି ତାକୁ ଡାକିନେଲା ଘର ଭିତରକୁ । ଛାମୁଁ ବସିଛନ୍ତି ଗୋଟେ ବଡ଼ ଚଉକିରେ । କାନ୍ଥରେ ଝୁଲୁଛି ଗୋଟେ ବଡ଼ ଘଣ୍ଟା । ଘର କାନ୍ଥ ସାରା ରାଜା ଓ ରାଣୀମାନଙ୍କର ତୈଳଚିତ୍ର ଓ ଘର ବାଘମୁଣ୍ଡରେ ସଜାହୋଇଛି ।

ଛାମୁ ପଚାରିଲେ – 'କ'ଣ ମନୋହର କାମ ଥିଲା ?'

ମନୋହର ଛାମୁଁଙ୍କ ଆଗରେ ନିଃସଙ୍କୋଚରେ ବିଡ଼ି ଟାଣୁଥାଏ । ସେ ବିଡ଼ି ଟାଣୁ ଟାଣୁ କହିଲା –

## ବନ୍ଦୀ ପ୍ରେମିକ

'ହଜୁର, ଭୁଲିଗଲେ ସବୁ ଓ୍ୱାଦା ? ମୁଁ କହିଥିଲି ନା, ସୁହାସିନୀକୁ ସାତଦିନ ରଖିବେ । ଆପଣ କ'ଣ ଦେଢ଼ମାସ ରଖିଲେଣି - ମୋର ସେପାଖରେ ବେପାର ଘାଟା ।'

– 'ମନୋହର, ତୋର ଜାଣିବା ଦରକାର ଆମେ ପଇସା ଦେଇ ଆଣିଛୁ । ମାଗଣାରେ ନୁହେଁ । ଆଉ ଆମର ଯାହା ପାଇଁ ମନ ବଳିଗଲା, ଆମେ ତାକୁ ଛାଡୁନା ।'

– 'ରାଜାସାହେବ, ମୁଁ ଆପଣଙ୍କୁ ବଦନାମ କରିଦେବି । ବଳରାମଗଡ଼ର ପ୍ରଜାମାନେ ଆପଣଙ୍କ ଉପରେ ଛେପପକାଇବେ ।'

– 'ଆବେ, ବ୍ରିଟିଶ୍ ସରକାର ଛଡ଼ା ମୁଁ କାହାକୁ ଡରେନା । ମୋ  ପ୍ରଜା ମୋ ଉପରେ ଛେପ ପକେଇବେ, ନା ଖାଲି ଫୁଟୁକି ମାରିଲେ ତୋ ଛାଲ ଉତାରିଦେବେ ? ଶୁଣ୍, ବହୁଦିନ ତଳେ ମୋ ବାପା ଗୋଟେ ଭଲ ଘୋଡ଼ା କିଣିଥିଲେ । ତାକୁ ଗୋଟେ ବ୍ରିଟିଶ୍ ସାହେବ ଆଖି ପକେଇଲା - ଓ୍ୱାଜିବ୍ ଦାମ୍ ଦେଇ ସେ କିଣିବେ । ବାପା ହସିହସି କହିଲେ, 'ଆସନ୍ତୁ ଚାରିଟାବେଳେ । ଠିକ୍ ଚାରିଟାବେଳେ ସେ ସାହେବ ଆସି ପହଂଚିଲେ । ଘୋଡ଼ାଟା ସିଂହଦ୍ୱାର ପାଖରେ ବନ୍ଧାଥିଲା । ସାହେବ ଆଗରେ ସେ ବନ୍ଧୁକ ଉଠେଇ ଗୁଳିଚଳେଇଲେ । ଘୋଡ଼ାଟା ମରିଗଲା । ସାହେବକୁ ହସି ହସି ବାପା କହିଲେ, 'ସାହେବ, ଘୋଡା ନବ ବୋଲି କହୁଥିଲ, ନେଇଯାଅ - ଏ ମଲା ଘୋଡାଟା । ଆବେ ଆମ ବଂଶ ଯେମିତି ଆମ ରାଜୁତି ସେମିତି, ଆଉ ତୁ ଆସିଲୁ ସୁହାସିନୀକୁ ନେବାପାଇଁ ! ନେଇଯା' ପାଖଘରେ ସେ ବନ୍ଧାହୋଇ ପଡ଼ିଛି ।'

ମନୋହର ପାଖଘରର ଦରଜା ଠେଲିଦେଇ ଦେଖିଲା, ଗୋଟେ ଖୁଣ୍ଟରେ ସୁହାସିନୀ ବନ୍ଧାହୋଇଛି । ମନୋହର ଦଉଡ଼ିଗଲା ତାକୁ ମୁକ୍ତ କରିବାକୁ; କିନ୍ତୁ ସୁହାସିନୀ ରାଗିଯାଇ କହିଲା – 'ତତେ କିଏ କହିଲା ଏଠିକୁ ଆସିବାକୁ ? ମୁଁ ତ ଜୀବନସାରା ତୋ ଚକ୍‌ରରେ ରହିବି ବୋଲି କଥା ଦେଇନଥିଲି ?'

– 'ଚୁପ୍ ଶାଳୀ, ସେଠି କଲିକତାରେ ଶ୍ୟାମ୍ ଅଗ୍ରଓ୍ୱାଲ୍ ଘରେ ସାତଦିନ ରହିବୁ ବୋଲି କହିଲୁ ବୋଲି ମୁଁ ତା'ଠୁ ଆଡ୍‌ଭାନ୍‌ସ ନେଇଥିଲି । ବର୍ତ୍ତମାନ ତତେ ଯିବାକୁପଡ଼ିବ ।'

ଏତିକି କହୁ କହୁ ମନୋହର ସୁହାସିନୀ ଦେହରେ ବନ୍ଧାହୋଇଥିବା ଦଉଡ଼ିସବୁ ଖୋଲିବାକୁ ଲାଗିଲା । ପଛଆଡୁ ଗୋଟେ ବନ୍ଧୁକର ଆଓ୍ୱାଜ୍ । ଗୋଟିଏ ଗୁଳିରେ ସୁହାସିନୀ ଓ ମନୋହର ଶେଷ ।

ଛାମୁଁ ଡାକିଲେ ତାଙ୍କ ଚାକରକୁ । ଆଖିପିଛୁଳାକେ ଦୁହିଁଙ୍କ ଶବକୁ ଖରସୁଆଁ ନଈ ଭିତରକୁ ଫିଙ୍ଗିଦିଆଗଲା । ଛାମୁଁ ନିର୍ଦ୍ଦୋଷ । କେହି ଜାଣନ୍ତିନି ଛାମୁଁ ଏମାନଙ୍କୁ ମାରିଛନ୍ତି ବୋଲି ।

କିନ୍ତୁ ଭମର ସାହୁ ସକାଳେସଂଜେ ଦୁଇଥର ନଈକୁ ଗାଧୋଇବାକୁ ଯାଏ । ସେ ଦୁଇଟା ଶବକୁ ଖରସୁଆଁ ନଈରେ ଦେଖି ଚିହ୍ନିପାରିଲା । କିନ୍ତୁ ସେ ମୂର୍ଖଲୋକ । ତା'ର ଏତେ ସାହସ କାଇଁ ପୁଲିସ୍‌କୁ ଖବର ଦେବାପାଇଁ ! କେବଳ କେତେଜଣ ସାଙ୍ଗକୁ ସେ ଏଇ

ଦୁଇଟା ଶବ ବିଷୟରେ କହିଥିଲା । ସମସ୍ତେ କହିଲେ - ସେଇ ମାଇକିନିଆର ଆତ୍ମା ରାଜବାଟୀରେ ଅଛି । ସେ ବହୁତ କରାମତି ଦେଖେଇବ ।

ତେଣୁ ରାଜବାଟୀରେ ଯେଉଁ ରାତି ବାରଟାବେଳେ ଘଣ୍ଟା ବାଜେ, ବଳରାମଗଡ଼ର ସମସ୍ତେ ଭାବନ୍ତି ଯେ ସୁହାସିନୀର ପ୍ରେତାତ୍ମା ଏହାକୁ ବଜାଉଛି ।

ସେଇଦିନଠୁ ସମସ୍ତେ ରାତି ବାରଟାବେଳକୁ ଡରିଯାଇ ଶୋଇପଡ଼ନ୍ତି । ମା' କୋଳରେ କଅଁଳା ଛୁଆ ବି ଶୋଇପଡ଼େ ।

କ୍ରମେ କ୍ରମେ ସମୟ ବଦଳିଲା । ଭାରତବର୍ଷ ସ୍ୱାଧୀନ ହେଲା ଏବଂ ବଳରାମଗଡ଼ ଆଉ ଗୋଟିଏ ଗଡ଼ଜାତ ହୋଇ ରହିଲାନି । ତାହା ଓଡ଼ିଶା ସହିତ ମିଶିଗଲା । ବଳରାମଗଡ଼ର ଛାମୁଁ ପ୍ରିଭିପର୍ସ ବାବଦରେ ବର୍ଷକୁ ପ୍ରାୟ ଲକ୍ଷେ ଦେଢ଼ଲକ୍ଷ ଟଙ୍କା ପାଇଲେ । ସେତେବେଳେ ତାଙ୍କ କାଟ୍‌ତି କହିଲେ ନସରେ, କିନ୍ତୁ ବାହାହେବାକୁ ତାଙ୍କୁ କୌଣସି ରାଜକୁମାରୀ ମିଳିଲେନି । କାରଣ ବଳରାମଗଡ଼ ଓଡ଼ିଶାର ସବୁଠୁ ଛୋଟ ଗଡ଼ଜାତ । ଅନ୍ୟାନ୍ୟ ବଡ଼ ଗଡ଼ଜାତ ରାଜା ତାଙ୍କୁ କନ୍ୟା ଦେବାକୁ ରାଜିହେଲେ ନାହିଁ ।

ତା'ପରେ ବି ଏଇ ଯେଉଁ ଅପବାଦ ଯେ, ସୁହାସିନୀର ପ୍ରେତନୀ ଆସି ରାତି ବାରଟାବେଳେ ଘଣ୍ଟାବଜାଉଛି - ସେଇଟା ବି ତାଙ୍କ ବିବାହ ପଥରେ ଗୋଟେ ଅସୁବିଧା କରିଦେଲା । ଫଳରେ ରାଜାସାହେବ ଆଉ ରାଜବାଟୀ ଭିତରୁ ବାହାରି ନାହାନ୍ତି । ତାଙ୍କର ଯେତିକି ନିଯୋଗ ଥିଲା, ଧୀରେ ଧୀରେ ସେମାନେ ମଧ୍ୟ ଅପସରିଗଲେ । କେବଳ ରହିଲା ରାନ୍ଧୁଣିଆ ଗୋବିନ୍ଦା । ଗାବିନ୍ଦା ତାଙ୍କୁ ଖାଇବାକୁ ବାଢ଼ିଦିଏ । ତାଙ୍କୁ ଗୋଧୋଇଦିଏ । କହିବାକୁ ଗଲେ ଗୋବିନ୍ଦା ରାଜାଙ୍କର ସବୁ କାମ କରେ । ଗୋବିନ୍ଦା ତେଣୁ ଯେତେବେଳେ ଯାହା ମାଗେ, ଛାମୁଁ ସଂଗେ ସଂଗେ ମଂଜୁର କରିଦିଅନ୍ତି । ଗୋବିନ୍ଦା ଛାମୁଁଙ୍କଠାରୁ ଟଙ୍କାନେଇ ବେଶ୍ ଗୋଟେ ଘର କରିଛି । ଆଗରେ ଦୁଇଟା ଦୋକାନ ଘରଭଡ଼ା ଦେଇଛି । କିନ୍ତୁ ଗୋବିନ୍ଦା ଏବେ ବି ଛାମୁଁଙ୍କୁ ଛାଡ଼ିନି ।

କେବଳ ନୀରବ ସାକ୍ଷୀ ଭମର ସାହୁ ଛାମୁଁଙ୍କୁ ମୁଣ୍ଡିଆମାରେ, କିନ୍ତୁ ସେ ମଢ଼ାଦୁଇଟା ଦେଖିଛି ବୋଲି କେବେ ଭରସି କହିପାରେନି ।

ହଠାତ୍ ସରକାର ଛାମୁଁଙ୍କର ପ୍ରିଭିପର୍ସ ଉଠାଇଦେଲେ । ଛାମୁଁ ଗରିବ ହେବାକୁ ଆରମ୍ଭ କଲେ । ଛାମୁଁ କେବେ ରାଜବାଟୀ ଛାଡ଼ି ବାହାରକୁ ବାହାରନ୍ତି ନାହିଁ । ତାଙ୍କର ଚାରିଟା ଘୋଡା ଦେଖୁଦେଖୁ ବର୍ଷକ ଭିତରେ ବିକ୍ରି ହୋଇଗଲା । ବିହାରରୁ ଆସୁଥିବା ସାଧୁମାନେ ଛାମୁଁଙ୍କର ଦୁଇଟା ହାତୀ ମଧ୍ୟ କିଣିନେଲେ । ଛାମୁଁ କେବଳ ଚୁପ୍‌ଚାପ୍ ହୋଇ ଘର ଭିତରେ ବସିଥା'ନ୍ତି ।

ରାଜବାଟୀ ପଛପାଖଟା ପୂରା ଭାଂଗିଗଲା । ବର୍ତ୍ତମାନ ତାକୁ ମରାମତି କରିବାକୁ ତାଙ୍କର ମଧ୍ୟ ଅର୍ଥ ନାହିଁ । ରାଜାବାଟୀ ଭିତରରେ ରହିଲେ କେବଳ ତିନୋଟି କୋଠରି ।

## ବନ୍ଦୀ ପ୍ରେମିକ

ଗୋଟିଏ ବୈଠକଖାନା, ଗୋଟିଏ ଶୋଇବାଘର ଆଉ ଗୋଟିକରେ ରୋଷେଇ ହୁଏ। ଭଣ୍ଡାରଘର ବି ସେଇ।

ଛାମୁଁଙ୍କର ବର୍ତ୍ତମାନ ବି କିଛି ଭଲ ଜମିଅଛି। ତାକୁ ସେ ବେଳେବେଳେ କିଛି କିଛି ବିକ୍ରି କରନ୍ତି। ଅଧିକାଂଶ ଜମି ଭମର ସାହୁ ଓ ଗୋବିନ୍ଦା କିଣନ୍ତି। ଭମର ସାହୁ ଦିନେ ଗୋବିନ୍ଦାକୁ ପଚାରିଲା -

– 'ହଇରେ ଗୋବିନ୍ଦା! ଏ କ'ଣ ସତ ଯେ, ରାତି ବାରଟାବେଳେ ସେ ବେଶ୍ୟା ସୁହାସିନୀର ପ୍ରେତିନୀ ଆସି ସିଂହ ଦରଜାର ଘଣ୍ଟି ବଜାଏ ?'

– 'ସେଗୁଡ଼ା କାହିଁ ଶୁଣୁଛ ମ ? ଛାମୁଁ ତ ସନ୍ଧ୍ୟାବେଳୁ ମାଲ୍ ପିଇ ଚୁପ୍ ଥା'ନ୍ତି। ରାତିଅଧରେ ତାଙ୍କୁ ସତେଯେମିତି ଭୂତ ଲାଗେ, ସେ ଉଠିପଡ଼ି ସିଂହଦରଜାକୁ ଆସି ବାଇଆଙ୍କ ପରି ଡାକପକାନ୍ତି ମାହୁନ୍ତକୁ ଆଉ ସଇସକୁ। ସେମାନଙ୍କୁ ହୁକୁମ୍ ଦିଅନ୍ତି, ହାତୀ ସଜ କରିବାକୁ, ନହେଲେ ଘୋଡ଼ା ସଜ କରିବାକୁ। ତା'ପରେ କ'ଣ ମନହୁଏ, ଘଣ୍ଟା ଦଉଡ଼ିକୁ ଦି'ଚାରିଥର ଟାଣି ପୁଣି ଆସି ଶୋଇପଡ଼ନ୍ତି।'

– 'କିନ୍ତୁ ସୁହାସିନୀ କଥା ତାଙ୍କର ମନେପଡ଼େନା ?'

– 'ପଡୁଥିବ, କିନ୍ତୁ ମତେ ସେ କିଛି କୁହନ୍ତି ନାହିଁ। ହଁ, ବେଳେବେଳେ ନିଦରେ ବିଳିବିଳେଇଉଠି କୁହନ୍ତି – ସୁହାସିନୀ, ତୁମେ କୋଉଠି ଅଛ ? ବାସ୍ ସେତିକି। ଛାଡ଼୍, ସବୁ ଘଟଣା ତୁ ଜାଣୁ ଆଉ ମୁଁ ଜାଣେ। ଆମେ ଚୁପ୍ ରହିବା, ଆଉ ଚୁପ୍ ରହିଲେ ଆମର ଫାଇଦା।'

– 'କିନ୍ତୁ ଗୋବିନ୍ଦା, ତୁ କହିନୁ ତ ଛାମୁଁଙ୍କୁ ଯେ, ମୁଁ ସେ ଶବକୁ ଦେଖିଛି ବୋଲି ?'

– 'ମୁଁ କହିନି କି କହିବି ନାହିଁ। ଭାଇ, ଆମର ମତଲବ ଅଲଗା। ଆମେ ଆମର ଫାଇଦା ଉଠେଇ ଚାଲିଯିବା। ସେଥିରୁ ଆମକୁ କ'ଣ ମିଳିବ ? ତେବେ ରାଜାଟାକୁ ଦେଖିଲେ ଦୟା ଲାଗେ। କ'ଣ ସେ ନଥିଲା ? କେତେ ଲୋକ ତେଲେଇତାଲେଇ ତା'ଠୁ ଫାଇଦା ଉଠେଇଛନ୍ତି! ଆଉ ଆଜି ତା' ଦୁର୍ଦ୍ଦିନରେ କେହି ଆସୁନାହାନ୍ତି। ଆମେ ତ ଛାମୁଁଙ୍କର କିଛି କାମ କରି ଫାଇଦା ଉଠଉଛୁ। ସେଥିରେ ତ ପାପ ନାହିଁ!'

– 'ହଁ ଭାଇ ଗୋବିନ୍ଦା, ତୁ ସତ କହିଲୁ। ଛାମୁଁଙ୍କ ଦୁଃଖ ବିଷୟ ବାହାରେ ଆମେ କାହାକୁ କହିବା ନାହିଁ। ସେ ତାଙ୍କ ମନେମନେ ଜଳୁଛନ୍ତି। ତାଙ୍କୁ ଆମେ ଶାନ୍ତ କରିପାରିବାନି। ବଅସ ଥିଲାବେଳେ ସେ ବାହା ହୋଇପାରିଥା'ନ୍ତେ, ହେଲେ...'

ରାଜାସାହେବଙ୍କ ଦୁରବସ୍ଥା ଧୀରେଧୀରେ ବଢ଼ିବାକୁ ଲାଗିଲା। ଦିନେ ଖାଇବାକୁ ନ ଥାଏ କି ସେଦିନ ସେ ଗୋବିନ୍ଦାକୁ ଡାକି ତାଙ୍କ ବୈଠକଖାନାରେ ଦାମୀ କାନ୍ଥଘଣ୍ଟାଟା

ଦେଲେ ଆଉ କହିଲେ – ବିକ୍ରି କରିଦେବାପାଇଁ । ଗୋବିନ୍ଦା ତାକୁ ନେଇ କାହାକୁ ବିକ୍ରି କଲା ଜଣା ନାହିଁ, କିନ୍ତୁ ସେଥିରୁ ଯେତିକି ପଇସା ମିଳିଲା, ସେଥିରେ ରାଜାସାହେବଙ୍କ ସାତଦିନର ଖର୍ଚ୍ଚ ଚଳିଲା । ଛାମୁଁଙ୍କର ଆଉ ଗୋଟେ ମୂଲ୍ୟବାନ୍ ସମ୍ପତ୍ତି ଥିଲା । ଗୋଟେ ପୁରୁଣା ରୋଲସ୍ ରଏସ୍ ଗାଡ଼ି । ସେ ଗାଡ଼ି ବର୍ଷ ବର୍ଷ ଧରି ଗ୍ୟାରେଜ୍‌ରେ ପଡ଼ିଥିଲା । ତାକୁ ମଧ୍ୟ ଛାମୁଁ ବିକ୍ରି କରିଦେଲେ କଟକର କୌଣସି ବ୍ୟବସାୟୀକୁ । ସେଥିରେ ବେଶ୍ କିଛି ପଇସା ମିଳିଥିଲା । ସେଥିରେ ଛାମୁଁ ପୁଣି ଦୁଇତିନି ମାସ ଚଳିଗଲେ । ଏମିତି ଏମିତି ହୋଇ ସବୁ ଆସବାବପତ୍ର ବିକ୍ରି ହୋଇଚାଲିଲା । ଆଉ ରାତି ବାରଟାରେ ଘଣ୍ଟା ବାଜିବା ମଧ୍ୟ ଅବ୍ୟାହତ ରହିଲା ।

ଆଜିକାଲି ଛାମୁଁ ବାହାରକୁ ବୁଲିବାକୁ ଆସୁଛନ୍ତି । ତାଙ୍କ ବେଶପୋଷାକ ଦେଖିଲେ ଯେକୌଣସି ଲୋକ ହସିବ । କେତେବେଳେ ପଂଜାବି ଉପରେ ଗଂଜି, ପୁଣି କେତେବେଳେ ଖାଲି ଦେହରେ ଗୋଟେ ହାଫ୍ ସୁଏଟର, ଏଇମିତି ବେଶପୋଷାକ ହୋଇ ଆସନ୍ତି । ବଜାର ଭିତରେ ଭମର ସାହୁର ଦୋକାନ । ସେଠି ବାହାର ବେଂଚ୍‌ରେ ବସି ଚା' ପିଅନ୍ତି, ତା'ପରେ ଖରସୁଆଁ ନଈଆଡ଼କୁ ବୁଲିବାକୁ ଯାଆନ୍ତି ।

ଗୋଟେ କ'ଣ ବଡ଼ ବ୍ୟାରେଜ ହୋଇଛି । ଅନେକ କୁଲି ମୂଲିଆ ଲାଗିଛନ୍ତି । ଅନେକ ଇଞ୍ଜିନିୟର, ଅନେକ କଣ୍ଟ୍ରାକ୍ଟର । ଛାମୁଁ ଦୂରରୁ ବ୍ୟାରେଜ୍‌କୁ ଅନେଇ ରହନ୍ତି । ବ୍ୟାରେଜ୍‌ରେ କାମ କରୁଥିବା ଲୋକେ କେହି ଛାମୁଁଙ୍କୁ ଚିହ୍ନିପାରନ୍ତି ନାହିଁ । ଛାମୁ ମଧ ଚିହ୍ନା ଦିଅନ୍ତି ନାହିଁ । କ'ଣ ଦରକାର ? ସେମାନେ ଆଉ ଛାମୁଁଙ୍କୁ ଜୁହାର କରିବେ ନାହିଁ । ଯୁଗ ବଦଳିଯାଇଛି । ବର୍ତ୍ତମାନ ଛୋଟଲୋକସବୁ  ବଡ଼ଲୋକ ହୋଇଗଲେଣି ଆଉ ତାଙ୍କ ପରି ରାଜାରାଜୁଡ଼ା ପଥର ଭିକାରି ପାଲଟି ଗଲେଣି ।

ଛାମୁଁ ଭାବୁଛନ୍ତି – ତାଙ୍କର ଅପରାଧ କ'ଣ ? ତାଙ୍କ ଜିନିଷ ଉପରେ ଯିଏ ଆଖି ପକେଇଛି, ସେ ତାଙ୍କର ଶତ୍ରୁ । ବୁଢ଼ାରାଜା ବ୍ରିଟିଶ୍ ସାହେବ ଆଗରେ ତାଙ୍କର ପ୍ରିୟ ଘୋଡାକୁ ମାରିଦେଲେ । ଦଲାଲ୍ ମନୋହର ଆଗରେ ଛାମୁଁ ସୁହାସିନୀ ଓ ମନୋହରକୁ ମାରିଦେଲେ । ଏଇଟା କ'ଣ ଅପରାଧ ?

ଦିନେ ଭମର ସାହୁ ଦୋକାନରେ ଛାମୁଁ ଭମର ସାହୁକୁ ପଚାରିଲେ – 'ଆରେ ଭମର ! ଲୋକେ ଆମ ବିଷୟରେ କ'ଣ ଗପୁଛନ୍ତି ?'

– 'ନାହିଁ ଆଜ୍ଞା, କାହା ଜିଭରେ ହାଡ ଅଛି ଯେ, ଆପଣଙ୍କ ନାଁ ଧରିବ ?'

– 'ହଁ, ସତ ସତ । ଗୋବିନ୍ଦାଟା କୁଆଡ଼େ ଗଲା ସକାଳୁ ତା'ର ଦେଖା ନାହିଁ !'

– 'ଛାମୁଁ ଟିକେ ଚୁପ୍ ହୋଇ ରହିଗଲେ । ଦୁଇ ଦିନ ହେଲା ପ୍ରକୃତରେ ଗୋବିନ୍ଦା ନ ହେଲେ ଭମର ସାହୁ ତାଙ୍କୁ ଖାଇବାକୁ ଦୁଇଓଳି ଦେଉଛନ୍ତି । ଲାଜରେ ସେ ଆଉ କିଛି

ପଚାରିପାରିଲେନି, କିନ୍ତୁ ସେଦିନ ଖରାବେଳେ ଠା' ବଢ଼ାବେଳେ ଗୋବିନ୍ଦା ଖବରଦେଲା ଯେ, ବ୍ୟାରେଜ୍‌ର ଜଣେ ବଡ଼ କଣ୍ଟ୍ରାକ୍ଟର ଛାମୁଁଙ୍କ ସହିତ ଦେଖାକରିବାକୁ ଚାହୁଁଛନ୍ତି ।

ଠିକ୍ ଦିନ ଗୋଟାକବେଳକୁ କଣ୍ଟ୍ରାକ୍ଟରବାବୁ ଆସି ଉଆସରେ ପହଂଚିଲେ । ଛାମୁଁଙ୍କ ସହିତ ନିଜକୁ ପରିଚିତ କରାଇ ଅନେକ କଥାବାର୍ତ୍ତା କଲେ । ଛାମୁଁ ନିଜେ କହୁଥାଆନ୍ତି, ନିଜ ସାହସିକତାର କାହାଣୀ । ସେ ବାଘ ପଛରେ ଗୋଡ଼େଇ ଗୋଡ଼େଇ ବାଘ ମାରିଛନ୍ତି । ହରିଣ, କୁଟୁରା ତ ସାମାନ୍ୟ କଥା । ବାର୍‌ହା, ଭାଲୁ, ହାତୀ ସବୁରକମ ଜନ୍ତୁ ସେ ଶିକାର କରିଛନ୍ତି । ଆଜିକାଲି ଦିନ ବଦଳିଗଲା । ଜଙ୍ଗଲସବୁ ସରକାର ନେଇ ତାକୁ ରିଜର୍ଭ କରିଦେଲା । ଆଜିକାଲି ସେ ଆଉ ଜଙ୍ଗଲ ଭିତରେ ପଶିପାରୁ ନାହାନ୍ତି । କଣ୍ଟ୍ରାକ୍ଟରବାବୁ ପଚାରିଲେ -

– 'ଆପଣଙ୍କର ତ ପଇସାପତ୍ରରେ ଅନେକ ଅସୁବିଧା ହେଉଥିବ ? ଶୁଣିଲି, ଆପଣ ସବୁ ଚାଷଜମି ବିକି ସାରିଲେଣି ।'

– 'ସେଗୁଡ଼ା ରହି ଲାଭ କ'ଣ ? କିଏ ତାକୁ ଦେଖିବାକୁ ଅଛି ?'

– 'ଆପଣଙ୍କର ରୋଲସ୍ ରଏସ୍ ଗାଡ଼ି ?'

– 'ତାକୁ ମୋର ଜଣେ ସାଙ୍ଗକୁ ଦେଇଦେଇଛି ।'

ବିକିଦେଇଛନ୍ତି ବୋଲି ଛାମୁଁଙ୍କୁ କହିବାକୁ ଲାଜ ଲାଗିଲା । ଏଥର କଣ୍ଟ୍ରାକ୍ଟରବାବୁ ବ୍ୟବସାୟ କଥା ଆରମ୍ଭକଲେ -

'ଦେଖନ୍ତୁ ରାଜାସାହେବ । ମୁଁ ଗୋଟିଏ ଜିନିଷ କିଣିବାକୁ ଆସିଛି । ମୁଁ ବିହାରର ଲୋକ । ସେ ଜିନିଷକୁ ମୁଁ ବିହାରକୁ ନେଇଯିବି । ଆପଣ ତାକୁ ବିକିଦେଲେ ବୋଲି ଆଉ ଲାଜ ଲାଗିବନି ।'

ଛାମୁଁ ଚୁପ୍‌ହୋଇ ବସିଗଲେ । ବିହାରର ଦୁଇଜଣ ସାଧୁଙ୍କୁ ସେ ତାଙ୍କ ହାତୀ ବିକ୍ରି କରିଛନ୍ତି । ସେ ନିଜେ ଚାହିଁଲେ ତାଙ୍କର ଯାହା ଇଚ୍ଛା, ତାହା ଜିନିଷ ବିକ୍ରି କରିପାରନ୍ତି, କିନ୍ତୁ କେହି କିଣିବାକୁ ମାଗିଲେ ତାଙ୍କୁ ବାଧେ । କିନ୍ତୁ ଆଜି କଥା ଅଲଗା । ଛାମୁଁଙ୍କର ବାରଟା ବନ୍ଧୁକରୁ ଏଗାରଟା ବିକ୍ରି ହୋଇଗଲାଣି । ଛାମୁଁ ଭାବିଲେ, ବୋଧହୁଏ ଅବଶିଷ୍ଟ ବନ୍ଧୁକଟି କଣ୍ଟ୍ରାକ୍ଟର ମାଗୁଛି ।

ସେ ପଚାରିଲେ -

– 'କ'ଣ କିଣିବ ?'

– 'ଆପଣଙ୍କର ନିହାତି ଅଦରକାରୀ ଜିନିଷଟିଏ ।'

– 'ନା, ବନ୍ଧୁକଟା କେମିତି ଅଦରକାରୀ ହେବ ! ମଲା ପର୍ଯ୍ୟନ୍ତ ସେଇଟା ଦରକାର ।

– 'ତେବେ ?'

– 'ଆପଣଙ୍କ ରାଜବାଟୀ ଉପରେ ଯେଉଁ ଘଣ୍ଟାଟା ଅଛି, ସେଇଟା ବିକ୍ରି କରିଦିଅନ୍ତୁ ।'

– 'କେତେ ଦାମ୍ ହେବ ?'

– 'ଆପଣ ନଥିଲାବେଳେ ମୁଁ ଚଢ଼ିକରି ଗମ୍ବୁଜ ଉପରେ ଦେଖିଛି । ପର୍ତ୍ତୁଗୀଜ୍ ଭାଷାରେ ତା' ଉପରେ କ'ଣସବୁ ଲେଖାହୋଇଛି । ତେବେ ଦଶବାର ହଜାର ଟଙ୍କା ହେବ । ମୁଁ ପନ୍ଦର ହଜାର ଟଙ୍କା ଦେବାକୁ ପ୍ରସ୍ତୁତ ଅଛି । ଆପଣ ଚିନ୍ତାକରି ଗୋବିନ୍ଦ ହାତରେ ମତେ ଖବର ଦେଲେ ମୁଁ ଆସି ଲୋକ ଲଗେଇ କାଢ଼ିନେଇଯିବି ।

କଣ୍ଟ୍ରାକ୍ଟର ଚାଲିଗଲା ।

ରାଜା ସାହେବ ତାଙ୍କ ପଲଙ୍କ ଉପରେ ଗୁମ୍‌ହୋଇ ବସିଛନ୍ତି ।

ମନେପଡ଼ିଗଲା ଅନେକ ଦିନ ତଳର କଥା । ଯେତେବେଳେ ସେ ସୁହାସିନୀକୁ ଭେଟିଥିଲେ କଲିକତାର ସୋନାଗାଛିରେ । ତାକୁ ଟ୍ୟାକ୍ସିରେ ନେଇ ଗଙ୍ଗାକୂଳକୁ ବୁଲିବାକୁ ଯାଇଥିଲେ । ସେତେବେଳକୁ ରାତି ଦଶଟା । ଫୋର୍ଟ ଉଇଲିୟମ୍ ଭିତରୁ ରାତ୍ରିର ପ୍ରହରୀ ଘଣ୍ଟା ବଜାଇଲା । ସୁହାସିନୀ କହିଲା –

– 'ଶୁଣୁଛନ୍ତି ଏ ଘଣ୍ଟା ? ବହୁତ ଦୂରକୁ ଶୁଭେ ।'

– 'ଆମ ରାଜ୍ୟରେ ଯେଉଁ ଘଣ୍ଟା ଅଛି, ତାହା ଏ ଦେଶରେ କାହା ପାଖରେ ନାହିଁ । ଚାଲ ଆମ ରାଜ୍ୟକୁ । ମୁଁ ଦେଖେଇଦେବି ।'

ଏଇ ଘଣ୍ଟା ଦେଖିବାପାଇଁ ସୁହାସିନୀ ଆସିଥିଲା ବଳରାମଗଡ଼କୁ । ଛାମୁଁଙ୍କ ପ୍ରେମରେ ପଡ଼ିଗଲା, ଆଉ ରହିଗଲା ପାଟରାଣୀ ହେବାପାଇଁ । କିନ୍ତୁ ତା' ଭାଗ୍ୟରେ ଥିଲା ବନ୍ଧୁକର ଗୁଳି ।

ଛାମୁଁ ତକ୍ତପୋଷ ଉପରେ ବସି କ'ଣ ଭାବୁଛନ୍ତି ଦେଖି ଗୋବିନ୍ଦା ଭାବିଲା, ଛାମୁଁଙ୍କର ଦେହ ଖରାପ । ସେ ଛାମୁଁଙ୍କର ଗୋଡ଼ ମୁଚାଳିଦେବାକୁ ଆସିଲା ।

ଛାମୁଁ ପଚାରିଲେ – 'ଆରେ ଗୋବିନ୍ଦା, ପନ୍ଦର ହଜାର ଟଙ୍କାରେ କେତେ ଚାଉଳ ଆଉ କେତେ ଡାଲି ହବରେ ? ଆଉ କେତେଦିନ ଆମେ ଚଳିପାରବା ?'

– 'ଛାମୁଁ, ଖୁବ୍ ହେଲେ ଦୁଇ ତିନି ମାସ ।'

– 'ତା'ପରେ ?'

ଆଉ କିଛି କହିଲେନି । ପୁଣି ଆଖିଖୋଲିଲେ ଆଉ ହୁକୁମ୍‌ଦେଲେ

– 'ଆମ ରାଇଫଲ୍‌ଟା ଆଣି ମତେ ଦେ ତ !'

ଗୋବିନ୍ଦା ରାଇଫଲ୍‌ଟା ଆଣି ତାଙ୍କ ମୁଣ୍ଡ ଉପରେ ତକ୍ତପୋଷକୁ ଡେରିକରି ରଖିଦେଇଗଲା ।

ସନ୍ଧ୍ୟାବେଳେ ଗୋବିନ୍ଦା ପଚାରିଲା – 'ଛାମୁଁ, କାନ୍ତରାଟି କିଛି ଖବରଦେବେ ?'

– 'ନା !'

## ବନ୍ଦୀ ପ୍ରେମିକ

ସେଦିନ ଠିକ୍ ଶୁନ୍‌ଶାନ ଅନ୍ଧାର ରାତି । ରାଜବାଟୀ ପଛରେ ଭେରେଣ୍ଡା ଚିଲଉଛି । ଦୋକାନବଜାର ସବୁ ବହୁ ଆଗରୁ ବନ୍ଦ୍ ହୋଇଗଲାଣି । ଇଲେକ୍‌ଟ୍ରିକ୍ ଲାଇଟ୍ ଅନେକ ଆଗରୁ ଚାଲିଯାଇଛି । ଗୋଟେ ଦିଗନ୍ତଭରା କୁକୁର ଭୁକିଚାଲିଛନ୍ତି । ରାତି ବସ୍ କେତେବେଳୁ ଯାତ୍ରୀମାନଙ୍କୁ ନେଇ ଚାଲିଗଲାଣି । ନିଶୁନ୍ ରାତିରେ ରାଜବାଟୀଟା ଆହୁରି ଭୟଙ୍କର ଦେଖାଯାଉଛି । ଅନେକ ଦିନରୁ ଚୂନଧୁଲେଇ କରାଯାଇନାହିଁ । ଚାରିଆଡ଼େ ବଣ । ହୁଏତ, ସେଇ ବଣ ଭିତରେ ସାପ ବୁଲୁଥିବେ ।

କିନ୍ତୁ ରାଜା ସାହେବଙ୍କୁ ନିଦ ନାହିଁ । ସେ ସେଇ ଭଂଗା ରାଜବାଟୀରେ ପ୍ରତ୍ୟେକ ଅଂଶରେ ବନ୍ଧୁକ ଧରି ବୁଲୁଛନ୍ତି । ସେ କାହାକୁ ଖୋଜୁଛନ୍ତି ବୋଧହୁଏ । ନା, ସେ କାହାକୁ ଖୋଜୁ ନାହାନ୍ତି, ବରଂ ଖୋଜୁଥିଲେ ନିଜର ପରିଚୟ, ଏଇ ଭଂଗା ରାଜବାଟୀର ଭଂଗା କୋଠରି ଭିତରେ ।

ସେଦିନ ରାତି ବାରଟାବେଳେ ଆଉ ଘଣ୍ଟା ବାଜିନି । କେବଳ ଶୁଭିଲା ରାଜାସାହେବଙ୍କର ବନ୍ଧୁକର ଆୱାଜ - ସେଇଟା ବି ଥରେ । ସମ୍ଭବତଃ ରାଜାସାହେବଙ୍କ ଶେଷଗୁଳି । ତା'ପରେ ଗୋଟେ ବିରାଟ ଆୱାଜ । ରାତିରେ ସାହସକରି କେହି ରାଜବାଟୀକୁ ଗଲେ ନାହିଁ । ସକାଳେ ଗୋବିନ୍ଦାକୁ ନେଇ କାନ୍ତରାଟିବାବୁ ଯାଇ ଦେଖନ୍ତି, ଘଣ୍ଟାଟା ଖସିପଡ଼ିଛି । ଘଣ୍ଟାଟା ପୁରୁଷେ ଉଚ୍ଚା ଘଣ୍ଟା, ତାକୁ ଦୁହେଁ ଉଠେଇପାରିଲେନି । ବ୍ୟାରେଜ୍‌ରୁ କୁଲି ମଗେଇ ବହୁ କଷ୍ଟରେ ଘଣ୍ଟା ଉଠେଇଲା ପରେ ତା' ଭିତରୁ ବାହାରିଲା ଛାମୁଁଙ୍କର ଶବ ।

# ମନ୍ତ୍ରୀଙ୍କ ପାଖଲୋକ

ମଝିରେ ପାହାଡ଼ । ଦୁଇପାଖରେ ଦୁଇଟି ନିର୍ବାଚନମଣ୍ଡଳୀ । ସେପାଖ ନିର୍ବାଚନମଣ୍ଡଳୀରେ ବିପକ୍ଷ ଦଳର ପ୍ରତିପତ୍ତି ଖୁବ୍ ବେଶି । ତେଣୁ ଦୀନବନ୍ଧୁ ଓ ମତେ ଏଇ ପାହାଡ଼ ତଳ ଗାଁ କୋଇଲରେ ସବୁଠୁ ବେଶି କାମକରିବାକୁ ପଡ଼ିଥିଲା । ଏ ଗାଁରେ ସବୁଠୁ ବେଶି ଭୋଟର୍ । ପ୍ରାୟ ଅଠର ଶହ । ତେଣୁ ଏତେବଡ଼ ପକେଟ୍‌କୁ ହାତମୁଠାରୁ ଛାଡ଼ିଦେବା ପାଇଁ ଆମର କାହାର ସାହସ ନଥିଲା । ଦୀନବନ୍ଧୁ ତ ପ୍ରାର୍ଥୀ, ତେଣୁ ଜିପ୍ ଧରି ଅନ୍ୟାନ୍ୟ ଗାଁଗଣ୍ଡା ବୁଲିଲାବେଳେ ମତେ କୋଇଲରେ ଡେରାବାନ୍ଧିବାକୁ ପଡ଼ିଥାଏ । ସେପାଖ ନିର୍ବାଚନମଣ୍ଡଳୀରୁ ଦୁଇ ତିନି ଜଣ କର୍ମୀ ଯେ ଆସି ମଝିରେ ମଝିରେ ଆମକୁ ଅସୁବିଧାରେ ପକେଇ ନାହାନ୍ତି କହିହେବନାହିଁ ।

ଦିନରେ ମୁଁ ଯେଉଁଠି ବୁଲେନା କାହିଁକି ରାତିରେ ମୁଁ କୋଇଲରେ ଶୁଏ – ତା' ପୁଣି ଜଗତା ବାଉରି ଘରେ । ଜଗତା ବଡ଼ ଭଲପାଉଥିଲା ମତେ । ତାକୁ ମୁଁ ଗୋଟେ ପଇସା ଦେଇନି; କିନ୍ତୁ ନିର୍ବାଚନ କାମରେ ସେ ମୋର ଚାକରପରି ଖଟୁଥିଲା । ହରିଜନ ସମାଜରେ ସେ ମୁଖିଆ ନହେଲେ ବି ତା' କଥା ସମସ୍ତେ ଶୁଣୁଥିଲେ । ତେଣୁ ହରିଜନଙ୍କ ଭୋଟ୍‌ର ଶତକଡ଼ା ନବେ ଆମ ଆଡ଼କୁ ଚାଲିଆସିବ ବୋଲି ଆମର ପୂରାପୂରି ଆଶା ଥିଲା । ବାକି ଯେତେକ ଶିକ୍ଷିତ ଓ ଧନୀଲୋକ, କିଣିହେବନି । ପାଠ ଦି'ଅକ୍ଷର ପଢ଼ିଲେ ଭାବନ୍ତି, ତାଙ୍କ ବୁଦ୍ଧି ପାକଳ ହୋଇଗଲା ।

ନିର୍ବାଚନ ବେଳ ପାଖେଇ ଆସିଲା । ପାହାଡ଼ ସେପାଖର ଦୁଇଜଣ କର୍ମୀ, ଯେଉଁମାନେ କି ଆମ ବିରୋଧରେ ପ୍ରଚାର କରୁଥିଲେ, ସେମାନଙ୍କ ସାମାନ୍ୟ ଭୁଲ ପାଇଁ କୋଇଲ ଗାଁର ଭୋଟ ଆମ ଆଡ଼କୁ ଚାଲିଆସିଲା ।

ଦୀନବନ୍ଧୁ ଯେତେବେଳେ ବେକରେ ଫୁଲମାଳ ପକେଇ ଏସ୍.ଡ଼ି.ଓ. ଅଫିସ୍‌ରୁ ଆସିଲା, ସେତେବେଳେ ମୋର ଗର୍ବ କହିଲେ ନସରେ । ଭୋଟ ଜୁଆର ଏତିକି ତ ଆନନ୍ଦ

## ବନ୍ଦୀ ପ୍ରେମିକ

- ନିଜ ପ୍ରାର୍ଥୀ ବେକରେ ଫୁଲମାଳ ପଡ଼ିଲେ ନିଜକୁ ଗୋଟେ ଦେବତା ପରି ମନେହୁଏ।

ଦୀନବନ୍ଧୁକୁ ସେଦିନ ମୁଁ ହାଇୱେ କଡ଼ରୁ ପ୍ରାୟ ଘୋଷାଡ଼ି ଆଣିଥିଲି କୋଇଲ ଗାଁ ଭିତରକୁ। ହରିଜନମାନେ ହରିବୋଲ ଦେଲେ। ବ୍ରାହ୍ମଣମାନେ ଶ୍ଳୋକ ଗାଇ ଆଶୀର୍ବାଦ ଦେଲେ। କରଣମାନେ ମାନପତ୍ର ତଥା ଅସଂଖ୍ୟ ଦଫା ସମ୍ବଳିତ ଦାବିପତ୍ର ଦେଲେ। ଝିଅବୋହୂମାନେ ଶଂଖ ଫୁଙ୍କିଥିଲେ।

ଦୀନବନ୍ଧୁ ମୋର ସାଙ୍ଗ। ମୁଁ ତା' ପାଇଁ ନିର୍ବାଚନର ଟିକିନିଖି କାମ କରୁଥିଲି। କିନ୍ତୁ ସେଦିନ ଶୋଭାଯାତ୍ରାରେ ମୁଁ ଥିଲି ଯେମିତି ତା'ର ବଡ଼ିଗାର୍ଡ଼। ସମସ୍ତେ ଭାବିଲେ, ଦୀନବନ୍ଧୁ ଓ ମୁଁ ମିଶିଯାଇ କୋଇଲ ଗାଁଟାକୁ କୋଇଲ ସହର କରିଦେବୁ। ଦୀନବନ୍ଧୁ ବିଧାନସଭାକୁ ଯୋଗଦେବାକୁ ରାଜଧାନୀ ଗଲା ଓ ମୁଁ ରହିଗଲି ଗାଁରେ।

ଖବରକାଗଜରେ ଦେଖିଲି ଦୀନବନ୍ଧୁ ଉପମନ୍ତ୍ରୀ ହୋଇଛି। ମୋ' ଖୁସି କହିଲେ ନସରେ। କୋଇଲ ଗାଁର ହରିଜନମାନେ କହିଲେ ଭୋଜିକରିବେ, ମୁଁ ଘରୁ ଧାନକାଢ଼ିଦେଲି। କରଣମାନେ ଖାସି କିଣିଲେ। ବ୍ରାହ୍ମଣମାନେ ରୋଷେଇକଲେ।

ଛଅମାସ ବିଧାନସଭା ଚାଲିବା ପରେ ଅଭ୍ୟନ୍ତରୀଣ ଫେଣ୍ଟାଫେଣ୍ଟି ଦ୍ୱାରା ଦୀନବନ୍ଧୁ ଉପମନ୍ତ୍ରୀରୁ ମନ୍ତ୍ରୀ ପଦକୁ ଗଲା । ଆମେ ତାକୁ ସମ୍ବର୍ଦ୍ଧନା ଦେବାପାଇଁ କୋଇଲ ଗାଁରେ ଏକ ବିରାଟସଭାର ଆୟୋଜନ କଲୁ।

ଠିକ୍‌ଦିନରେ ଦୀନବନ୍ଧୁବାବୁଙ୍କର କାର୍ ପତାକା ଉଡ଼େଇ ଆସି ପହଁଚିଲା । ଝିଅବୋହୂ ଶଂଖ ଫୁଙ୍କିଲେ। ବ୍ରାହ୍ମଣମାନେ ଶ୍ଳୋକ ପଢ଼ିଲେ । କାରଣମାନେ ଦାବିପତ୍ର ପେଶ୍‌କଲେ। ଦୀନବନ୍ଧୁବାବୁ ଉଚ୍ଛ୍ୱସିତ କରତାଳି ମଧ୍ୟରେ କୋଇଲରେ ଏକ ବିଜ୍ଞାନ କଲେଜ ପ୍ରତିଷ୍ଠା କରିବା ପାଇ ପ୍ରତିଶ୍ରୁତି ଦେଇଗଲେ।

ତାଙ୍କ ଯିବାପରେ ଆମେମାନେ କଲେଜ କେଉଁଠାରେ ହେବ- କେଉଁ ପରି ଘର ତିଆରି ହେବ - ଘରତୋଳା ତତ୍ତ୍ୱାବଧାନରେ କିଏ ରହିବ - ମ୍ୟାନେଜିଂ କମିଟିରେ କିଏ କିଏ ରହିବେ ଇତ୍ୟାଦି ଇତ୍ୟାଦି ବିଷୟ ପାଇଁ ପ୍ରାୟ ପନ୍ଦର ଷୋହଳଟା ମିଟିଂ କରିପକେଇଲୁ।

ସେଦିନ ଦିନ ତିନିଟାବେଳେ କଲେଜ୍ କମିଟି ମିଟିଂ ଥାଏ ଗାଁମୁଣ୍ଡ ବୁଢ଼ୀମଙ୍ଗଳାଙ୍କ ଆସ୍ଥାନରେ। ଖରାଦିନ। ସହରରେ ପଢୁଥିବା ଟୋକାମାନେ ମଧ୍ୟ ସେଦିନ ମିଟିଂକୁ ଆସୁଥାନ୍ତି। ମୁଁ ସାଇକେଲ୍ ଖଣ୍ଡକ ବିଲ ବାଟ ଦେଇ ଗଡ଼େଇ ଗଡ଼େଇ ଯାଉଛି। ହଠାତ୍ ମେଘ ଘୋଡ଼େଇଆସିଲା।

ମୁଁ ମଣ୍ଡପ ପାଖରେ ପହଁଚିଲାବେଳକୁ ପବନ ଜୋରରେ ବୋହୁଛି। ସମସ୍ତେ ତଥାପି ମତେ ଅପେକ୍ଷା କରି ବସିଛନ୍ତି। ମୁଁ ମଣ୍ଡପରେ ବସିଲାବେଳକୁ ପବନର ଗତି ଆହୁରି ବଢ଼ିଗଲା। ପରେ ଧୂଳି-ପତ୍ର-କାଠିକୁଟା, ଏତେ ଜୋର୍‌ରେ ଘୂର୍ଣ୍ଣି ଆରମ୍ଭ ହୋଇଗଲା ଯେ ନିଜକୁ

ଧରିରଖିବା ଅସମ୍ଭାଳ । ବୁଢ଼ୀମଙ୍ଗଳାଙ୍କ ଛୋଟ ମନ୍ଦିର ଭିତରେ ତିନିଜଣଙ୍କ ସହିତ ମୁଁ ରହିବାକୁ ବାଧ୍ୟହେଲି । ବାକି ସମସ୍ତେ ଗାଁଆଡ଼କୁ ପଳେଇଲେ । ମଙ୍ଗଳାଙ୍କ ପୂଜାରୀ ନରହରି ପଣ୍ଡିତେ, କରଣ ସାହିର କୁଳବୃଦ୍ଧ ମଧୁସୂଦନ ମହାନ୍ତି, ମୁଁ ଓ ଜଗତା ବାଉରି । ଦେଖୁ ଦେଖୁ ମନ୍ଦିର କଡ଼ରେ ଥିବା ପୁରୁଣା ବଉଳଗଛଟା ମଡ଼ମଡ଼ କରି ଉପୁଡ଼ିଗଲା ।

ସମସ୍ତେ ସମସ୍ତଙ୍କ ଘରକଥା ଭାବିଲେ । ଜଗତା ଆଉ ରହିପାରିଲା ନାହିଁ । ତା' ପଲାଖଣ୍ଡକ ପାଇଁ ପାଗଳ ହୋଇ ଧାଇଁବାକୁ ଆରମ୍ଭ କଲା; କିନ୍ତୁ ପବନତୋଡ଼ରେ ସେ ଯାଉଛି କୁଆଡ଼େ! ବିଲ ଉପରେ କଚାଡିହୋଇ ପଡୁଥାଏ ଉଠୁଥାଏ । ମଧୁସୂଦନବାବୁଙ୍କ କୋଠାଘର । ସେ ଖାଲି 'ଦୁର୍ଗେ ଦୁର୍ଗତିନାଶିନୀ' କହି ବେଳ କାଟିଲେ । ନରହରି ପଣ୍ଡିତଙ୍କ ପିଲାଛୁଆ କେହି ନାହାନ୍ତି – ସେ ସମସ୍ତଙ୍କୁ ନିଜ ପିଲାପରି ଦେଖିଛି । ତାଙ୍କ ଆଖି ଛଳଛଳ ହୋଇଗଲା । ମୁଁ ସ୍ତବ୍ଧ, କାରଣ ମୁଁ ରାଜନୀତିକ କର୍ମୀ – ମୋ ପଛରେ ଅଛି ନିର୍ବାଚନର ପ୍ରତିଶ୍ରୁତି । ମୁଁ ପୁଣି ମନ୍ତ୍ରୀଙ୍କର ବନ୍ଧୁ । ବାତ୍ୟା ପରେ ଅନ୍ୟମାନେ ହୁଏତ କାନ୍ଦିବେ, ମତେ କିନ୍ତୁ ସରକାରଙ୍କ ପକ୍ଷରୁ ସମସ୍ତଙ୍କ ଲୁହପୋଛିବାକୁ ପଡ଼ିବ ।

ଦେଢ଼ଘଣ୍ଟା ପ୍ରଳୟପରେ ବାହାରକୁ ଆସି କୋଇଲ ଗାଁର ଦୃଶ୍ୟ ଦେଖି ମୁଁ ନିଜକୁ ସମ୍ଭାଳି ପାରିଲିନାହିଁ । ସାଇକେଲଖଣ୍ଡକ ଖୋଜିଲି ପୋଷ୍ଟଅଫିସ୍ ପର୍ଯ୍ୟନ୍ତ ଯିବାପାଇଁ, କିନ୍ତୁ ସାଇକେଲ କାହିଁ! ଗୋଟେ ଗାଡ଼ି ପଥର ଆଘାତରେ ଏକବାରେ ଚୂନାହୋଇଯାଇଛି । ହାଇୱେ ପ୍ରାୟ ଦୁଇ କିଲୋମିଟର ଦୂର । ମୁଁ ଅଣନିଶ୍ୱାସୀ ହୋଇ ଦଉଡ଼ିଲି । ରାସ୍ତା ଦୁଇକଡ଼ଯାକ ମଣିଷ, ଗାଈ, ବଳଦ, ଛେଳି ; ସେମାନେ ମରିଛନ୍ତି କି ବଂଚିଛନ୍ତି ଜାଣିବାକୁ ବେଳ ନାହିଁ । ପୋଷ୍ଟଅଫିସ୍‌ରେ ପହଂଚି ଦେଖେ ଟେଲିଫୋନ୍ ତାର ଛିଡ଼ିଯାଇଛି । ପୁଣି ଦଉଡ଼ି ଦଉଡ଼ି ଗାଁକୁ ଫେରିଆସିଲି ।

ଚାରିଆଡ଼େ କାନ୍ଦ ଆଉ କାନ୍ଦ । ଦୁନିଆଯାକର କାନ୍ଦ ନଈହୋଇ ବହିଯାଉଛି, ଆଉ ବହିଗଲାବେଳେ ଦୁଇକୂଳର ସବୁ ଗାଁକୁ ଭସେଇ ନେଉଛି । ଉପସ୍ଥିତ କର୍ମପନ୍ଥା କ'ଣ ମୁଁ କିଛି ଠିକ୍ କରିପାରିଲିନି । ଭାଗ୍ୟକୁ ପଶୁଡାକ୍ତରଖାନାର ଡାକ୍ତରବାବୁ ଓ ହୋମିଓପାଥିକ ଡାକ୍ତରବାବୁ ଦୁଇଜଣ ଆସି ପହଂଚିଲେ । ମୁମୂର୍ଷୁ ଅବସ୍ଥାରେ ଥିବା କେତେ ଜଣ ଆହତ ଲୋକଙ୍କୁ ବାଉଁଶ କୋକେଇ କରି ରାସ୍ତାକଡ଼କୁ ନେଇଗଲୁ । ସେଠି ରହିଲେ ଦୁଇଚାରିଜଣ ଯୁବକ । ବାଟରେ ଯେଉଁ ଟ୍ରକ୍, କାର୍ ଦେଖିଲେ ସମସ୍ତଙ୍କୁ ସେଥିରେ ବସେଇ ସହର ପଠେଇଦେଲେ ।

ସନ୍ଧ୍ୟା ସୁଦ୍ଧା ସହରର ବିଭିନ୍ନ ସେବାସଂସ୍ଥାର ଟ୍ରକ୍ ଆସି ପହଂଚିଗଲା । କିଏ ଚୁଡ଼ା, କିଏ ଚାଉଳ, କିଏ ପାଣିନେଇ ଆସିଛି । କିନ୍ତୁ ଖାଇବ କିଏ, ବଂଚିଥିବା ଲୋକ ତ କେବଳ ମଡ଼ା ସଫା କରିବାରେ ବ୍ୟସ୍ତ । ଖାଇବାକୁ ତର କାହିଁ ?

## ବନ୍ଦୀ ପ୍ରେମିକ

ଦଶମାଇଲ ଦୂରରେ ଥିବା ଥାନାକୁ ପାରା ଯୋଗେ ଖବରଗଲା, ରାଜଧାନୀକୁବି । ଏ ଘୋର ଦୁର୍ଯୋଗ ଖବର ପାଇଁ ମନ୍ତ୍ରିମଣ୍ଡଳର ଚୈତନ୍ୟ ପଶିଲା । ସମସ୍ତେ ଶୋକସନ୍ତପ୍ତ ପରିବାରଙ୍କ ପାଇଁ ସମବେଦନା ଜଣେଇଲେ । ମୃତ ବ୍ୟକ୍ତିମାନଙ୍କ ପାଇଁ ଆତ୍ମାର ସଦ୍‌ଗତି ଜଣେଇଲେ ଓ ସରକାରୀ ଦୃଢ଼ପଦକ୍ଷେପ ନିଆଯାଉଛି ବୋଲି ରେଡ଼ିଓରେ ପ୍ରଚାରକଲେ ।

ସାରାରାତି ଆମେ ଦୃଢ଼ ପଦକ୍ଷେପକୁ ଅପେକ୍ଷାକରି ବସିଲୁ । ପ୍ରାୟ ରାତି ତିନିଟାବେଳକୁ ଦୀନବନ୍ଧୁବାବୁ ତାଙ୍କ କାର୍‌ରେ ଆସିଲେ, ପଛରେ ଆଉ ଦୁଇତିନିଟା ଟ୍ରକ୍, ମୋ ପିଣ୍ଡରେ ପ୍ରାଣ ପଶିଲା । ମୁଁ ଦୀନବନ୍ଧୁ କହି କୁଣ୍ଢାଇ ପକାଇଲି । ସେ ମତେ ବୋଧସୋଧ କରି ରାଜଧାନୀରୁ ଆଣିଥିବା ମୁଖ୍ୟ କର୍ମୀମାନଙ୍କୁ କାମର ନିର୍ଦ୍ଦେଶ ଦେଇ ସକାଳୁ ସକାଳୁ ଫେରିଗଲେ ।

ଭୋର୍ ଆଲୁଅରେ ଦେଖିଲୁ, ଦୁଇଟା ଟ୍ରକ୍‌ରେ ବୋଝେଇହୋଇ ଆସିଛି କେବଳ ପେଟ୍ରୋଲ୍ । ଉଚିତ କାମ ଆମେ ମଡ଼ାପୋଡ଼ିଦେବା ଉଚିତ । ତା'ପରେ ବଡ଼ବଡ଼ ଗାତ ଖୋଳି ଆମେ ମଡାଗୁଡ଼ାକୁ କୁଢ଼ାଇପକେଇ ପେଟ୍ରୋଲ୍ ପକାଇ ଢାଳିଦେଲୁ । ନିଆଁଧାସରେ ଶହେଗଜ ଭିତରେ ଆମେ ରହି ପାରିଲୁନି, ମଡ଼ାପୋଡ଼ା ଦୁର୍ଗନ୍ଧ ତ ଦଶମାଇଲ ଦୂରକୁ ବ୍ୟାପିଥିଲା । ସେଇ ନିଆଁ ଆଲୁଅରେ ଦେଖିଲି ଗଛଡାଳରେ ଝୁଲିଛି ଗୋଟେ ଶବ । ମୁଁ ଲୋକ ଲଗେଇ ଶବଟାକୁ ଓହ୍ଲେଇ ଦେଖେ ଜଗତା ବାଉରି – ହଁ, ହଁ, ଜଗତା ବାଉରିର କ'ଣ ହେଲା ? ତା' ପଲାଟା ଅଛି ନା ନାହିଁ ? ତା' ପିଲାପିଲି କୁଆଡ଼େ ଗଲେ ? ତା' ଘୁଷୁରିପଲ ? ତା' ବଳଦ ହଳକ କୁଆଡ଼େ ଗଲେ ? ସେଇ ନିଆଁ ଭିତରକୁ ଜଗତା ପରିବାରର ମୁଖ୍ୟ ଜଗତା ବାଉରିକୁ ମୁଁ ଫୋପାଡ଼ିଦେଲି ।

ପୋଡ଼ିପୋଡ଼ି ପେଟ୍ରୋଲ ସରିଗଲା, କିନ୍ତୁ ମଡ଼ା ଶେଷ ହେଲାନି । ଦୁଇଦିନ ଲାଗି ମଡ଼ାପୋଡ଼ିଲା ପରେ ମୋର ମନରେ ପ୍ରଶ୍ନ ଉଠିଲା – କୋଉଠି ଗାଁରେ ବଂଚିଲା କିଏ । ସାହସ ନେଇ ଗାଁ ଭିତରକୁ ଯାଇ ପାରିଲିନି । ରାସ୍ତାକଡ଼ ଗଛତଳେ ଦୁଇଦିନ ବିତିଗଲା । ତୃତୀୟଦିନ ଟେଲିଗ୍ରାମ ଲାଇନ୍ ଠିକ୍ ହେବା ସଂଗେ ସଂଗେ ଦୀନବନ୍ଧୁବାବୁଙ୍କୁ ତାରବାର୍ତ୍ତା ପଠେଇଲି – ଅନୁନୟ କରି – ଅନୁନୟ କରି – ସରକାରୀ ପଦକ୍ଷେପ ସଂଗେ ସଂଗେ ଦୀନବନ୍ଧୁ ଆବଶ୍ୟକ – ପ୍ରାୟ ଦଶହଜାର ଲୋକ, ଦୁଇଶହ ଗାଈ ଏବଂ ବଳଦ, ତିନିଶହ ପର୍ଯ୍ୟନ୍ତ ଛେଳି, ଶହେଯାଏ ଘୁଷୁରି ଓ ଚାରିଶହ ପରିବାରଙ୍କର ବାସଗୃହ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇଛି । ସରକାର ଚଂଚଳ ଦୃଷ୍ଟି ଦିଅନ୍ତୁ । ଏଇଠି ତ ଜନପ୍ରିୟ ସରକାରର କର୍ତ୍ତବ୍ୟ ।

ଟେଲିଗ୍ରାମ୍ ଦେଇସାରି ଗାଁମୁଣ୍ଡ ଗଛତଳେ ବସିଛି । ଚାରିପାଖରେ ଘେରିବସିଛନ୍ତି ଶହେ ଦୁଇଶହ ଛୋଟପିଲା, ବୁଢ଼ାବୁଢ଼ୀ – ମୋ ମୁହଁକୁ ଅନେଇ ସତେଯେମିତି ମୁଁ ସେମାନଙ୍କ ପାଇଁ ଦେବତା । ମୁଁ ସେମାନଙ୍କ ପାଇଁ ଯିଶୁ । ମୁଁ ସେମାନଙ୍କ ପାଇଁ ଗିରିଗୋବର୍ଦ୍ଧନ ଶ୍ରୀହରି ।

ମୁଁ ସେମାନଙ୍କୁ ବୁଝାଉଛି - ତୁମେମାନେ ବ୍ୟସ୍ତହୁଅନା । ଦୀନବନ୍ଧୁବାବୁ ନିଶ୍ଚୟ ବୁଝିବେ । ନିଶ୍ଚୟ ଆସିବେ । ସନ୍ଧ୍ୟାବେଳକୁ ସେବାସମିତିର ଗୋଟେ ଖାଲି ଟ୍ରକ୍ ଆସି ପହଂଚିଲା । ତାଙ୍କ ପାଖରେ ଆଉ ଖାଇବାର ଜିନିଷ କିଛି ନାହିଁ । ସେମାନେ ଅନ୍ୟଏକ ଗାଁରେ ବାଣ୍ଟିଦେଇ ଆସିଛନ୍ତି - ସେଇ ଦଳ ଭିତରୁ ଜଣକ ହାତରୁ ଖବରକାଗଜ ମୁଁ ମାଗିଆଣି ଦେଖିଲି - ପ୍ରଥମ ପୃଷ୍ଠାରେ ବାତ୍ୟା ବିଧ୍ୱସ୍ତ କୋଇଲ ଗାଁର କେତୋଟି ଛବି ସଂଗେ ଡାହାଣ କଡ଼ରେ ମନ୍ତ୍ରୀ ଦୀନବନ୍ଧୁବାବୁଙ୍କର ବିବୃତି - ସେ କହିଛନ୍ତି - ବାତ୍ୟାରେ ପ୍ରାୟ ଶହେ ଲୋକଙ୍କର ପ୍ରାଣହାନି ହେଲାଣି ଓ ବିଶେଷ ଭାବରେ ଧନଜୀବନ ନଷ୍ଟ ହୋଇନାହିଁ । ସରକାରୀ ସୂତ୍ରରୁ ସମ୍ବାଦ ମିଥ୍ୟା ହୋଇପାରେନା ।

କିନ୍ତୁ ମୁଁ ଯେଉଁ ଟେଲିଗ୍ରାମ୍ ଦେଇଥିଲି, ମୁଁ ଯେଉଁ ସତକଥା ଲେଖିଥିଲି, ମୁଁ ଯେଉଁ ଧନଜୀବନ ହାନିର ହିସାବ ଦେଇଥିଲି - ହଁ ମୁଁ ମନ୍ତ୍ରୀ ନୁହେଁ । ମୁଁ ମନ୍ତ୍ରୀଙ୍କର ନିର୍ବାଚନ କର୍ମୀ ।

ଜଗତା ବାଉରିର ପରିବାର ଭିତରୁ ବଂଚିଥିବା କେବଳ ଗୋଟିଏ ପିଲା - ଯିଏକି ମୋତେ ଭଲଭାବରେ ଜାଣିଥିଲା, ମୋ ପାଖକୁ ଚାଲିଆସିଲା- ଆଖିରେ ତା'ର ଲୁହ, କାନ୍ଦି କାନ୍ଦି କହୁଥିଲା - 'ବାବୁ, ଭାରି ଭୋକ - ଆମେ ଖାଇବୁ କ'ଣ ?'

ମୁଁ ଖବରକାଜଟା ଫୋପାଡ଼ିଦେଇ ରାଗିଯାଇ କହିଉଠିଲି - 'ଶଳା, ତମକୁ ଖୋଇବା ପାଇଁ ମୁଁ କ'ଣ କଣ୍ଟ୍ରାକ୍ଟ ନେଇଛି ? ଏ ଗାଁରେ କିଛି ହୋଇନି, ଖାଲି ଶହେଟା ଲୋକ ମରିଛନ୍ତି । ତମମାନଙ୍କର କିଛି ଯାଇନି, କିଛି ନଷ୍ଟ ହୋଇନି - ଶଳା ଭିକମାଗୁଚ କାହିଁକି, ଲାଜ ଲାଗୁନି !'

ମୁଁ ହାଇୱେ ଉପରକୁ ଚାଲିଆସିଲି, ବୋଧହୁଏ କାନ୍ଦୁଥିଲି । କାରଣ ମୁଁ ମନ୍ତ୍ରୀ ନୁହେଁ, ମନ୍ତ୍ରୀଙ୍କର ନିର୍ବାଚନ କର୍ମୀ ।

# ବିଚରା

ନୀନୁକୁ ସମସ୍ତେ ନୀନି ବୋଲି ଜାଣିଥିଲେ । ନୀନି କହିଲେ ସମସ୍ତେ ବୁଝୁଥିଲେ, ନିହାତି ଶାନ୍ତସରଳ ସୁନ୍ଦର ଝିଅଟିଏ ଯେ କି ଯେକୌଣସି ପୁରୁଷର ଡାକରେ ହସହସ ମୁହଁରେ ତା' କୋଳକୁ ଡେଇଁପଡ଼ିପାରେ ଆଉ ସେଇ ପୁରୁଷର ନିଶରେ ହାତମାରି କିରିକିରି ହୋଇ ହସେ ଓ ବେଳେବେଳେ ପଚାରେ, 'ଏଇଟା ତମକୁ ଅଡୁଆ ଲାଗେନି ?'

କେହି ଏ ପ୍ରଶ୍ନର ଉତ୍ତର ଠିକ୍ ଭାବରେ ଦେଇପାରନ୍ତି ନାହିଁ । ହୁଏତ କେହି କେହି ଗୋଟେଅଧେ ଉତ୍ତର ଦିଅନ୍ତି; କିନ୍ତୁ ମନକୁ ସନ୍ତୁଷ୍ଟ କଲାପରି ଉତ୍ତର ନୀନି ପାଏନା ।

କିନ୍ତୁ ନୀନି ଯେଉଁଦିନ ନିଜ ଦେହର ପରିବର୍ତ୍ତନ ଦେଖି ଆଶ୍ଚର୍ଯ୍ୟହେବା ସଂଗେ ସଂଗେ ଲାଜେଇବାକୁ ଆରମ୍ଭ କଲା ଓ ପଡ଼ିଶାଘରର ବୁନୁ କୋଳରେ ବସି ସେଇ ରକମର ଗେହ୍ଲେଇ ହୋଇ ପଚାରିଲା, 'ତମକୁ ଏଇଟା ଅଡୁଆ ଲାଗେନି ?' ସେଇଦିନ ସେ ତା' ପ୍ରଶ୍ନର ଗୋଟେ ରୋମାଂଚକର ଉତ୍ତର ପାଇଲା ।

ବୁନୁ ନୀନିର ଓଠକୁ ଗେଲକରିବାକୁ ମୁହଁ ନୋଇଁଆଣି ନୀନିର ଗହନ ଗଭୀର ମନ ଭିତରଟା ଥରେଇଦେଇ ଉତ୍ତରଦେଲା, 'ଦେଖ, ଏଇ ନିଶଟା ମତେ ଆଦୌ ଅଡୁଆ ଲାଗୁନି । କିନ୍ତୁ ଆଜିଠୁ ତୁମକୁ ଯଦି ଏଇଟା ଅଡୁଆ ଲାଗେ, ତେବେ ମୁଁ ମୋ ନିଶକୁ କାଟି ସାଫ୍ କରିଦେବାକୁ ରାଜି ଅଛି ।'

ନୀନି ବୁନୁର ଗାଲ ଉପରେ ହାତରଖି ନିରେଖି ନିରେଖି ଦେଖିଲା । ସେ କଳ୍ପନାରେ ଦେଖୁଥିଲା, ଯଦି ନିଶଟା ଉଡ଼ିଯିବ ତେବେ ବୁନୁର ମୁହଁ କେମିତି ଦିଶିବ ! କିଛି ଠିକ୍ କରିପାରିଲାନି, ବରଂ ଅବଶ ହୋଇପଡ଼ି ଲୋଟିପଡ଼ିଲା ବୁନୁର କୋଳରେ ପୁଣିଥରେ ସେ ନିଶଟାକୁ ନିଜ ନାକ ଓ ଓଠର ଖୁବ୍ ନିକଟରେ ପାଇବାକୁ । ମନେମନେ ଭାବିଲା – 'ମନ୍ଦ ନୁହେଁ, ଏ ଏକ ଚମତ୍କାର ରୋମାଞ୍ଚକର କୁତ୍‌କୁତ୍ ।'

ମୁହଁ ଖୋଲି ପ୍ରଶ୍ନକଲା, 'ପୁଅମାନଙ୍କର ନିଶ କାହିଁକି ଉଠେ ? ଝିଅମାନେ ସେଇ ନିଶକୁ କାହିଁକି ଦେଖନ୍ତି ?'

ବୁନୁ କହିଲା, 'ଯାହା ତୁମ ପାଖରେ ନାହିଁ ସେଇ ଜିନିଷଟା ତମକୁ ବେଶି ଆକର୍ଷିତ କରାଏ । ଆଉ ଯାହା ଆମ ପାଖରେ ନାହିଁ ଆମ ଆଖି ତାରି ଉପରେ ପଡ଼େ ।'

ନୀନି ସିଧାହୋଇ ବସିପଡ଼ି ବୁନୁ ଆଖିକୁ ଗଭୀର ଭାବରେ ଚାହିଁ ପଚାରିଲା, 'କ'ଣ ତମ ପାଖରେ ନାହିଁ ଯାହା ଆମ ଦେହରେ ତମେ ଖୋଜ ?'

ବୁନୁ ନିର୍ଭୀକ ଭାବରେ ନୀନିର ଅର୍ଦ୍ଧବିକଶିତ ବକ୍ଷୋଜ ଉପରେ ତା'ର ପାପୁଲି ଛୁଆଁଇଦେଇ କହିଲା, 'ଏଇ ଯେ...'

ନୀନିର ଦେହ ଶୀତେଇଉଠିଲା । ସେ କିନ୍ତୁ ଲାଜକଲାନି । ବରଂ ପଚାରିଲା, 'ତମେ ମତେ ପ୍ରଥମେ ଏମିତି ଛୁଇଁଲ । ମୋ ଦେହ କାହିଁକି ଶୀତେଇଉଠିଲା ?'

'ମୁଁ ବି ଜୀବନରେ ପ୍ରଥମଥର ପାଇଁ ଛୁଇଁଲି । ମୋ ଦେହ ବି ଶୀତେଇଉଠିଲା । ବୋଧହୁଏ ଯାରି ନାମ ପ୍ରେମ – ଭଲପାଇବା ।' ବୁନୁ ଭାବୁକଙ୍କ କିପରି କହିଲା ।

ନୀନି ନିଜକୁ ସଜାଡ଼ି ନେଉ ନେଉ କହିଲା, 'ତା'ହେଲେ ତମେ କ'ଣ ମତେ ଭଲପାଅ ?'

ବୁନୁ ହସିହସି କହିଲା, 'ଖୁବ୍...କିନ୍ତୁ ତମେ ?'

ନୀନି ଏଥର ଜୀବନରେ ପ୍ରଥମଥର ପାଇଁ ଲାଜେଇଗଲା ଓ କହିଲା – 'ଏଇଆକୁ ଯଦି ଭଲପାଇବା କହନ୍ତି, ତେବେ ମୁଁ ତୁମକୁ ଭଲପାଏ...ଭା...ରି.. ।'

ସେଇଦିନରୁ ବୁନୁ ନାମ ସଙ୍ଗେ ଯତିପାତ କରି ନୀନି ତା' ନାଁଟା ବଦଳେଇ ନୀନୁ କରିଦେଲା । ସେଇ ଦିନଠୁ ବୁନୁ ନିଜକୁ ଏକ ପୁରୁଷ ହିସାବରେ ଦେଖିବାକୁ ଲାଗିଲା । ସେ ଯେମିତି ଅନୁଭବ କଲା, ବର୍ତ୍ତମାନ ସେ ଯୁବକ – ଯା ଆଗରୁ ସେ କେବଳ ଥିଲା ଏକ ଚପଳମତି ବାଳକ ।

ବୁନୁ ପୁରୁଷ – ବୁନୁ ଯୁବକ – କାରଣ ନୀନି ନାମ ସହିତ ଯତିପାତ କରିବାକୁ ଯାଇ ତାକୁ ନିଜ ନାମକୁ 'ବୁନି' ବୋଲି ପରିବର୍ତ୍ତନ କରିବାକୁ ପଡ଼ିନି । ବୁନୁର ପୌରୁଷର ଅନେକ

## ବନ୍ଦୀ ପ୍ରେମିକ

ପାଗଳ ଦିଗନ୍ତ ହଠାତ୍ ଜୀବନ୍ତ ହୋଇଉଠିଲା, ନୀନୁର ଗୋଟେ ଗୋଟେ କୌତୁକିଆ ଚୁମ୍ବନର ମୃଦୁ ଧକ୍କାରେ ।

ଘର ପଛପଟେ ସେଇ ଦୋମହଲା କୋଠାରେ, ସେଇ ଡାକ୍ତରଙ୍କ ଝିଅ ଶ୍ରୀଲତା । ଶ୍ରୀଲତା ବୁନୁ ସହିତ ଆଖି ମିଶାଇ ଜାଣି ଜାଣି ଅଜାଣତରେ ତା' ବକ୍ଷର କୋଣ ଓ ବକ୍ରତା ଦେଖେଇଦିଏ । ବୁନୁ ଭାବିବାକୁ ଲାଗିଲା - ଏଇଟା ଗୋଟେ ବେକାର ଝିଅ । ନୀନୁ ପରି ଆନ୍ତରିକତା କାହିଁ? ଏଇଟା ଗୋଟେ ସୂର୍ପଣଖା –ନୀନୁପରି ଜାନକୀ ହେବାର ଯୋଗ୍ୟତା ନାହିଁ ?

ବୁନୁ ନୀନୁର ଯେତିକି ପାଖ ହୋଇଯାଉଥାଏ, ଶ୍ରୀଲତା ଠିକ୍ ସେତିକି ଦୂରେଇ ଯାଉଥାଏ । ଶେଷରେ ଶ୍ରୀଲତା ଏକ ଅନାବଶ୍ୟକ ମାଳତୀଲତା ପରି କୋଠାରେ ହାମୁଡ଼ିପଡ଼ି ପଡ଼ିଶାଘର ଝିଅମାନଙ୍କ ସହିତ ସମ୍ପର୍କ ରଖେ ଏବଂ ସେଇ ସୌହାର୍ଦ୍ଦ୍ୟର ବିକ୍ଷିପ୍ତ ବିଧାନସଭା ବସିବା ପୂର୍ବରୁ ବୁନୁ ଚାଲିଯାଏ ବ୍ୟାଡ଼ମିଣ୍ଟନ ର୍ୟାକେଟ୍ ଧରି ଦୂରର ଏକ ପଡ଼ିଆକୁ - ଏକ ଗମ୍ଭୀର ବ୍ୟବସାୟୀ ପରି ।

ସେ ଜାଣେ, ଏଇ କେତୋଟି ଘଣ୍ଟାର ଅନୁପସ୍ଥିତିରେ ତା'ର ବିଶେଷ କିଛି କ୍ଷତି ଘଟିବନି; ଯେହେତୁ ସେ ବ୍ୟାଡ଼ମିଣ୍ଟନ ର୍ୟାକେଟ୍ ଉପରେ ଅଠାରେ ଲଗେଇ ରଖିଥିଲା ନୀନୁର ଗୋଟେ ଛୋଟ ଫଟୋ । ନୀନୁ ସାଙ୍ଗରେ ନଥାଉ, ତା' ଫଟ ତ ପାଖରେ ଅଛି! ଖେଳରେ ତା' ସାଂଗରେ କେହି ପାର୍ଟନର ନହୁଅନ୍ତୁ - ନୀନୁ ତ ଅଛି ।

ବୁନୁ ଥିଲା ନୀନୁ ଘରକୁ ଲାଗି ଆଉଗୋଟେ ଘରେ ଭଡ଼ାରେ । ବିରାଟ ଘରଟାର ଗୋଟେ ପାଖରେ ରୁମ୍‌ଗୁଡାକ ତାଲା ପଡ଼ିଥାଏ । ସେଗୁଡାକ ଘରବାଲାର । କେବଳ ଗୋଟିଏ ରୁମ୍ ସେ ବୁନୁକୁ ଛାଡ଼ିଦେଇଥାଏ । ବୁନୁ ଥିଲାବାଲା ଘରର ପିଲା । ଗାଁରେ ଯଥେଷ୍ଟ ସମ୍ପତ୍ତି । କଟକରେ ରହି ପଢ଼ାପଢ଼ି କରେ । ହଷ୍ଟେଲରେ ଚଳିବାକୁ ଅସୁବିଧା, ତେଣୁ ସେ ଗୋଟେ ଘର ଭଡ଼ା ନେଇଛି ।

ବୁନୁ ଘରଟା ଗୋଟେ ଘର ଭିତରେ ସବୁ । ସେଇଟା ତା' ଡ୍ରଇଁରୁମ୍, ସେଇଟା ତା' ବେଡ୍‌ରୁମ୍, ଆଉ ସେଇଟା ବି କିଚେନ୍ । କେତେବେଳେ ଚା' କିମ୍ବା ଆମ୍‌ଲେଟ୍ କରିବାକୁ ଗୋଟେ କଣରେ କିରାସିନି ଷ୍ଟୋଭ୍‌ଟିଏ ଥୁଆ । ନୀନୁ ସହିତ ପ୍ରେମ ହେଲାଦିନୁ ସେଥିରେ ବୁନୁ ହାତମାରିନି । ନୀନୁ ଆସେ । ସେ ନିଜେ ହାତରେ ଆମ୍‌ଲେଟ୍ ଓ ଚା' ତିଆରି କରି ବୁନୁକୁ ଖୁଆଏ ଓ ପାରିଶ୍ରମିକ ହିସାବରେ ପାଏ ଗୋଟେ ଚୁମା ।

କିନ୍ତୁ ନୀନୁ ଆସେ କେମିତି ? ସେ ଘରର ଦକ୍ଷିଣ ପାଖ ଅର୍ଥାତ୍ ନୀନୁ ଘରଆଡ଼କୁ ଗୋଟେ ଝରକା ଅଛି । ଝରକାର ସେପାଖେ ଗୋଟେ ଅନ୍ଧାରିଆ ଅସନା ଗଳି । ଗଳିକୁ ଲାଗି ନୀନୁଙ୍କର ଘର । ଝରକାର ଗୋଟେ ରେଲିଂ ହୁଗୁଳା ଥିଲା । ବୁନୁ ପ୍ରେମିକଜନିତ ଉଦ୍ଭଟତା

ପ୍ରୟୋଗ କରି ସେଇ ରେଲିଂଟା କାଢ଼ି ବାହାର କରିଦେଇଥିଲା । ତା' ଫଳରେ ଗୋଟେ ସୁନ୍ଦର ବାଟ ହୋଇଗଲା, ଯେଉଁ ବାଟଦେଇ ନୀନୁର ଅନତିଉଚ୍ଚ ବକ୍ଷ ଓ ଅନତିସ୍ଫୀତ ନିମ୍ନଦେଶ ସମ୍ବଳିତ ଦେହ ଖୁବ୍ ସହଜରେ ଯା'ଆସ କରିପାରୁଥିଲା ।

ନୀନୁ ଆସେ ରାତିରେ ସେଇ ଅନ୍ଧାରୁଆ ଗଳିଦେଇ ଝରକା ପାଖକୁ । ଝରକାର କବାଟରେ ହାତମାରିଲେ ସେ ଆପେ ଆପେ ଖୋଲିଯାଏ ଓ ନୀନୁ ଝରକାଦେଇ ବୁନୁର କୋଠରିକୁ ପଶିଆସେ - ଯେମିତି ଝଲକାଏ ଜ୍ୟୋସ୍ନା କେଉଁ କୋଣ ଦେଇ ଶେଯରେ ବିଛାଡ଼ିପଡ଼େ ।

ନୀନୁ ବୁନୁ ସାମ୍ନାସାମ୍ନି ବସନ୍ତି । ନୀନୁ ବୁନୁର ନିଶରେ ମୁହଁ ଘଷି ନିଜକୁ ନିଜେ କୁତୁକୁତୁ କରେ । ନୀନୁ ଚା' ତିଆରି କରେ, ଅଣ୍ଡା ଥିଲେ ଆମ୍‌ଲେଟ୍ କରେ । କେବେକେବେ ଘରୁ ଲୁଚେଇ ଖାଇବା ଜିନିଷ ଟିଫିନ୍ କ୍ୟାରିଅର୍‌ରେ ଆଣିଥାଏ ।

କିନ୍ତୁ ପ୍ରତିଥର ନୀନର କିଛି ନା କିଛି ଗୋଟେ ଜିନିଷ ବୁନୁ ରୁମ୍‌ରେ ରହିଯାଏ, ଆଉ ସେଇଟା ନେବାକୁ ଆସେ ସେ ତା' ପରଦିନ । ତେଣେ ଶ୍ରୀଲତା କୋଠା ଉପରେ ଛିଡ଼ାହେଇ ତାରା ଗଣେ ଓ ବୁନୁର କୋଠରି ଆଡ଼କୁ ଅନେଇରହେ ।

ରହୁ ରହୁ ଅନେକ ଜିନିଷ ରହିଗଲା ନୀନୁର । ଦିନେ ରହିଗଲା ନୀନୁର କଳାରଙ୍ଗର ଗୋଟେ ସ୍କର୍ଟ । ଦିନେ ରହିଗଲା ଆଉ ଏକ ନିଭୃତ ପରିଧାନ । ରହିଗଲା ଅନେକ ଦସ୍ତଖତ ବୁନୁର ନୋଟ୍ ଖାତାରେ । ଏମିତି ଏମିତି ରହିଗଲା ଅନେକ ଜିନିଷ ।

ଏତେ ପାଖରେ ଥାଇ, ଏତେଥର ଘରକୁ ଆସି ମଧ୍ୟ ବେଳେବେଳେ ନୀନୁ ନିଖୋଜ ହୋଇଯାଏ । ଫୋନ୍ କଲେ ବି ମିଳେନି । ବୁନୁ ଲାଗି ଲାଗି ସାତଦିନ ଅନିଦ୍ରା ରହେ, କିନ୍ତୁ ନୀନୁର ଖବର ମିଳେନା । ତା' ପରେ ଦିନେ ହଠାତ୍ ରାତିରେ ଝରକା ବାଟଦେଇ ପୁଣି ପଶିଆସେ ନୀନୁ । ତା'ର ଅନେକ ସଫେଇ । କେତେବେଳେ ସେ ମାମୁଘରକୁ ଯାଇଥିଲା ତ କେତେବେଳେ କୋଉ ବାହାଘରକୁ ଯାଇଥିଲା । କେତେବେଳେ ସିନେମା ଦେଖି ଫେରୁଫେରୁ ଡେରି ହେଇଗଲା ତ କେତେବେଳେ ସ୍କୁଲ୍‌ର ଫଙ୍କ୍‌ସନ୍‌ରେ ମଶିଥିଲା ।

ବୁନୁ ମନରେ ସନ୍ଦେହ ହେବା ସ୍ୱାଭାବିକ । ତେଣୁ ଏଇ ପଡ଼ିଆ ଦିନଗୁଡ଼ିକରେ ବୁନୁ ଆଶ୍ରୟ ନିଏ ଶ୍ରୀଲତା ପାଖରେ । ନା, ସେ ଶ୍ରୀଲତାକୁ ଗୁପ୍ତ ସୁଡ଼ଙ୍ଗ ପଥଦେଇ ନିଜର ସ୍ୱପ୍ନସାଗର ଭିତରକୁ ଆଣେନା । ଶ୍ରୀଲତା ବାହାରର ଝିଅ - ସିଏ ବାହାରେ ରହୁ । କେବଳ ନୀନୁ ଯେତେବେଳେ ଲାପତା ହୋଇଯାଉଛି, ସେତିକିବେଳେ ସେ ନୀନୁର ଖବର ସଂଗ୍ରହକରୁ ।

ଶ୍ରୀଲତାକୁ ଏ କାମରେ ବୁନୁ ଲଗାଇଥିଲା ସତ; କିନ୍ତୁ ଏଇଟା ଗୋଟେ ବିରାଟ କିଛି କାମ ବା ଘଟଣା ବୋଲି ସେ ଗ୍ରହଣ କରିନଥିଲା । କେବଳ ମାମୁଲି ଦୋସ୍ତି କହିଲେ ଚଳେ ।

କିନ୍ତୁ ଶ୍ରୀଲତା ପାଇଁ ଏଇ ମାମୁଲି କାମଟା ଏକ ବିରାଟ କାମ, ସେକଥା ବୁନୁ ବୁଝିପାରିନଥିଲା ।

ନୀନୁ ସେମିତି ଝରକାବାଟେ ଆସେ ଓ ଯାଏ । ପ୍ରତିଥର କିଛିନାକିଛି ଛାଡ଼ିଦେଇ ଯାଏ । ରହୁରହୁ ନୀନୁର ଅନେକ ଜିନିଷ ରହିଗଲା; କିନ୍ତୁ ନୀନୁ ରହିଲାନି । ସେ ଝରକାବାଟେ ଆସୁଥିଲା ଓ ଝରକାବାଟେ ହିଁ ରହିଗଲା । ଜୀବନରେ କେବେ ଦାଣ୍ଡକବାଟ ଦେଇ ଆସିବାକୁ ତା'ର ସାହସ ହେଲାନି ।

କାହାଣୀ ନୀନୁର ସରିଗଲା, କିନ୍ତୁ କାହାଣୀ ଏଇଠୁ ଆରମ୍ଭ ହେଲା ।

ଏଇ କିସମ୍‌ର 'ବାଛୁରୀପ୍ରେମ' ନୀନୁ ପାଇଁ ହୁଏତ ଗୋଟେ ଶିକ୍ଷା - ଏକ ମଧୁର ଅଭିଜ୍ଞତା । କିନ୍ତୁ ବୁନୁ ପାଇଁ ଏଇଟା ଗୋଟେ ଅଭିଜ୍ଞତା ହୋଇ ଆଦୌ ଛିଡ଼ାହୋଇ ପାରିଲା ନାହିଁ । ତା'ର ପ୍ରେମକୁ ପ୍ରତ୍ୟାଖ୍ୟାନ କରି ନୀନୁ ଯେତେବେଳେ ଚାଲିଗଲା - ସେତେବେଳେ ବୁନୁ ପ୍ରତ୍ୟାଖ୍ୟାନର କାରଣଟା ମଧ୍ୟ ଜାଣିପାରିଲାନି; ବରଂ ଦାନ୍ତ କାମୁଡ଼ି କେବଳ ଦେଖିବାକୁ ଲାଗିଲା ନୀନୁର ଗତିବିଧି । ଝିଅଟା ବୁଲିବାକୁ ଲାଗିଲା ଅଥବା ଉଡ଼ିବାକୁ ଲାଗିଲା ଶିମିଳି ତୁଳା ପରି - ଏ ଛାତରୁ ସେ ଛାତ - ଏ ଅଗଣାରୁ ସେ ଅଗଣା - ଏ ନାଳରୁ ସେ ନାଳ - ଏ ଡାଳରୁ ସେ ଡାଳ । ଆଉ ବୁନୁ ଧୀରେ ଧୀରେ ନିଜକୁ ପାଗଳ ବୋଲି ମନେକରିବାକୁ ଆରମ୍ଭ କଲା । ତାକୁ ଲାଗିଲା, ତା'ର ବ୍ୟକ୍ତିତ୍ୱ ଯେମିତି ଗୋଟେ ଖତରା କାଠଖୁଣ୍ଟ, ଯାହା ଉପରେ ଯେକୌଣସି ରାସ୍ତାର କୁକୁର ମୂତ୍ର ତ୍ୟାଗ କରି ଚାଲିଯାଇଛି ।

ଏସବୁ ଅପେକ୍ଷା ତାକୁ ସବୁଠୁ ବେଶି ବ୍ୟଥା ଦେଉଥିଲା ତା ନିଶଟା । ଯେଉଁ ନିଶ ନୀନୁକୁ କୁତ୍‌କୁତ୍ କରୁଥିଲା, ଯେଉଁ ନିଶକୁ ଛୁଇଁବା ପାଇଁ ପ୍ରାୟ ପ୍ରତିଦିନ ନୀନୁ ଆସୁଥିଲା, ତା' ଘରକୁ ଝରକାବାଟେ ଗଳି - ସେଇ ନିଶକୁ ସେ ବର୍ତ୍ତମାନ କ'ଣ କରିବ ? ସକାଳେ ଖିଅର ହେଲାବେଳେ ନିଶଟା ଟ୍ରିମ୍ କରୁ କରୁ ତା' ହାତଟା ଥରିଉଠେ । ନିଶଟା ନଥିଲେ ହୁଏତ ନୀନୁ ତାକୁ ଭଲ ପାଇନଥାନ୍ତା ଓ ସେ ବି ନୀନୁକୁ ପାଇପାରିନଥାନ୍ତା । ଏଇନା ନିଶଟା କାଟିଦେଲେ ଯଦି ନୀନୁକୁ ଭୁଲିହୁଅନ୍ତା, ତେବେ ସେ ନିଶ୍ଚୟ ସେଇଟା ଉଡ଼େଇ ଦିଅନ୍ତାଣି । କିନ୍ତୁ ବୁନୁ ନିଶଟା କାଟିପାରିଲାନି ।

ଦିନେ ସକାଳ ଆଠଟାରେ ନୀନୁ ଯେତେବେଳେ ତା' ସାନଭାଇକୁ ସାଙ୍ଗରେ ନେଇ ନର୍ସରୀ ସ୍କୁଲରେ ଛାଡ଼ିବାକୁ ଯାଇଥିଲା, ବୁନୁ ହଠାତ୍ ଝଡ଼ପରି ଆସି ତାକୁ ବାଟରେ ଅଟକେଇଦେଲା । ନୀନୁ ବୁନୁକୁ ଚାହିଁ ଯେମିତି ଜଳୁଥିଲା । ବୁନୁ ଦେଖୁଥିଲା ନୀନୁର ଡ୍ରେସ୍‌କୁ । ଏ ଭିତରେ ନୀନୁ ସ୍କର୍ଟ ଛାଡ଼ି ଶାଢ଼ି ପିନ୍ଧିଲାଣି । ଶାଢ଼ି ତଳେ ଲୁଚିଯାଇଛି ନୀନୁର ଲୋଭନୀୟ ଗୋଡ଼ ଦୁଇଟା ।

ନୀନୁ ପଚାରିଲା ଖୁବ୍ ଚଢ଼ାଗଳାରେ - 'କ'ଣ ଦରକାର ?'

## ବିଚରା

ବୁନୁ କିଛି କହିପାରିଲା ନାହିଁ । କେବଳ ଚୁପ୍‌କରି ଛିଡ଼ାହେଲା । କ'ଣ ବା କହିବ, ସେ ତ ଦୋଷ କେଉଁଠି ଓ କ'ଣ ଜାଣିନି ।

ନୀନୁ କହିଲା – 'ରିକ୍‌ସାବାଲା, ଚଲା ।'

ବୁନୁ ଚଟ୍‌କରି ରିକ୍‌ସା ଉପରେ ହାତ ରଖି ଟାଣିଧରିଲା ଏବଂ ସଙ୍ଗେ ସଙ୍ଗେ ସେଇ ଚଢ଼ାଗଳାରେ କହିଲା – 'ଏ ରିକ୍‌ସାବାଲା, – ହଁ ନୀନୁ, ମୋର ତମ ସଙ୍ଗେ କଥା ଅଛି ।'

ନୀନୁ ଯେମିତି ଜଳିଗଲା । ଓଠକାମୁଡ଼ି ଅନ୍ୟଆଡ଼େ ଚାହିଁ କହିଲା – 'ବଜାରିମାନଙ୍କ ସାଙ୍ଗରେ ମୁଁ କଥାବାର୍ତ୍ତା କରେନି ।'

ବୁନୁ ଆଶ୍ଚର୍ଯ୍ୟ ହୋଇ ଅନେଇରହିଲା ନୀନୁକୁ । ଇଚ୍ଛା ହେଉଥିଲା, ନୀନୁ ଗାଲରେ ଗୋଟେ ଚାପୁଡ଼ା ଦେଇ ତା' ମୁହଁ ବଙ୍କା କରିଦେବାକୁ । ଇଚ୍ଛା ହେଉଥିଲା ହଠାତ୍ ତା' ବ୍ଲାଉଜ୍‌ଟା ଟାଣି ଚିକିଚିକି କରି ଚିରିଦେବାକୁ । ଇଚ୍ଛା ହେଉଥିଲା ଶାଢ଼ିର କାନିଟାକୁ ଟାଣିଆଣି ସେଥିରେ ନିଆଁ ଲଗେଇଦେବାକୁ । ଇଚ୍ଛା ହେଉଥିଲା ଅନେକ ... ଅନେକ । କିନ୍ତୁ ବୁନୁ ନିଜକୁ ସମ୍ଭାଳିନେଇ ଅନ୍ୟଦିଗକୁ ଚାଲିଗଲା ।

ରିକ୍ସାଟା ତାଠୁ ଦୂରେଇ ଯାଇଛି, କିନ୍ତୁ ବୁନୁ ଆଜି ରିକ୍‌ସାକୁ ଦେଖୁନି – କେବଳ ଭାବୁଛି ସଦ୍ୟ ମିଳିଥିବା ଅପମାନର କଥା ।

ନୀନୁ ସିନା ଛାଡ଼ିଚାଲିଗଲା, ହେଲେ ବୁନୁ ନୀନୁକୁ ଛାଡ଼ି କୁଆଡ଼େ ଯିବ ? ବିଶେଷତଃ ଯେଉଁଠି ଶେଷ ସମ୍ପର୍କଟା ଅପମାନ, ଲାଂଛନା ସେଠି ଭୁଲିବାର ତ ପ୍ରଶ୍ନ ଉଠୁନି । ପ୍ରତିଶୋଧ ନେବାକୁ ପଡ଼ିବ – ବୁନୁ ଠିକ୍ କଲା ।

ଟ୍ରଙ୍କ୍ ତଳୁ କାଢ଼ିବସିଲା ସେଇସବୁ ପୁରୁଣା ଚିଠି । ମିଞ୍ଜିମିଞ୍ଜି ଅକ୍ଷରରେ ଅନେକ ଅଯଥା କଥାର ଚିଠି । ଅଳ୍ପ କାଗଜରେ ବହୁତ କଥା ଲେଖାହୋଇଥିବା ଚିଠି । ସବୁଗୁଡ଼ିକର ଭାବ ଓ ଭାଷା ଏକ । ସବୁଚିଠିର ଦାମ୍ ଏକା । ଚିଠିଗୁଡାକ ନେଇ ସମସ୍ତଙ୍କୁ ଦେଖେଇବ । ସମସ୍ତେ ପଢ଼ିବେ । ନୀନୁର ବଦନାମ୍ ହେବ, ସେ ବାହାହେଇ ପାରିବନି । ଶେଷରେ ବୁନୁର ଶରଣ ପଶିବ ଆଉ ଚିଠିଗୁଡ଼ା ଫେରାଇଦବାକୁ କହିବ । ଆଉ ସେଦିନ ଚିଠି ଫେରାଇବା ଆଗରୁ ବୁନୁ ନୀନୁ ଉପରେ କରିବ ପାଶବିକ ଅତ୍ୟାଚାର ।

ଧେତ୍, ଅସମ୍ଭବ ! ନୀନୁର ଦେହକୁ କ'ଣ ସେ ମନଭରି ଉପଭୋଗ କରିନି ଯେ ଆଜି ଚିନ୍ତା କରୁଚି ପାଶବିକ ଅତ୍ୟାଚାର କଥା !

ନା, ଚିଠିଗୁଡା ଥାଉ । ଚିଠିସବୁ ପ୍ରଥମ ଯୌବନର ସମ୍ପତ୍ତି । ଯିଏ ଭଲପାଏ, ସେ ଚିଠିକୁ ଦେଖେଇ ବ୍ଲାକ୍‌ମେଲ୍ କରେନା ।

ଗୋଟେ ଚମଡ଼ା ବ୍ୟାଗ୍‌ରୁ ବାହାର କରିଆଣିଲା ଗୋଟେ କଳାରଙ୍ଗର ସ୍କର୍ଟ । ଟିକେ

ନାକ ପାଖରେ ଲଗାଇ ମନେପକାଇବାକୁ ଚେଷ୍ଟାକଲା ପୁରୁଣା ଦିନଗୁଡାକ । ତେବେ ଏଇ ସ୍କର୍ଟଟା ଯେ ନୀନୁର ଏକଥାର ପ୍ରମାଣ କ'ଣ ? ଆଉଥରେ ସେଇ ଚମଡ଼ା ବ୍ୟାଗ୍‌ରେ ହାତପୂରେଇ ବାହାର କରି ଆଣିଲା ପେଟିକୋଟ୍ । ହାତରେ ସିଲେଇ କରାହୋଇଛି । ନୂଆ ନୂଆ ଯେତେବେଳେ ବ୍ରେସିଆର କିଣିବାକୁ ଲାଜ ଲାଗୁଥିଲା ନୀନୁକୁ ଓ ଯେତେବେଳେ ନିଜ ବ୍ରେସିଆର ନମ୍ବର ମଧ୍ୟ ଜାଣିନଥିଲା, ସେତେବେଳର ହାତରେ ସିଲେଇକରା ବ୍ରେସିଆର । ଏଇଟା ସେ ଏଇନା ପିନ୍ଧିପାରିବନି । ଅନେକ ଛୋଟ ହେବ । ପ୍ରମାଣ କ'ଣ ଯେ ଏଇଟା ଥିଲା ନୀନୁର ?

ବୁନୁ ଦେଖିଲା, କୌଣସିଟା କାମରେ ଆସିବନି । ପୁଣି ଭାବିଲା - ଯଦି ଗୋଟେ ଚିତାକୁଟାବାଲାକୁ ଡାକି ନୀନୁର ବକ୍ଷରେ ତା' ନିଜ ନାଁ କୁଟେଇଦେଇ ପାରିଥାଆନ୍ତା ତେବେ ହୁଏତ ନୀନୁ ଏମିତି ପଦେ କଥାରେ ତା' ପ୍ରେମକୁ ପ୍ରତ୍ୟାଖ୍ୟାନ କରି ଚାଲିଯିବାକୁ ସାହସ ପାଇନଥାନ୍ତା । କିନ୍ତୁ ନୀନୁ କ'ଣ ଅନୁମତି ଦେଇଥାନ୍ତା ସେମିତି କରିବାକୁ ? ସେ କ'ଣ ଏତେ ଭଲପାଉଥିଲା ବୁନୁକୁ ? ସେ କ'ଣ ବୁନୁର ପ୍ରେମ ଲାଗି ସମାଜକୁ, ଦୁନିଆକୁ ଏପରି କି ତା' ବାପ-ମାଆକୁ ବେଖାତିର କରିପାରିଥାନ୍ତା ? ବୋଧହୁଏ ନୁହେଁ ।

ନା, ନୀନୁର କିଛି କରିହେବନି । ବୁନୁ ଚେଷ୍ଟାକଲେ ବି ନୀନୁକୁ ବଦ୍‌ନାମ୍ କରିପାରିବନି । ନୀନୁର ମନର ଦାଗ ଦେଖିବାକୁ ଯେ ପର୍ଯ୍ୟନ୍ତ ତା' ନୂଆ ପୁରୁଷବନ୍ଧୁମାନେ ନ ଚାହିଁଛନ୍ତି, ସେ ପର୍ଯ୍ୟନ୍ତ ବୁନୁର ଦାମ୍ କିଛି କିଛି ବୋଲି କିଛି ନୁହେଁ ।

ଆଉ ନୀନୁର ଅବସ୍ଥା ବର୍ତ୍ତମାନ ଏଇରକମ୍ ଯେ ତା'ର କୌଣସି ପୁରୁଷବନ୍ଧୁ ଯଦି ତା' ଇତିହାସର ଗଭୀରତମ ପ୍ରଦେଶକୁ ଅନୁସନ୍ଧିତ୍ସୁ ହୋଇ ପ୍ରବେଶ କରିବାକୁ ଚେଷ୍ଟାକରିଛି ସେ କେବଳ ନୀନୁଠୁଁ ଦୂରେଇଯାଇଛି, କିନ୍ତୁ ନୀନୁକୁ ପାଇନି । ତେଣୁ ନୀନୁକୁ ଡରେଇବା ବା ବ୍ଲାକ୍‌ମେଲ୍ କରିବାପାଇଁ ଚେଷ୍ଟାକରିବା ବୃଥା ।

ବୁନୁର ମନ ତ ସହଜେ ଖରାପ । ଚିନ୍ତା କରି କରି ତା' ଦେହ ବି ଭଲ ରହିଲାନି । ସାଙ୍ଗମାନେ କହିଲେ ପାଠରେ ମନଦେବାକୁ, କିନ୍ତୁ ବହିକୁ ଚାହିଁଲେ ବୁନୁର ମନେପଡ଼ିଲା ନୀନୁର ମୁହଁ । କେହିକେହି ଉପଦେଶଦେଲେ ଖେଳାଖେଳି ନିୟମିତ କରିବାକୁ, କିନ୍ତୁ ବୁନୁ ବ୍ୟାଡ଼ମିଣ୍ଟନ୍ ର୍‍ୟାକେଟ୍‌ରେ ନୀନୁର ଫଟୋ । ନା, ସେ ଫଟୋ ଖେଳେଇଦେଉଛି ନା ସେ ଫଟୋ ପ୍ରେମ କରେଇଦେଉଛି ।

କିଛି ସାଙ୍ଗ କହିଲେ ବୁନୁକୁ, ବାହାରେ କୁଆଡ଼େ ବୁଲିଆସିଲେ ମନ ପରିବର୍ତ୍ତନ ହୋଇଯିବ ବୋଲି । ଏସବୁ ପ୍ରେମର ଆଘାତ ଖୁବ୍ ମାମୁଲି ରୋଗ । ବେଳ ଗଡ଼ିଗଲେ ଘା' ଶୁଖେ ।

## ବିଚରା

ପ୍ରେମରୋଗର ଏକମାତ୍ର ଔଷଧ ହେଉଛି ପ୍ରେମ । କେହିଜଣେ ପ୍ରେମିକ ଡାକ୍ତର ଗୋଟିଏ ରୋଗୀକୁ ପରୀକ୍ଷା କରୁକରୁ କହିଥିଲେ, 'ଔଷଧ ତ ଔଷଧ - ସବୁରୋଗ ପାଇଁ ସର୍ବଶ୍ରେଷ୍ଠ ଔଷଧ ହେଉଛି ପ୍ରେମ ।' ରୋଗୀ ପଚାରିଲା, 'ଯଦି ସେ ବି କାମ ନଦିଏ ?' ଡାକ୍ତର କହିଲେ, 'ପ୍ରେମ ଔଷଧ ଡୋଜ୍‌କୁ ଦି'ଗୁଣ କରିଦିଅ ।' ଦି'ଗୁଣା କି ତିନିଗୁଣା ହେଉ ନୀନୁର ମନ ପରିବର୍ତ୍ତନ ହେବାର କୌଣସି ଲକ୍ଷଣ ନାହିଁ କି ବୁନୁ ରୋଗମୁକ୍ତ ହେବାର ସୁଯୋଗ ନାହିଁ । ତେଣୁ ସବୁଠୁ ଭଲ, ଆଉ ଅନ୍ୟଏକ ଝିଅକୁ ପ୍ରେମକରିବା ।

ବୁନୁ କାହା କଥା ଶୁଣିଲାନି କି ମାନିଲାନି । ଆଗରୁ ଯେମିତି ଗୁରୁବାର ଦିନ ସନ୍ଧ୍ୟାବେଳେ ଚଣ୍ଡୀମନ୍ଦିର ଯାଉଥିଲା, ଠିକ୍ ସେମିତି ଆସିବାକୁ ଲାଗିଲା । ହେଲେ ନୀନୁ ସହିତ କେବେ ଦେଖାହୁଏନା । ଶୁଣିଲା ଆଜିକାଲି ନୀନୁ ସଞ୍ଜ ସଞ୍ଜ ଆସୁଛି । ଆଗରୁ ଯେମିତି ଟିକେ ଡେରିରାତିରେ ଆସେ ସେମିତି ଆସୁନି । ବୁନୁକୁ ବାଧିଲାନି, କାରଣ ଏଇଟା ଗୋଟେ ସାମୟିକ ଅଝଟପଣ ବୋଲି ଗ୍ରହଣ କରିନେଲା ।

ବୁନୁ ଆଗପରି ବଜାରର ଗୋଟାଏ ଦୋକାନରେ ବସିବାକୁ ଲାଗିଲା । ନୀନୁ ସ୍କୁଲକୁ ଯିବାବାଟରେ ସେ ଦୋକାନଟା । ବସ୍‌ର ଝରକାକୁ ନୀନୁ ଝୁଙ୍କିପଡ଼ି (ପାଖରେ ସବୁବେଳେ ଶ୍ରୀଲତା ଥାଏ) ସମସ୍ତଙ୍କ ଆଖି ଉହାଡ଼ରେ ଗୋଲାପଫୁଲ ଖସେଇଦିଏ ବୁନୁପାଇଁ । କିନ୍ତୁ ବର୍ତ୍ତମାନ - ଅନେକ ଦିନ ପର୍ଯ୍ୟନ୍ତ ବୁନୁ ବସ୍‌ରେ ଚିହ୍ନାପରିଚୟ ମୁହଁ ଦେଖିବାକୁ ପାଇଲାନି । ଶୁଣିଲା, ନୀନୁ ଆଜିକାଲି ରିକ୍‌ସାରେ ସ୍କୁଲକୁ ଯା'ଆସ କରୁଛି ।

ଠିକ୍ ଅଛି, ତା'ର ଇଚ୍ଛା । ନୀନୁ ଏଇନା ବୁନୁକୁ ଦୂରେଇ ଦେଇଛି । ବୁନୁ କିନ୍ତୁ ଭୁଲିନି କି ଭୁଲିପାରିବନି । ସେ ଦୁଃଖ ଯେମିତି ଛାତିରେ ରହି ରହି ରକ୍ତ ହୋଇଗଲାଣି ।

ବେଳେବେଳେ ବୁନୁର ଆହତ ପୁରୁଷ ସର୍କସର ବାଘ ପରି ଚିତ୍କାରକରି ଉଠୁଥିଲା । କେଉଁ ଅଶୁଭ ମୁହୂର୍ତ୍ତରେ ସେ ନୀନୁ ସାମ୍ନାରେ ତା' ପୌରୁଷ ଟିକକ ଜାହିର କରିପାରିନଥିଲା ଯେ ଏଇନା କେବଳ ନୀନୁକଥା ହିଁ ଭାବି ଭାବି ଓ ତାହାରି ସ୍ମୃତି ପ୍ରତି ନିଷ୍ଠାପର ହୋଇ ସେଇ ପୌରୁଷ ଟିକକ ଜାହିର କରିବାକୁ ପଡୁଛି ।

ସମସ୍ତେ ବୁନୁକୁ କହିଲେ ବାହାହୋଇ ପଡ଼ିବାକୁ । ସେ ତା'ର ଆର୍ଥିକ ଦୁରବସ୍ଥାର ଆଳରେ ସେ ପ୍ରସ୍ତାବ କାଟିଦେଲା । ସମସ୍ତେ ତାକୁ ଆଉଥରେ ନୂଆକରି ଗୋଟେ ପ୍ରେମ କରିବାକୁ ପ୍ରବର୍ତ୍ତାଇଲେ । ସେ ସମୟର ବହୁମୂଲ୍ୟତା ସମ୍ପର୍କରେ ବକ୍ତୃତା ଦେବାକୁ ଆରମ୍ଭକଲା । କେହି କେହି କହିଲେ ତାକୁ ପୁଣି ନୀନୁ ପାଖକୁ ଫେରିଯିବାକୁ । ସେ କିନ୍ତୁ ନୀନୁ ଚରିତ୍ରହୀନା ଓ ଏକ ବାଜେ ପ୍ରକାର ଝିଅ ବୋଲି ଘୋଷଣା କଲା । ମୋଟ ଉପରେ ନିଜକୁ ଛାଡ଼ି ସାରା

ଦୁନିଆ ଉପରେ ଏକ ଚିରହରିତ ଆକ୍ଷେପ ଥିଲା ଯାହା ତା'ର ବୈଶାଖର ଆକାଶ ପରି ମନ ସହିତ ଆଦୌ ସାଲିସ୍ କରୁନଥିଲା ।

ବୁନୁ ପଢ଼ାପଢ଼ି ଛାଡ଼ିଦେଇ ହଠାତ୍ ଗୋଟେ ବ୍ୟବସାୟ ଆରମ୍ଭ କରିବସିଲା । କିନ୍ତୁ ସେଥିରେ ବି ତା'ର ଏକାନ୍ତ ଭାବରେ ଏକାଗ୍ରତା ଅଭାବ । ତା'ର ସମସ୍ତ ବ୍ୟାବସାୟିକ କର୍ମବ୍ୟସ୍ତତା ଭିତରେ ହଠାତ୍ ସେ ଭାବେ, 'ଏସବୁ ମୁଁ କାହା ପାଇଁ କରୁଚି ? ଗୋଟେ ବଜାରି ପାଇଁ ? ଯେ କି କଥାବାର୍ତ୍ତା କରିବାକୁ ଅଯୋଗ୍ୟ ।' ବାସ୍, ଏ ଚିନ୍ତାଟି ପରେ ଏକ ମାନସ-ଉଦ୍ଭବ ଶିଖଣ୍ଡିକୁ ଦେଖି ଶରଶଯ୍ୟାରେ ଶୋଇବାକୁ ଘରକୁ ଫେରିଆସେ ବୁନୁ ।

ଆଉ ବ୍ୟବସାୟ ମଧ୍ୟ ପ୍ରେମ ପରି ଅବହେଳା ସହ୍ୟ କରେନା । ତେଣୁ ବାସ୍ତବତାର ପଥମ ବେପଥୁ ବୁନୁର ଜୀବନ ସ୍ପର୍ଶ କରିବା ପୂର୍ବରୁ ବୁନୁ ହୋଇପଡେ ଏକ ଅକାଳକୁଷ୍ମାଣ୍ଡ, ଏକ ଆଜନ୍ମ ନିଷ୍କର୍ମା, ଏକ ଅପରିପକ୍ୱ ଶିଶୁପାଳ ।

ନୀନୁର ବଦନାମ ଉଠିଲା ଚାରିଆଡ଼େ ଯେ ସେ କାଲେ ଜଣେ ମେଡ଼ିକାଲ ଛାତ୍ର ସଂଗେ ଖୁବ୍ ଖୋଲାଖୋଲି ମିଳାମିଶା କରୁଛି । ଏ ଏକ ନୂଆ ଖବର ନୁହେଁ । ବୁନୁ ସହିତ ନୀନୁର ନିବିଡ଼ ସମ୍ପର୍କ ଥିଲାବେଳେ ବି ତା' ଚାରିପାଖେ ଅନେକ ଟୋକା ଘୂରିବୁଲୁଥିଲେ ଏବଂ ନୀନୁ ସେମାନଙ୍କୁ ତା' ହସର ଜାଲରେ ଛନ୍ଦିପକାଇ ବୁନୁ ଆଗରେ ବାହାଦୁରୀ ଦେଖେଇବାକୁ ଖୁବ୍ ଭଲପାଉଥିଲା । ତଥାପି ଏଇ ଖବରଟା ବନ୍ଧୁମାନଙ୍କ ଆଗରେ କହିବୁଲିଲା, 'ଦେଖିଲ, ଭଗବାନ ଯାହା କରନ୍ତି ମଙ୍ଗଳ ପାଇଁ । ଝିଅର ଚରିତ୍ର ଏବେ ଜଣାପଡ଼ିଲା । ତମେ ଏଇ ରକମର ଗୋଟେ ଶସ୍ତା ଝିଅ ପାଖରେ ମତେ ମୁଣ୍ଡ ନୁଆଁଇବାକୁ କହୁଥିଲ - ଛି, ଛି !'

କିନ୍ତୁ ଘରକୁ ଫେରି ସେ କବାଟକିଳି ଅନେକ ସମୟ ଧରି ତକିଆଟା କୁଣ୍ଢେଇ ଶୋଇବାକୁ ଚେଷ୍ଟାକଲା । ଏ ରକମର ବଦନାମଟା ନ ଉଠି ଯଦି ଏମିତି ଗୋଟେ ବଦନାମ ଉଠିଥାନ୍ତା ଯେ - 'ନୀନୁ ଝରକା ବାଟଦେଇ ଗଳିକରି ବୁନୁର ରୁମ୍‌କୁ ବୁନୁ ସଂଗେ ଦେଖାକରିବାକୁ ଆସୁଛି' ତେବେ ହୁଏତ ବୁନୁକୁ ଏତେ ବାଧିନଥାନ୍ତା ।

ବୁନୁ ମନେ ମନେ ଭାବିଲା - ନୀନୁ ପାଖକୁ ଖଣ୍ଡେ ଚିଠିଦେବ । କିନ୍ତୁ ସେ ଯଦି ଓଲଟା ବୁଝେ - ସେ ଯଦି ପଦେ କଥାରେ କୁହେ, 'ତମେ ବି ଶେଷରେ ଏଇ କଥାକୁ ବିଶ୍ୱାସ କଲ ?'

ନା, ନୀନୁକୁ ବର୍ତ୍ତମାନ ଚିଠିଦେବା ମାନେ ନିଜକୁନିଜ ପାଖରେ ଛୋଟ କରିଦେବା, ବରଂ ସେଇ ମେଡ଼ିକାଲ ଟୋକାକୁ ପଚାରିହେବ ସୁବିଧା ଓ ସୁଯୋଗ ଦେଖି । ବୁନୁ ଘୂରିବୁଲିଲା ଏଣେତେଣେ ତା'ର ଖୋଜଖବର ନେବାପାଇଁ । କିନ୍ତୁ ଯେତେବେଳେ ପ୍ରକୃତରେ ତାକୁ ଦେଖିଲା ତା' ସହିତ କଥାବାର୍ତ୍ତା କରିବାକୁ ବି ବୁନୁ ମନେ ମନେ ଘୃଣା କରିବାକୁ ଆରମ୍ଭ

କଲା । କାରଣ ସେ ଟୋକାଟା ବୁନୁଠୁ ଢେର୍ ଖରାପ ଦେଖିବାକୁ ।

ନୀନୁର ଚରିତ୍ର ଖରାପ ହୋଇପାରେ - କିନ୍ତୁ ପସନ୍ଦ ନୁହେଁ । ନୀନୁ ଏପରି ଗୋଟେ ଅସୁନ୍ଦର ପୁଅ ପାଖରେ ମୁଣ୍ଡ ନୋଇଁ ନପାରେ । ତା' ଛଡ଼ା ଝିଅମାନଙ୍କୁ ଟିକେ ଟିକେ କଥାରେ ସନ୍ଦେହ କରିବା ପୁଅମାନଙ୍କର ଗୋଟେ ବଦଭ୍ୟାସ ।

ଯଦିବା ନୀନୁ ଏଇ ମେଡ଼ିକାଲ ଟୋକାକୁ ପ୍ରେମ କରୁଥାଏ ତେବେ ବୁନୁ ପକ୍ଷରେ ମୁହଁ ଖୋଲି କ'ଣ ପଚାରିବା ଉଚିତ ? ସେ ତ ଉତ୍ତର ଦବ ନିଶ୍ଚୟ ଗରମ ହୋଇ । ତା' ସାଂଗମାନେ ହୁଏତ ଆଗେ ପଚାରିବେ - 'ତମର ଜାଣିବା କ'ଣ ଦରକାର ?'

ବୁନୁ ଏଇସବୁ ଚିନ୍ତାରେ ପୁଣି ଅଡୁଆତଡୁଆ ଖିଅଗୁଡ଼ାକ ମୁଣ୍ଡ ଭିତରକୁ ଡାକିଆଣିଲା । ସତରେ ତା'ର ଏସବୁ ଜାଣିବା କ'ଣ ଦରକାର ?

କିନ୍ତୁ ଏଇ ଅଶୋଭନୀୟ ପରିସ୍ଥିତିରେ ଉଷ୍ମତା ଭିତରେ ବୁନୁ ନୀନୁକୁ ପଚାରିବାକୁ ମନାକଲା । ଏଇ ମେଡ଼ିକାଲ ଟୋକା ସାଙ୍ଗରେ ଘଣ୍ଟାଏ ଆଲୋଚନା କରି ଯାହା ଜାଣିନହେବ, ନୀନୁର ଆଖି ସହିତ ଆଖି ଥରେ ମିଶେଇଦେଲେ ତା'ଠୁ ଅଧିକା କଥା ଜଣାପଡ଼ିବ ।

ସେଦିନ ସଂଜବେଳେ ବୁନୁ ଗଲା ଚଣ୍ଡୀମନ୍ଦିରକୁ । ହଜାରେ ଲୋକଙ୍କ ଭିଡ଼ ଭିତରେ ସେ ନୀନୁକୁ ଠିକ୍ ଲକ୍ଷ୍ୟକରିପାରିଲା । କିନ୍ତୁ ନୀନୁ ତାକୁ ଦେଖିପାରିଲାନି । ବୁନୁ ଦୁଇଥର ତା' ଆଗଦେଇ ଚାଲିଗଲା । ପାଖ ପାନଦୋକାନରୁ ସିଗାରେଟ୍ କିଣି ଅପେକ୍ଷା କରିବା ଭଂଗୀରେ ଛିଡ଼ାହେଲା । ପୁଣି ଘଡ଼ିଦେଖି, ଯେମିତି କୋଉଠି ଗୋଟେ ଜରୁରୀ କାମ ଅଛି ସେମିତି ବାହାନା କରି ଚାଲିଯିବାକୁ ଆରମ୍ଭକଲା । ହେଲେ ନୀନୁର ପାଷାଣଠୁ ଆହୁରି କଠିନ ନଜର ତା' ଉପରେ ପଡ଼ିଲାନି ।

କିନ୍ତୁ ଆଉଗୋଟେ ଅଦ୍‌ଭୁତ କଥା - ନୀନୁର ଯେଉଁ ଡେପୁଟି କଲେକ୍ଟରଙ୍କ ସହ ବାହାଘର ପଡ଼ିଛି ସେ ମଧ୍ୟ ସେ ପାଖର ଚୁଡ଼ିଦୋକାନର ଅଧା ଛାଇ ଅଧା ଆଲୁଅ ପାଖରେ । ଆଉ ନୀନୁ ସେ ଦିଗକୁ ବେଶ୍ ଦୁଇଥର ଚାହିଁଲା । ଆଖି ମିଳିଲା କି ନାହିଁ କହି ହେବ ନାହିଁ । ହସ ଅଦଳବଦଳ ହେଲା କି ନାହିଁ ଜାଣିହେଲାନି ।

ବୁନୁ ପୁଣି ଭାବିବାକୁ ଲାଗିଲା । ଆଶ୍ଚର୍ଯ୍ୟ, ଏତେ ଦୁର୍ନାମ ପରେ ବି ନୀନୁକୁ ବାହାହେବା ପାଇଁ ଲୋକ ଆସୁଛନ୍ତି । ଧନ୍ୟ ସେ ଲୋକମାନେ -ତମେମାନେ ଅଯଥା କାହିଁକି ବଦନାମ କର ପୁଣି, କାହିଁକି ସେଇ ବଦନାମକୁ ଘୋଡ଼େଇପକେଇ ବେଶ୍ୟାଘରର ମଉଳାଫୁଲକୁ ଦିଅଁଙ୍କ ଛଡ଼ାଫୁଲ ବୋଲି ପ୍ରତିପାଦିତ କର, ତା' ତମକୁ ହିଁ ଜଣା ।

ବୁନୁ ମନେମନେ ଠିକ୍‌କଲା ସେ ଏଣିକି ଗୋଟେ ନୂଆ ପ୍ରେମ କରିବ । ଏଥର କିନ୍ତୁ ଝରକାଦେଇ ଯିବାଆସିବା ଲୁଚାଛପା ପ୍ରେମ ନୁହେଁ - ଏଥର ରାଜପଥ ଉପରେ, ଖୋଲା

ବଜାରରେ ନିର୍ଭୟରେ ପ୍ରେମ କରିବ । ତା'ର ବି ଜୀବନରେ ଅନେକ କିଛି କରିବାକୁ ଅଛି । ସେ କେବଳ ଗୋଟାଏ ଝିଅ ପାଇଁ ତା'ର ଜୀବନଟାକୁ ଅଯଥାରେ କାହିଁକି ନଷ୍ଟ କରିବ ?

ବ୍ୟବସାୟର ସାମାନ୍ୟ ଲାଭରୁ ବୁନୁ କିଣିଥିଲା ଖଣ୍ଡେ ଭଲ ମଟରସାଇକେଲ । ମଟରସାଇକେଲ ସେ ଚଳେଇବାକୁ ଭଲପାଏ । ମଟରସାଇକେଲ ଚଳେଇଲେ ନିଜକୁ ପ୍ରକୃତ ପୁରୁଷ ପୁରୁଷ ମନେହୁଏ । ରାସ୍ତାରେ ଗଲାବେଳେ ସେ କାହାକୁ ଖାତିର କରେନା ।

ଦିନସାରା ମଟରସାଇକେଲରେ ସେ ଏଣେତେଣେ ବୁଲାଚଲା କରେ । ମନରେ ସେଇ ଗୋଟିଏ ଜପ - କାହାକୁ ଭଲପାଇବି, କାହାକୁ ଭଲପାଇବି । ସେ ନୀନୁଠୁ ଅଧିକ ସୁନ୍ଦରୀ ହୋଇଥିବ ନା କମ୍ । ମୁଁ ତା' ସହିତ ଆଗେ କଥାବାର୍ତ୍ତା କରିବାକୁ ଚେଷ୍ଟା କରିବି ନା ସେ ମୋ' ସହିତ ? ଏଇସବୁ କଥାଗୁଡାକ କ୍ଲଚ୍, ଆକ୍ସିଲେରେଟର ପରି ମଟରସାଇକେଲର ଗୋଟିଏ ଗୋଟିଏ ଅଂଶ ହୋଇଯାଇଥିଲେ ।

କଦବା ଗୋଟିଏ ଝିଅ ରାସ୍ତାରେ ଗଲାବେଳେ ତାକୁ ଭଲଲାଗେ । ଖୋଜଖବର ନେଇ ସେ ଦେଖେ ତା' ଘରଟା ଅନେକ ଦୂରରେ । ହେଃ, ନୀନୁପରି ପଡୋଶୀ ଆଉ ଷୋଡଶୀଟିଏ ନହେଲେ କ'ଣ ହବ ?

ପୁଣି ଦିନେ ଦିନେ ଠିକ୍ କରେ ନୀନୁ ପାଖରୁ ଘର ବଦଳେଇ ସେ ଆଉ କୌଣସି ଭଡ଼ାଘରକୁ ଉଠିଯିବ । ଅନ୍ୟ ସାହି, ଅନ୍ୟ ଗଳି, ଅନ୍ୟ ବଜାର, ଅନ୍ୟ ଡାକଘର ଯେଉଁଠି ନୀନୁର ଗନ୍ଧ ବି ପଶିପାରିବନି । କିନ୍ତୁ କ'ଣ ବା ଲାଭ - ଯେତେବେଳେ ଏଇ ସହରର ପ୍ରତ୍ୟେକ ରାସ୍ତା, ପ୍ରତି ଛକ, ପ୍ରତି ମୋଡ଼ ତାକୁ ମନେପକେଇ ଦେଉଛି ତା' ପୁରୁଣାଦିନ ।

ଏ ସହର ଯଦି ଛାଡ଼ିଦେବ ତା'ହେଲେ ବୋଧହୁଏ ନୀନୁକୁ ଭୁଲିହୋଇଯିବ । ବୁନୁ ସେଇଥିଲାଗି ମଝିରେ ମଝିରେ ମଟରସାଇକେଲରେ ପୁରୀ ଭୁବନେଶ୍ୱର ଆଡ଼େ ଚାଲିଯାଏ । ସବୁଠାରୁ ବେଶୀ ଭଲପାଏ ସେ ପୁରୀର ସମୁଦ୍ରକୂଳ । ସେଠି ପ୍ରତ୍ୟେକଟି ଢେଉ ତୁମର ଆପଣା ଲୋକ - ପ୍ରତିଟି ଫେରନ୍ତି ଢେଉପରି ଗୋଟେ ଗୋଟେ ଧୋକ୍କାବାଜ ପ୍ରେମିକା । ସେଠି ସମସ୍ତେ ନିଜର - ସମସ୍ତେ ପର । ସବୁ ଢେଉ ଫେରନ୍ତି, ସବୁ ଆଖି ଅସରନ୍ତି ।

ଅନ୍ୟର ଆଖି ଦେଖି ଯେତେବେଳେ ବୁଝିହଉନି ତା'ର ମନକଥା, ସେତେବେଳେ ନିଜ ଆଖିକି କାହିଁକି ଅତୀତର ଗ୍ଲାନିକୁ ବଖାଣିବ ଅନ୍ୟ ଆଗରେ ?

ସମୁଦ୍ରକୂଳରେ ଝିଅମାନେ ଶାମୁକା ପରି - ଅଞ୍ଜିଭରି ସେମାନଙ୍କୁ ଗୋଟାଅ । ସେମାନଙ୍କ ଦୃଷ୍ଟି ସେମାନଙ୍କ ଗତିକୁ ଲକ୍ଷ୍ୟକରି ପୁଣି ଘରକୁ ଫେରି ପ୍ରତିଟି ଶାମୁକା ଧରି ମନେପକା । ଦେଖିବ, କିଛି ମନେପଡ଼ିବନି । ସବୁ ମୁହଁ ଗୋଳେଇହୋଇଯିବ । କୋଉ ଶାମୁକା କୋଉ ବାଲିବନ୍ତାରୁ ଗୋଟେଇଛ ଆଦୌ ମନେପଡ଼ିବନି ।

## ବିଚରା

ବୁନୁର କିନ୍ତୁ ଆଉ ଗୋଟେ ଅଭ୍ୟାସ । ସମସ୍ତଙ୍କ ମୁହଁକୁ ଅନେଇ ଜଣଜଣ କରି ପ୍ରତ୍ୟେକଙ୍କ ମୁହଁକୁ ନୀନୁର ମୁହଁ ସହିତ ତୁଳନା କରିବାକୁ ସେ ଖୁବ୍ ଭଲପାଏ । କାହାର ଆଖି ତା ଆଖି ପରି, କାହାର ଓଠ ଠିକ୍ ନୀନରୁ ଓଠପରି, କାହାର ଭ୍ରୁଟା ଆଉଟିକେ ବଙ୍କା ହୋଇଥିଲେ ନୀନୁର ଭ୍ରୁପରି ହୋଇଥାନ୍ତା, କାହାର କଜଳ ଲଗେଇବା ଢଙ୍ଗ ନୀନୁପରି । କିନ୍ତୁ ଅବିକଳ ନୀନୁପରି ଝିଅ ମିଳିବା ମୁସ୍କିଲ ।

ବୁନୁ ନାଇଲନ୍‌ର ଗୋଟିଏ ସୁଇମିଂ ଟ୍ରଙ୍କା ପିନ୍ଧି ସମୁଦ୍ରରେ ଲହଡ଼ି ଭାଂଗେ । ସେ ଦେଖେଇଦେବାକୁ ଚାହେଁ ସାରା ଦୁନିଆକୁ ତାର ସୁନ୍ଦର ସ୍ୱାସ୍ଥ୍ୟ । ଆକର୍ଷଣୀୟ ଯୌବନ ଓ ତା'ର ସାହସର ଦଉଡ଼ - ତାର ଅଭିମାନ କରିବାର ଏକାଗ୍ରତା । ଅନେକ ତା'ର ଦେହକୁ ଲକ୍ଷ୍ୟ କରନ୍ତି ସେ ଲହଡ଼ି ଭାଂଗୁଥିଲାବେଳେ । ଗାଧୋଇସାରି ଖରାକୁ ପିଠିକରି ବାଲି ଉପରେ ଅନେକ ସମୟ ପଡ଼ିରହେ । ତା' ପାଖଦେଇ ଝିଅମାନେ ତାକୁ ଲକ୍ଷ୍ୟକରି କରି ଯା'ଆସ କରୁଥାନ୍ତି । କିନ୍ତୁ ସେତିକିବେଳେ ବୁନୁ କାହା ମୁହଁକୁ ଚାହିଁ ନୀନୁର ମୁହଁ ସହିତ ତୁଳନା କରିବାକୁ ଚାହେଁନା । ସେ ଯେତେବେଳେ ନିଜେ ଗୋଟେ ପ୍ରଦର୍ଶନୀରେ ନିଜକୁ ଦେଖେଇ ହଉଛି ଦୁନିଆ ଆଗରେ ସେତେବେଳେ ଦୁନିଆରେ କିଏ କ'ଣ କହିଲା ବା କିଏ କେମିତି ଚାହୁଁଛି ସେ ବିଷୟରେ ମୁଣ୍ଡଘୂରେଇ ଲାଭ ନାହିଁ ।

ସେ ନିହାତି ନିଷ୍ପାପର ଭାବରେ ସମୁଦ୍ରକୂଳରେ ପ୍ରମାଣ କରିଦେବାକୁ ଚାହେଁ ଯେ ସେ ଆଜି ବି ଏକା - ସେ ନିର୍ମଳ - ସେ ପ୍ରେମ କରିପାରେ - କିନ୍ତୁ ଯାହାକୁ ତାହାକୁ ନୁହେଁ । କୌଣସି ପ୍ରେମିକା ବାଛିବା ପୂର୍ବରୁ ସେ ଭାବିବାକୁ ଯଥେଷ୍ଟ ସମୟ ଦେବାକୁ ଚାହେଁ ।

ଦିନେ ସେ ଦେଖିଲା, ଅଦ୍‌ଭୁତ ଅଣଓଡ଼ିଆ ଝିଅ ଯାହାର ଚେହେରା ଆଦୌ ନୀନୁ ପରି ନୁହେଁ । କିନ୍ତୁ ଆଶ୍ଚର୍ଯ୍ୟ, ନୀନୁର ଗୋଟାଏ ଗୁଣ ଯା ପାଖରେ ଖୁବ୍ ବେଶୀ ମାତ୍ରାରେ ରହିଛି । ଝିଅଟା ସମୁଦ୍ରକୂଳରେ ଲଟେଇରୁ ଛିଣ୍ଡିଯାଇଥିବା ଗୁଡ଼ିପରି ଉଡ଼ିବୁଲୁଛି, ସାଂଗରେ ତା'ର ଜଗୁଆଳୀ କେହି ନାହାନ୍ତି । ତା' ପଛରେ ଉନ୍ମତ୍ତ ଯୁବକଙ୍କ ପଟୁଆର ନାହିଁ । ତା'ର ସ୍ୱାଧୀନତା ସତେଯେମିତି ଗୋଟେ ଆଶ୍ୱିନର ଆକାଶ - ଅନେକ ଉଡ଼ାମେଘର ସମାବେଶ, ଅଥଚ ନୀଳିମା ଏକ ସଂବିଧାନ ପରି ସମସ୍ତ ପରିବେଶରେ ବେଶ୍ ସମୁଜ୍ଜଳ । କୌଣସି ଯୁବକ ଯଦି ତାକୁ ଗୋଲାପଫୁଲଟିଏ ଦିଏ, ତେବେ ସେ ତାକୁ ହସି ହସି ତା' ହାତରୁ ନିଏ ଓ ଧନ୍ୟବାଦ ଜଣାଏ । କିନ୍ତୁ ଫୁଲଟିକୁ ସାଂଗେ ସାଂଗେ ମଥାରେ ଖୋଷେନା, ହାତରେ ଧରି ବୁଲୁଥାଏ । ଅପେକ୍ଷା କରେ ଆଉ ଜଣେ ଯୁବକ ଆସିବା ପର୍ଯ୍ୟନ୍ତ । ନୂତନ ଯୁବକଟି ଆସିଗଲେ ତାକୁ ହସି ହସି ଗୋଲାପଫୁଲଟି ଦେଇଦିଏ । କିଏ ଯଦି ଚେନାଚୂର କିଣି ଖାଇବାକୁ ଦିଏ,

ସେ ହସି ହସି ତାକୁ ଗ୍ରହଣକରେ ଆଉ ଅଳ୍ପ ଦୂରରେ ଖେଳୁଥିବା ଛୋଟପିଲା ଅଥବା ନୋଳିଆ ପିଲାମାନଙ୍କୁ ବାଣ୍ଟିଦିଏ ।

ବୁନୁର ମନେପଡ଼ିଗଲା ନୀନୁର କଥା । ପ୍ରଥମପ୍ରେମର ସୁନାଝରା ଦିନମାନଙ୍କରେ ବୁନୁ ନୀନୁ ଆଙ୍ଗୁଠିରେ ଗୋଟେ ସୁନାମୁଦି ପିନ୍ଧେଇ ଦେଇଥିଲା । ଆଉ ଶେଷ ପ୍ରେମର ଜ୍ୱଳନମୟ ଦିନରେ ସେ ଦେଖିଲା, ସେଇ ମୁଦିଟା ଆଉ ଜଣେ ଯୁବକର ଆଙ୍ଗୁଠିରେ । ବାଃ, ଚମତ୍କାର ସାଦୃଶ୍ୟ !

ବୁନୁ ଦେହ ନପୋଛି ସେମିତି ଓଦା ସରସର ହୋଇ ସେଇ ବଙ୍ଗାଳୀ ଝିଅ ଆଡ଼କୁ ଆଗେଇଲା । ବୁନୁର ଖାଲି ଦେହ । ପିନ୍ଧିଛି କେବଳ ସୁଇମିଂ ଟଙ୍କା । ହାତରେ ମଧ୍ୟ କିଛି ନାହିଁ ଯାହା ସେ ଝିଅଟିକୁ ଉପହାର ଦେଇପାରିବ । ଆଉ ସେ ଝିଅ ସେତିକିବେଳେ ଖାଲିହାତରେ ଛିଡ଼ାହୋଇଛି । ବୁନୁର ଓଦା ଦେହଟାକୁ ଦେଖି ଝିଅଟା କଅଣ ଗୋଟାଏ ଭାବିବାକୁ ଲାଗିଲା । ତା' ପରେ ହଠାତ୍ ମୁହଁବୁଲେଇ ରାସ୍ତା ଆଡ଼କୁ ଚାଲିବାକୁ ଲାଗିଲା । ବୁନୁ କିଛି ବୁଝିପାରିଲାନି । ସେ ବି ତା' ପଛେ ପଛେ ଦିଗବାରିଣୀ ଖୁଣ୍ଟ ପାଖରେ ଥୁଆହୋଇଥିବା ତା'ର ମଟରସାଇକେଲ ଆଡ଼କୁ ଆଗେଇଗଲା ।

ଗାଧୋଇବାକୁ ଆସିଲାବେଳେ ବୁନୁ ଟାୱାଲ ଖଣ୍ଡେ ମଧ୍ୟ ସାଂଗରେ ଆଣେନା । ଖାଲି ଦେହରେ ମଟରସାଇକେଲ ଚଳାଇ ଆସେ ଓ ଓଦା ଦେହରେ ଫେରେ ହୋଟେଲ୍ ରୁମ୍‌କୁ ଯେଉଁଠି ପୁଣିଥରେ ବାଥ୍‌ରୁମ୍‌ରେ ଦେହ ଧୋଇ ପୋଛାପୋଛି ହୋଇପଡ଼େ । ତେଣୁ ସେଇ ଖାଲିଦେହରେ ହିଁ ବୁନୁ ଝିଅଟାକୁ ଅନୁସରଣ କରିବାକୁ ଲାଗିଲା । ମନେମନେ ଭାବୁଥାଏ – ଭୟ ନାହିଁ – ଏଠି ଯଦି ଝିଅଟି ତାକୁ 'ବଜାରି' ବୋଲି ଗାଳିଦିଏ ତେବେ ତାକୁ ବିଶେଷ ଅପମାନ ଲାଗିବ ନାହିଁ । ଏଠି ବୁନୁକୁ କିଏ ଚିହ୍ନେ ?

କିନ୍ତୁ ରାସ୍ତାରେ ଆଗେ ଆଗେ ସୁନ୍ଦରୀ ଝିଅଟି ଓ ପଛରେ ଖାଲିଦେହରେ ଆସ୍ତେ ଆସ୍ତେ ମଟରସାଇକେଲ ଚଳେଇ ଯାଉଥିବା ବୁନୁକୁ ଦେଖି ଲୋକମାନେ ଆଶ୍ଚର୍ଯ୍ୟ ହେଉଥିଲେ । ଏ ଏକ ଅଦ୍ଭୁତ ଦୃଶ୍ୟ ସେମାନଙ୍କ ପାଇଁ ।

ଝିଅଟାକୁ ବୁନୁ ବଙ୍ଗଳାରେ ପଚାରିଲା, 'ମତେ କିଛି ଉପହାର ଦେବନି ? ଝିଅଟି ଥମ୍‌କରି ରାସ୍ତା ଉପରେ ଛିଡ଼ାହୋଇଗଲା । ବୁନୁ ଆଖିକୁ ଭଲଭାବରେ ଚାହିଁଲା । ପୁଣି ଦୃଷ୍ଟି ତା'ର ଛାତିଆଡ଼କୁ ନଇଁଆସିଲା । ଧୀରେଧୀରେ ସେ ମୁହଁଉଠାଇ ସେଇ ବଙ୍ଗଳାରେ ପ୍ରଶ୍ନ କଲା 'କ୍ୟାନୋ (କାହିଁକି) ?'

ବୁନୁ ଏରକମ ଉତ୍ତର ଆଶା କରିନଥିଲା । ସେ ଯଦି ଉପହାର ନଦେବ ବୋଲି କେବଳ 'ନୋ' କହିଥାନ୍ତା ତେବେ ବୁନୁ ସୁନାପିଲାଟି ପରି ସେଇଠୁ ଫେରିଆସିଥାନ୍ତା ।

ଏରକମ ଉତ୍ତର ଅଥବା ପ୍ରଶ୍ନର ସେ କ'ଣ ଜବାବ ଦେବ? ଏଇଟା ଏଇ 'କାହିଁକି'ର ଜବାବ ତାକୁ ଦେବାକୁ ପଡ଼ିବ ନହେଲେ ତା'ର ଅସ୍ତିତ୍ୱର ମର୍ଯ୍ୟାଦା କ'ଣ? କ'ଣ ବା ଜବାବ୍ ଦେବ ସେ କିଛି ଠିକ୍ କରିପାରିଲାନି।

ଝିଅଟା ନିହାତି ସମଝଦାର ଭାବରେ ମୁହଁବୁଲେଇ ଆଗେଇବାକୁ ଲାଗିଲା। ତା' ଚାହାଣି ନିର୍ଲିପ୍ତ ଓ ଠଓ ପଥର। କୌଣସି ରକମ ହାବଭାବ ସେ ଜଣାଇଦେବାକୁ ଯେମିତି ଚାହେଁନା ଏବଂ ଏଇ 'କାହିଁକି'ର ଉତ୍ତରଦେବାକୁ ବୁନୁ ସମ୍ପୂର୍ଣ୍ଣରୂପେ ଅକ୍ଷମ ବୋଲି ସେ ଯେମିତି ଜାଣିପାରିଥିଲା। ବୁନ ପୁଣିଥରେ ମଟରସାଇକେଲ ଷ୍ଟାର୍ଟ କରି ଝିଅ ପଛେ ପଛେ ଚାଲିଲା।

ଝିଅଟା ବୁଲିବୁଲି ଦୁଇଥର ଅନେଇଲା। କିନ୍ତୁ ବୁନୁକୁ ପ୍ରଶ୍ନ କଲାନାହିଁ, 'ମୋ ପଛେ ପଛେ କାହିଁକି ଆସୁଛ?' ବୋଲି।

ବୁନୁ ନିର୍ବୋଧ ଶିଶୁଟି ପରି ଚାଲିଛି। ଚାଲୁଚାଲୁ ମୋଚିସାହି ଛକ ଆସିଗଲା। ହଠାତ୍ ଝିଅଟି ଗୋଟେ ଜୋତାଦୋକାନ ଭିତରେ ପଶିଗଲା। ବୁନୁ ବି ମଟରସାଇକେଲ ରଖି ତା' ପାଖ ଦୋକାନକୁ ପଶିଗଲା।

ମୋଚିଟୋକା ବୁନୁକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲା। ଖାଲି ଅଣ୍ଡରୱେର ଖଣ୍ଡେ ପିନ୍ଧି କୌଣସି ଗରାଖ ବୋଧହୁଏ ତା' ଦୋକାନକୁ କେବେ ପଶିନଥିଲେ। ଆଉ ଏଇ ବେଶରେ କୋଉଠି ପକେଟ୍ ଅଛି ଯେ ସେଥିରେ ଟଙ୍କାପଇସା ଥିବ ଜୋତା କିଣିବାକୁ?

ମୋଚିଟୋକା ଅନେଇ କେବଳ ହସିଲା। ବୁନୁ ଲାଜ ନକରି , 'ତୁ ବେଶ୍ ଭଲଭାବରେ ଜାଣୁ ମୁଁ କିଛି କିଣିବାକୁ ଆସିନି। ସେ ପାଖ ଦୋକାନରେ ସେଇ ଯୋଉ ଝିଅଟା ଜୋତା ଦେଖୁଛି ତା' ବିଷୟରେ କିଛି ଜାଣୁ? ସେ କୋଉଠୁ ଆସିଛି, କୋଉଠି ରହିଛି - କିଛି ଜାଣିଛୁ? ମୋଚିଟୋକା ଝିଅକୁ ଦେଖି କହିଲା - ଏ ଝିଅଟା ପନ୍ଦର କୋଡ଼ିଏ ଦିନ ହେବ ଏ ରାସ୍ତାଦେଇ ଯିବାଆସିବା କରେ। ଆଉ ଅଧିକ କିଛି କହିପାରିବିନି, ଖବର ଦରକାର? ଦିନେ ଦି'ଦିନ ସମୟ ଦିଅନ୍ତୁ।'

ବୁନୁ ସେପାଖ ଦୋକାନକୁ ଅନେଇ ଦେଖିଲା ଝିଅଟା ଗୋଟେ ରିକ୍ସା ଡାକି ସେଥିରେ ବସି ସମ୍ଭବତଃ ସିଂହଦ୍ୱାର ଆଡ଼କୁଯାଉଛି।

ବୁନୁ ରିକ୍ସା ପଛେ ପଛେ ବଡ଼ଦାଣ୍ଡ ଆଡ଼କୁ ମୁହେଁଇଲା। ଇଚ୍ଛା ହେଉଥିଲା, କିଛି ଗୋଟେ କିଣି ଝିଅକୁ ଉପହାର ଦିଅନ୍ତା; କିନ୍ତୁ ପାଖରେ ପଇସା ନାହିଁ। ପଇସା ଆଣିବାକୁ ହେଲେ ପୁଣି ହୋଟେଲ ରୁମ୍‌କୁ ଫେରିବାକୁ ହେବ।

## ବନ୍ଦୀ ପ୍ରେମିକ

ଦୁଇଦିନ ଗୋଟେ ଝିଅର ଗୋଟେ ଛୋଟ ଅବହେଳାର ଡେଢା ଆହ୍ୱାନରେ ବୁନୁ ଘୂରିବୁଲିଲା ମଟରସାଇକେଲ ଧରି ରାସ୍ତାରେ ରାସ୍ତାରେ -ଜିଦ୍‌ଟା ତା' ମୁଣ୍ଡରେ ଭୂତପରି ଚଢ଼ିଯାଇଥିଲା ।

ସେ ଭଲଭାବରେ ଜାଣିଥିଲା ଯେ ଯଦି ସେ ଝିଅଟାକୁ ଖୋଜିପାଏ, ତେବେ ସେଇ ପାଇବାଟା ହିଁ ଗୋଟେ ଚମତ୍କାର ହରେଇବା ହୋଇଯିବ । ସେ ଯଦି ଏ ଝିଅଟାର ସମ୍ପର୍କକୁ ପୁଣି ଗଣ୍ଠିଧନ କରିବାକୁ ସୁଯୋଗ ପାଏ, ତେବେ ବା ଅଧିକଟା କ'ଣ ? ଏଇ ଝିଅଟା ଯେତେବେଳେ ଯାଠୁ ଫୁଲ ନେଇ ତାକୁ ଦେଉଛି - ସେତେବେଳେ ବୁନୁକୁ ନେଇ କୋଉ ହାଟରେ ବିକ୍ରି କରିଦେବ ତା'ର କ'ଣ କିଛି ଠିକ୍‌ଠିକଣା ଅଛି ?

କିନ୍ତୁ ବୁନୁ ଚାହୁଁଥିଲା ସେୟା । ସେ ଚାହୁଁଥିଲା ବରଂ ତାକୁ ଜଣେ କେହି କିଣିନେଇ ବିକିଦେଉ ପଛକେ ନୀନୁ ପରି ପସରାରେ ରଖି ପଚେଇଶଢ଼େଇ ନଦଉ । ଶୁଣିଥିଲା - ପ୍ରେମରେ ଅପେକ୍ଷାଟା ହିଁ ସବୁଠାରୁ ମଧୁର - ସବୁଠୁ ବଡ଼ ଗୌରବ । କିନ୍ତୁ ସେ ଅପେକ୍ଷାର କ'ଣ ମୂଲ୍ୟ ଅଛି ଯାହାର ଶେଷ ପରିଣତି ଉପେକ୍ଷା ବୋଲି ଆଗରୁ ଘୋଷଣା କରି ଦିଆଯାଇଛି । ନା, ଆପାତତଃ ଏଇ ଅଣଓଡ଼ିଆ ଝିଅ ଯାହାର ନାଁଟା ମଧ୍ୟ ଦୁଇଦିନ ଚେଷ୍ଟା କରି ବି ଜାଣିପାରିଲାନି - ତାକୁହିଁ ପ୍ରେମ କରାଯାଉ ।

ବୁନୁ ହୋଟେଲ୍ ରୁମ୍‌ରେ ବସି ଆଇନାରେ ନିଜ ମୁହଁ ଦେଖୁଥିଲା । ନିଶଟା ତ ମୁହଁରେ ଗୋଟିଏ ଅଶୁଭ ଚିହ୍ନ ପରି ଲାଗୁଥିଲା । ନିଶଟାକୁ ଉଡ଼େଇଦେବାକୁ ସୁଟ୍‌କେଶରୁ ରେଜର୍ ବାହାରକଲା । ପୁଣି ନିଜକୁନିଜେ କହିଲା - 'ରହିଯା ବୁନୁ, ରହିଯା - କାଲି ସକାଳେ ସେ ବଙ୍ଗାଳୀ ଝିଅଟା ଯଦି ତୋ ନିଶହୀନ ମୁହଁକୁ ଚହ୍ନିନପାରିଲା - କିମ୍ବା ତାକୁ ଭଲ ନଲାଗିବା ହେତୁ ମୁହଁବୁଲେଇ ନେଲା - ତେବେ ?'

ନା' ନିଶଟା ଥାଉ ତା' ଜାଗାରେ । ସମସ୍ତେ ସମସ୍ତଙ୍କ ଅସ୍ତିତ୍ୱ ନେଇ ରୁହନ୍ତୁ, କେବଳ ବୁନୁ ଘୁଂଚିଯାଉ ତା' କେନ୍ଦ୍ରବିନ୍ଦୁରୁ ଆଉ କିଛି ଦୂରକୁ - ପୁଣି ସୃଷ୍ଟିହେଉ ତା' ଚାରିପାଖରେ ନୂତନ ବୃତ୍ତ - ନୂତନ ବଳୟ ଏବଂ ଗୋଟେ ଚକ୍‌ଚକ୍ ବୁଢ଼ିଆଣୀ ଜାଲ, ଯେଉଁଟା ଜହ୍ନର ଜ୍ୟୋସ୍ନାରେ ଲୁଚିଯିବ କିନ୍ତୁ ସକାଳର ସୁନେଲୀ ଖରାରେ ପୁଣି ଜିଇଁଉଠିବ ଛୋଟ ଛୋଟ ଶିଶିରବିନ୍ଦୁକୁ ଗୁନ୍ଥି ଗୁନ୍ଥି ।

ତୃତୀୟ ଦିନ ସନ୍ଧ୍ୟାରେ ବୁନୁ ଏଣେତେଣେ ମଟରସାଇକେଲ ଧରି ଘୂରୁଥିଲା । ମନ୍ଦିରରେ ଚେଷ୍ଟାକଲା ଖୋଜିବାକୁ ସେଇ ଝିଅଟାକୁ । ବଡ଼ଦାଣ୍ଡରେ କ୍ୟାବିନ୍ ଦୋକାନମାନଙ୍କରେ ମଧ୍ୟ ଆଖି ତା'ର ଖୋଜିବୁଲିଲା ତାକୁ । ସହରର ସବୁ ସିନେମା ହଲ ଆଗରେ ବି କିଛି ସମୟ ବୁଲିଲା । ଅଥଚ ସେଇ ଚିହ୍ନା ମୁହଁଟା ଆଉଥରେ ଦେଖାମିଳିଲାନି ।

ନିରାଶ ହୋଇ ସମୁଦ୍ରକୂଳକୁ ଆସୁଛି, ହଠାତ୍ କାହାର ପାଟିରେ ଚମକିପଡ଼ି ବ୍ରେକ୍‌ମାରିଲା । ସେଇ ଜୋତାଦୋକାନର ମୋଚିଟୋକା ଖୁବ୍ ବଡ଼ପାଟିକରି, ହାତଠାରି ବୁନୁକୁ ଡାକୁଛି । କହୁଛି – 'ବାବୁ, ଆପଣ କୁଆଡ଼େ ଯାଇଥିଲେ ?'

ବୁନୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା – କାହିଁକି କ'ଣ ହେଲା ? ସେ   ଝିଅଟାର କିଛି ଖବର ପାଇଛ ?'

'ଆଜ୍ଞା – ତା' ଖବର ମୁଁ ଜନ୍ମାରୁ ପାଇନି – ସେ ଆଜି ସଂଜବେଳେ ତା' ବିଷୟରେ ଖବର ଦେଇଗଲା । ଆପଣଙ୍କ ବିଷୟରେ ମତେ ବହୁତ କଥା ପଚାରିଲା – ମୁଁ ତ ଜାଣିନି ଆପଣ କୋଉଠୁ ରହୁଛନ୍ତି କି କ'ଣ କରୁଛନ୍ତି – ମୁଁ କେମିତି ତାକୁ କହିବି ? ମୁହଁଟା ତା'ର ଶୁଖିଗଲା । ଗଲାବେଳେ ଖାଲି ଏତିକି ଜଣେଇଦେଇ ଗଲା ଯେ ସେ ତା' ସାଂଗମାନଙ୍କ ସାଂଗେ ଆଜି ଫେରିଯାଉଛି ଏକସ୍‌ପ୍ରେସ୍‌ରେ ।'

'କୁଆଡ଼େ ?'

'କଲିକତା ।'

ବୁନୁ ହାତଘଡ଼ିକୁ ଅନେଇ ଦେଖିଲା – ଏକସ୍‌ପ୍ରେସ୍ ଆଉ ସାତମିନିଟ୍ ବାକି । ମଟରସାଇକେଲ ଛୁଟେଇଲା ଷ୍ଟେସନ ଆଡ଼କୁ ।

ଥାର୍ଡବେଲ୍ ହୋଇଗଲାଣି । କିନ୍ତୁ ଗାଡ଼ିଟା ଏପର୍ଯ୍ୟନ୍ତ ଛାଡ଼ିନି, ବୁନୁ ଦୌଡ଼ିଯାଇ ଛିଡ଼ାହେଲା ଗୋଟେ ସେକେଣ୍ଡ୍‌କ୍ଲାସ୍ ମହିଳା କମ୍ପାର୍ଟମେଣ୍ଟ ଆଗରେ । ସେ ଝିଅଟା ଝରକା ପାଖରେ ବାହାରକୁ ଅନେଇଛି କାହାକୁ ଅପେକ୍ଷା କରିବା ଭଂଗୀରେ ।

ବୁନୁ କହିଲା – 'ନମସ୍କାର ।'

ଝିଅଟା ହାତ ଉଠେଇଲାନି, ହସିଲା ନାହିଁ, କାନ୍ଦିଲାନି  କି କୌଣସି କଥା କହିଲାନି । ବରଂ ବୁହଁବୁଲେଇ ତା' ବାନ୍ଧବୀମାନଙ୍କ ସାଂଗରେ କଥାବାର୍ତ୍ତା କରିବାକୁ ଲାଗିଲା – ଯେମିତି କିଛି ଘଟିନି ।

ବୁନୁ ଅପମାନରେ ଜଳିଗଲା ଆଉ ମନେମନେ କହିଲା, 'ଆଃ ତମେ ମତେ ଯଦି ବଜାରି ବୋଲି ଗାଳିଦେଇଥାଆନ୍ତ ତେବେ ମତେ ଏତେ ଅପମାନ ହୋଇନଥାନ୍ତା ।' ବୁନୁ ରାଗିଯାଇ ଆକ୍ରମଣ କରିବା ମୁଡ୍ ନେଇ ଝରକା ପାଖକୁ ଲାଗିଆସିଲା । ଝିଅଟା ଝରକା ପାଖରୁ ଉଠିଯାଇ ଅନ୍ୟ ପାଖରେ ଯାଇ ବସିଲା ଅନ୍ଧାରକୁ ଅନାଇ । ଏ ପାଖରେ ପ୍ଲାଟଫର୍ମ । ସେ ପାଖରେ ଅନ୍ଧାର । ଗାଡ଼ିଟା ଛାଡ଼ିଲାଣି, ତଥାପି ଝିଅଟା ଅନାଉନି ।

ବୁନୁ ଚଟ୍‌କରି ପାଖ କମ୍ପାର୍ଟମେଣ୍ଟରେ ଚଢ଼ିଯାଇ ଆରପାଖକୁ ଓହ୍ଲେଇପଡ଼ିଲା । ଟ୍ରେନ୍ ସାଂଗରେ ଚାଲୁଚାଲୁ କହିଲା – 'ଆଜ୍ଞା ନମସ୍କାର – ପୁଣି ଦେଖାହେବ ।'

ତା'ର ଅନଭ୍ୟସ୍ତ ବଙ୍ଗଳାରେ ଏଇକଥା କେଇପଦ ସେ ଝିଅଟା ବୁଝିବା ପୂର୍ବରୁ ଟ୍ରେନ୍ ସ୍ପିଡ୍‌ଧରି ନେଇଥିଲା ।

ବୁନୁ ଦୌଡ଼ି ଦୌଡ଼ି ଫେରିଆସିଲା ତା' ମଟରସାଇକେଲ୍ ପାଖକୁ । ଗାଡ଼ିଟା ତରତରରେ ଷ୍ଟାର୍ଟ ହଉନି । ବୁନୁ ରାଗିଯାଇ ଦି' ଗୋଇଠା ମାରିଲା । । ତା'ର ଯେମିତି ସଂସାରର ପ୍ରତ୍ୟେକ ଜିନିଷ ପ୍ରତ୍ୟେକ ଲୋକ ଉପରେ ପ୍ରତିଶୋଧ ନେବାର ଅଛି । ବୁନୁ ଭାବିଚାଲିଲା - ' ସେ ଯଦି ମତେ ଷ୍ଟେସନ୍‌ରେ ଦେଖି ମୋ ସହିତ କଥାବାର୍ତ୍ତା ନକରିବାକୁ ଠିକ୍ କରିଥିଲା ତେବେ ସେ ମୋଚିଟୋକକୁ ମୋ ବିଷୟରେ ପଚାରୁଥିଲା କାହିଁକି ? ଆଉ ଆଜି ପୂରା ଛାଡ଼ିଚାଲିଯାଉଛି ବୋଲି ଖବରଦବା କ'ଣ ଦରକାର ଥିଲା ?'

ଆଃ, କି ସମୟାନୁବର୍ତ୍ତିତା - ବୁନୁର ମନେପଡ଼ିଲା - ନୀନୁ ସହିତ ପ୍ରେମ କଲାବେଳେ ଦିନେ ବି ସେ ଦେଖାକରିବାକୁ ବିଳମ୍ବ କରିନି । ନୀନୁ ଛ'ଟାବେଳେ ସିନେମା ହଲ୍ ସାମ୍ନାରେ ଅପେକ୍ଷା କରିବାକୁ କହିଛି ତ ବୁନୁ ଠିକ୍ ତିନି ମିନିଟ୍ ଆଗରୁ ସେଇ ଜାଗାରେ ଟହଲ ମାରିଛି । ଅଥଚ ନୀନୁ ଦିନେହେଲେ ଛ'ଟା କହି ଛ'ଟାବେଳେ ଆସିନି । ସେଇଥିପାଇଁ ବୁନୁ ଆଜି ଭଲ- ନୀନୁ ଖରାପ ।

ବୁନୁ ନିରୋଳା ରାସ୍ତାରେ ଗୀତ ଗାଇବାକୁ ଚେଷ୍ଟାକଲା । ଯା'ହେଉ ଜୀବନରେ ସେ କେବେ ଠକିବାକୁ ଚେଷ୍ଟାକରିନି - କିମ୍ବା ମିଛକଥା କହିନି । ସେ ସବୁବେଳେ ଭଲଥିଲା ଆଉ ଏବେ ବି ଭଲ ଅଛି - କେବଳ ତା' ଭାଗ୍ୟକୁ ଖରାପଲୋକ ଗୁଡ଼ା ମିଳୁଛନ୍ତି ।

ସାକ୍ଷୀଗୋପାଳ ଲେଭଲ୍ କ୍ରସିଂ ପାଖରେ ପହଂଚିଲାବେଳକୁ ଅନେକ ଆଗରୁ ଏକସ୍‌ପ୍ରେସ୍‌ଟା ଚାଲିଯାଇଛି । ବୁନୁ ଖୁବ୍ ଜୋର୍‌ରେ ଆକ୍‌ସିଲରେଟର ମୋଡ଼ି ମଟରସାଇକେଲ ଛୁଟେଇଦେଲା । ଦି'କଡ଼ରେ ଗଛଗୁଡ଼ାକ ଯେମିତି ତାକୁ ଡରିଯାଇ ବାଡ଼ ଛାଡ଼ିଦେଉଛନ୍ତି । ଏଇ ନିରୋଳା ରାସ୍ତାରେ ଦୁର୍ଘଟଣାରେ ପଡ଼ି ବୁନୁ ତା' ମରିବା କଥା ଚିନ୍ତା...ମୁହୂର୍ତ୍ତେ । କ'ଣ ଲାଭ ? ଏତେ ସ୍ପିଡ୍‌ରେ ସେ କାହିଁକି ଯାଉଥିଲା କିଏ ବୁଝିବ ? ମୃତ୍ୟୁ...ଗୋଟେ ପ୍ରଶ୍ନବାଚୀ ହୋଇ ରହିଯିବ ।

ବାଟରେ ଛୁଟି ଯାଉଯାଉ ବୁନୁ ମନତଳେ ଏଇ ଝିଅଟା ପାଇଁ ଗୋଟାଏ ଅପରିସୀମ ଦୁର୍ବଳତା ଚେଇଁଉଠିଲା । ହୁଏତ ଏ ଝିଅଟା କାହାକୁ ଭଲପାଇଛି । ହୁଏତ ସେଇଠି ଠକାମିରେ ପଡ଼ିଛି । ହୁଏତ ନିଜେ ଠକେଇଦେଇଛି । ତଥାପି ତା' ଆଖି ଦି'ଟା ଗୋଟାଏ ପବିତ୍ରତାର ସାଗର କୂଳରେ ବତିଘର ପରି ଜଳୁଛନ୍ତି । କେବଳ ମନ ତଳେ ନିଜେ ପବିତ୍ର ନହେଲେ ସେ ଆଖିକୁ ଦେଖି ତା' ପାଖକୁ ସହଜେ ଯାଇହେବ ନାହିଁ ।

ଭୁବନେଶ୍ୱରରେ ପହଂଚିଲାବେଳକୁ ଏକ୍‌ପ୍ରେସ୍ ଆସି ପହଂଚିଲା । ଆହୁରି ବି ତିନି

ମିନିଟ୍ ବାକି । ଷ୍ଟେସନ୍ ଷ୍ଟଲରେ କପେ ଚାହା ପିଇଲା । ଖଣ୍ଡେ ସିଗାରେଟ୍ ଟାଣିଲା ଆଉ ଭାବିବାକୁ ଲାଗିଲା । ପ୍ଲାଟ୍‌ଫର୍ମ ଭରା ଲୋକ । ତାଙ୍କ ଭିତରେ ପୁଣି ଅନେକ ଝିଅ ଅଥଚ ଆଜି ପ୍ରଥମକରି ବୁନୁ କାହିଁକି କାହାରି ମୁହଁକୁ ନୀନୁ ମୁହଁ ସହିତ ତୁଳନା କରିବାକୁ ବସିଲାନି ? ମନକୁ ଖୋଳିତାଡ଼ି ସେ ପଚାରିଲା, 'ଏଇ ନୀନୁ ପ୍ରତି ତା'ର ଘୃଣା ଯୋଗୁ ନା ଏଇ ବଙ୍ଗାଳୀ ଝିଅଟା ପ୍ରତି ତା'ର ହଠାତ୍ ଦୁର୍ବଳତା ଯୋଗୁ ?'

ଏଇକଥା ମନଭିତରେ ଆଲୋଚନା କରୁ କରୁ ଗାଡ଼ି ପଶିଆସିଲା ଷ୍ଟେସନ୍ ଭିତରକୁ । ଭିଡ଼ ଟପି ବୁନୁ ଆଗେଇଗଲା ସେଇ ଦ୍ୱିତୀୟ ଶ୍ରେଣୀ ମହିଳା ଡବା ଦିଗକୁ । ଝିଅଟା ଝରକା ଦେଇ ଅବିଶ୍ୱାସୀ ଆଖିରେ ଅନେଇଛି । ବୁନୁକୁ ଦେଖି ପ୍ରାୟ ଚମକିଉଠିଲା । ବଙ୍ଗଳାରେ ପଚାରିଲା, 'ଆପଣ କେମିତି ଆସିଲେ ? ମାନେ ମୁଁ ପଚାରୁଥିଲି ଆପଣ ବି କ'ଣ ଏଇ ଟ୍ରେନ୍‌ରେ କଲିକତା ଯାଉଛନ୍ତି ?' ଝିଅଟି ମୁହଁରେ ଯେମିତି ଗୋଟେ ଜିଣିବାର ଭଂଗୀ ।

ବୁନୁ ପୌରୁଷର ହସହସି କହିଲା - 'ନା, ତୁମକୁ ପୁରୀ ଷ୍ଟେସନ୍‌ରେ ଛାଡ଼ିଦେଇ ମୁଁ ମଟରସାଇକେଲରେ ଭୁବନେଶ୍ୱର ଚାଲିଆସିଲି ।'

'ମାନେ - ବେଶ ଜୋର୍‌ରେ ଆସିଥିବେ' - ଝିଅଟିର ଚେହେରାରେ ଆତଙ୍କ ।

ବୁନୁ ହସି ହସି କହିଲା - 'ହଁ, ଏକସ୍‌ପ୍ରେସ୍ ସାଂଗରେ ଯେତେବେଳେ ଉଡ଼ିଯିବାକୁ ପଡୁଛି ଏକସ୍‌ପ୍ରେସ୍‌ଠୁ ବେଶୀ ସ୍ପିଡ୍‌ରେ ଆସିବାକୁ ପଡ଼ିବ ତ !'

ଝିଅଟି ବୁନୁ ମୁହଁକୁ ଚାହିଁ କ'ଣ ଭାବୁଥିଲା । ଟିକିଏ ଅଧିକ ଆନ୍ତରିକତା ବଢ଼ିଥିଲେ ସେ ହୁଏତ ବୁନୁକୁ ଏତେ ଜୋର୍‌ରେ ମଟରସାଇକେଲ ନ ଚଳେଇବାକୁ ଅନୁରୋଧ କରିଥାନ୍ତା । ଝିଅମାନଙ୍କର ସାଧାରଣ ସ୍ନେହ ଗୋଟେ ରକ୍ଷିତାର ପ୍ରେମ ପରି ବେଶ୍ ଉଗ୍ର । ଝିଅଟି ପୁଣି ବଙ୍ଗଳାରେ ପଚାରିଲା - 'ଆପଣ କ'ଣ ଏଠାରେ ରୁହନ୍ତି ? (ସତେଯେମିତି ସେ କାହିବାକୁ ଚାହୁଁଥିଲା - ଆପଣ କ'ଣ ଏଇଠାରେ ରହିଯିବେ ?)

ବୁନୁ କହିଲା, 'ନା, ମୁଁ କଟକ ଯିବି - ପୁଣି କଟକ ଷ୍ଟେସନ୍‌ରେ ଦେଖା ।'

ଟ୍ରେନ୍ ହୁଇସିଲ୍ ଦେଲା । ବୁନୁ ହାତହଲାଇ ଟା ଟା କରି ଦଉଡ଼ିଚାଲିଲା ଷ୍ଟେସନ ବାହାକୁ ଯେଉଁଠି ତା' ମଟରସାଇକେଲ୍ ଥୁଆ ହୋଇଥିଲା । ଝିଅଟା ବୋକାଙ୍କପରି ଅନେଇଛି ।

ଭୁବନେଶ୍ୱରରୁ କଟକ ରାସ୍ତାଟା ଭାରି ଚଉଡ଼ା । ଆହା, ନରକକୁ ଯିବା ରାସ୍ତା ପରି ପ୍ରଶସ୍ତ ଓ ସୁନ୍ଦର । ପ୍ରକୃତରେ କଟକଟା ବୁନୁ ପାଇଁ ନରକ । ଏକ ମନୋଲୋଭା ଗୋଲାପ କିଆରି, ଯେଉଁ କିଆରି ଗୋଲାପର ପାଖୁଡ଼ା ବି ଛୁଇଁବାକୁ ତାକୁ ମନା । ବୁନୁ ଭାବିଲା, କଟକଟା ତା' ପାଇଁ ଅଶୁଭ । ଯେଉଁ ଝିଅଟା ପୁରୀରେ ତାକୁ ତା'ର ଦୁର୍ବଳତା ଦେଖେଇଛି -

ଟ୍ରେନ୍‌ରେ ବାଟରେ ଆସୁଆସୁ ହୁଏତ ମନେ ମନେ ଯେଉଁ ଝିଅ ତାକୁ ଭଲ ପାଇବସିଛି - ଭୁବନେଶ୍ୱର ଷ୍ଟେସନ୍‌ରେ ଯେଉଁ ଝିଅ ତା' ସହିତ ଟିକେ ଗପଛି, ସେ ଝିଅ ହୁଏତ କଟକ ଷ୍ଟେସନ୍‌ରେ ପହଂଚି ହଠାତ୍ ବଦଳିଯାଇପାରେ । ହୁଏତ ତାକୁ ଚିହ୍ନିପାରିନି, ଯେମିତି ମେଘର ଜ୍ୟାମିତି, ବରଂ ପୁରୀକୁ ଫେରିଯିବା ଉଚିତ । ପୁରୀ ହୋଟେଲ ରୁମ୍‌ରେ ତା'ର ସୁଟ୍‌କେଶ୍, ତା'ର ହ୍ୟାଣ୍ଡବ୍ୟାଗ୍ ରହିଯାଇଛି ।

...ବରଂ ଝିଅଟା ଖୋଜୁ ଝରକାଦେଇ ବୁନୁକୁ ଷ୍ଟେସନ୍ ସାରା । ସେ ଝିଅ ହଠାତ୍ ସନ୍ଦେହର ସମୁଦ୍ରରେ ଉବୁଟୁବୁ ହେଉ - ଭାବିନେଉ ହୁଏତ ବାଟରେ ଆକ୍‌ସିଡେଣ୍ଟ୍ ହୋଇଯାଇଛି ।

ଝିଅମାନେ ଟିକେ ଟିକେ କଥାରେ କ'ଣ ନାଇଁ କ'ଣ ଭାବିଯାଆନ୍ତି । କିନ୍ତୁ ବୁନୁ? ସେ ତ ଧୋକାବାଜ୍ ନୁହେଁ । ସେ ତ ଝିଅକୁ କଥାଦେଇ ଆସିଛି କଟକରେ ଦେଖାକରିବାକୁ ।

କଟକରେ ପହଁଚିଲାବେଳକୁ ଟ୍ରେନ୍ ଦୁଇତିନି ମିନିଟ୍ ହେବ ପହଂଚିଯାଇଛି । ବୁନୁ ଷ୍ଟେସନ୍ ଆଗରେ ମଟରସାଇକେଲ ରଖି ଦଉଡ଼ିଦଉଡ଼ି ଭିତରକୁ ଚାଲିଗଲା । ସତରେ ଝିଅଟା ଝରକା ପାଖରେ ଅପେକ୍ଷା କରିଥିଲା । ବୁନୁ ପହଂଚିଲା ମାତ୍ରେ ପଚାରିଲା - 'ତା' ପରେ କୋଉଠି ପୁଣି ଦେଖାହେବ ?'

ବୁନୁ ହସି ହସି ଉତ୍ତରଦେଲା - ନା, ମୁଁ ଏଇଠି ରହିଯିବି ।'

ଝିଅଟା ସାଲିସ୍ କରିପାରିଲାନି । ସେ ସବୁବେଳେ ଅନୁଭବ କରୁଥିଲା ଯେମିତି ପ୍ରତି ଷ୍ଟେସନ୍‌ରେ ଯଦି ଏଇପରି ଦେଖାହୁଅନ୍ତା - ହାଓଡ଼ା ଷ୍ଟେସନ୍ ପର୍ଯ୍ୟନ୍ତ - ତେବେ କେତେ ଭଲ ହୁଅନ୍ତା ?

କିନ୍ତୁ ପୁଅମାନଙ୍କର ଅଲଗା କଥା । ସେମାନେ ସିଧା ବାଟରେ ଯାଉ ଯାଉ ହଠାତ୍ ଇଚ୍ଛା କରନ୍ତି - 'କେଉଁଠି ଗୋଟେ ରହିଗଲେ କେମିତି ହୁଅନ୍ତା ! କିମ୍ବା ବାଟଭାଂଗି ଆଉ ଗୋଟେ ବାଟରେ ଗଲେ କେମିତି ହୁଅନ୍ତା !'

ଏଥର ଝିଅଟାର ଆଖି ଛଳଛଳ ହୋଇଗଲା । ବୁନୁ ଚଂଚଳ ଚଂଚଳ ପକେଟ୍‌ରୁ ସିଗାରେଟ୍ ପ୍ୟାକେଟ୍‌ଟା ବାହାରକରି ସେଥିରେ ଥିବା ଶେଷ ସିଗାରେଟ୍‌ଟା ମୁହଁରେ ଧରେଇଲା ଓ ସିଗାରେଟ୍ ଖୋଳଟାକୁ ଦୁଇ ଖଣ୍ଡ କରି ଚିରିଦେଇ ଖଣ୍ଡକର ପଛପଟେ ନିଜ ନାଁ ଆଉ ଠିକଣା ଲେଖି ସେ ଝିଅଆଡ଼କୁ ବଢ଼େଇଦେଲା ।

ଝିଅଟା ପଚାରିଲା ନିର୍ଲିପ୍ତ କଣ୍ଠରେ - 'ଏଇଟା କ'ଣ ?'

'ମୋ ଠିକଣା' - ବୁନୁ କହିଲା । କିନ୍ତୁ ବୁନୁର ଉତ୍ସାହ ହଠାତ୍ ଦବିଗଲା ଝିଅଟାର ପରବର୍ତ୍ତୀ ସଂଳାପ ଶୁଣି । ସେ କହିଲା - 'କ'ଣ ହେବ ?'

ବୁନୁ ଉତ୍ତର ଦେଇପାରିଲାନି, ରାଗିଗଲା ମନେମନେ ସମଗ୍ର ଝିଅଜାତି ଉପରେ। ଝିଅମାନେ ସବୁ ଜାଣି ମଧ୍ୟ ପୁଅଙ୍କ ମୁହଁରୁ ସବୁ ଶୁଣିବାକୁ ଚାହାନ୍ତି। କହିବାକୁ ଗଲେ ସେମାନେ ନିଜେ ସଭ୍ୟ ରହି ପୁଅଙ୍କ ଅସଭ୍ୟତାକୁ ସ୍ୱାଗତ କରନ୍ତି।

ବୁନୁ ସେ ଝିଅଟା ଆଡ଼କୁ ଆଉ ଚାହିଁଲା ନାହିଁ। ପାଖରେ ଛିଡ଼ା ହେଇ ଦଶମିନିଟ୍ ବିତିଗଲା । ଗାଡ଼ିଟା ଛାଡ଼ିବ ଛାଡ଼ିବ ହେଉଛି - ବୁନୁ ସେ ଝିଅକୁ ଶେଷଥର ଦେଖିବାକୁ ମୁହଁ ବୁଲାଇଲା। ଆଶ୍ଚର୍ଯ୍ୟ, ଝିଅଟା କାନ୍ଦୁଚି କଇଁ କଇଁ ହୋଇ ଆଉ ହାତରେ ସେଇ ଠିକଣା ଲେଖାଥିବା ସିଗାରେଟ୍ ଖୋଳକୁ ଧୀରେଧୀରେ ଟିକିଟିକି କରି ଚିରିଦେଉଚି। ବୁନୁ ବୁଝିପାରିଲାନି। ତାକୁ ଲାଗୁଥିଲା, ସତେଯେମିତି କୌଣସି ଆତ୍ମୀୟର ମୃତ୍ୟୁର ଏକାଦଶାହ ନିମନ୍ତ୍ରଣ ପତ୍ର ସଜଳ ଆଖିରେ ଚିରାଯାଉଛି।

ଗାଡ଼ିଟା ଚାଲିବାକୁ ଲାଗିଲା। ଝିଅଟା ସହିତ ଆଉ କ'ଣ କଥାବାର୍ତ୍ତା ହେବାର ଥିଲା ? ସମ୍ପର୍କରେ ଆଉ କ'ଣ ବାକି ରହିଗଲା ? ହାଏ, ଝିଅଟା ଯଦି ତା ନାଁ ଓ ଠିକଣାକୁ ଚିରି ନ ଦେଇ କେବଳ ସେଇ ଝରକା ପାଖରେ ବୁନୁକୁ ଥରେ 'ବଜାରି' ବୋଲି ଶୋଧି ଦେଇଥାନ୍ତା ତେବେ ବୋଧହୁଏ ବୁନୁର ମନ ପୂରିଯାଇଥାନ୍ତା। ଆଉ ସେ ସନ୍ତୁଷ୍ଟ ହୋଇ ଫେରିଆସିଥାନ୍ତା କହି କହି 'ସବୁଝିଅ ଏକ ରକମର'। କିନ୍ତୁ ଝିଅରେ ଝିଅରେ ଏତେ ଫରକ କ'ଣ ? ନୀନୁ ଆଉ ଶ୍ରୀଲତା ମଧ୍ୟରେ ବୋଧହୁଏ ଅନେକ ଫରକ ଥିଲା। ବୋଧହୁଏ ଶ୍ରୀଲତା ହାତରେ ଚିଠିଦେବା ତାର ଗୋଟେ ଭୁଲଥିଲା। ବୋଧହୁଏ ନୀନୁ ଚାହୁଁଥିଲା, ଯେମିତି ଚାଲୁଚି ସେମିତି ଚାଲୁ - ମଝିରେ କେହି ନରହୁ। ବୋଧହୁଏ ଶ୍ରୀଲତା କିଛି ଗଡ଼ବଡ଼ କରିଛି।

ବୁନୁ ଆଖି ଆଗରୁ ଅନେକ ଦୂରକୁ ଟ୍ରେନ୍‌ଟା ଚାଲିଗଲାଣି।

ବୁନୁ ମୁହଁଫେରେଇ ବାହାରକୁ ଆସିଲା - ଏ କିଏ ? ଏ ତ ନୀନୁ। ଓଃ, ଅନେକ ଦିନ ପରେ। ଅନେକ ଦିନ ପରେ। ନୀନୁ ସାମ୍ନାକୁ ଯିବ କି ? ନାଁ, ତା ସହିତ ମୋର ସମ୍ପର୍କ କିଛି ନାହିଁ। ସେ କେବଳ 'ବଜାରି' କହି ଯେଉଁ ସମ୍ପର୍କ କାଟିଦେଇଛି ତାକୁ ଆଉ ଯୋଡ଼ି ଲାଭ ନାହିଁ। ସମ୍ପର୍କ କାଟିଲାବେଳେ ସେ ତ କାନ୍ଦି କାନ୍ଦି ପୁରୁଣା ପ୍ରେମପତ୍ରଗୁଡ଼ା ଚିରିପାରିଥାନ୍ତା ଏଇ ଅଣଓଡ଼ିଆ ଝିଅଟା ପରି।

ନୀନୁ ହୁଏତ ସେ ଝିଅଟାକୁ ଦେଖିଛି ଓ ବୁନୁ ସାମ୍ନାସାମ୍ନି ହେଲେ ହୁଏତ ପଚାରିପାରେ। ନାଃ-ପଚାରିଲା ପରି ତା'ର ସାହସ ନାହିଁ।

ବୁନୁ ମଟରସାଇକେଲ୍ ନେଇ କଟକ ଘରକୁ ମୁହାଁଇଲା। ଆଉ ପୁରୀ ଯିବାକୁ ଇଚ୍ଛା ହେଲା ନାହିଁ। ଆଖି ଆଗରେ ଭାସୁଥିଲା ଯୋଡ଼ାଏ ମୁହଁ। କେତେବେଳେ ଛଳଛଳ ଆଖିରେ ସେଇ ସୁନ୍ଦରୀ ବଙ୍ଗାଳୀ ଝିଅଟି - କେତେବେଳେ ରାଗରେ ଲାଲ ନୀନୁର ମୁହଁ। ପୁଣି

କେତେବେଳେ ଛଳଛଳ ଆଖିରେ ନୀନୁ - କେତେବେଳେ ରାଗରେ ଲାଲ୍ ସେ ବଙ୍ଗାଳୀ ଝିଅ ।

ବୁନୁ ଖଟରେ ଶୋଇପଡ଼ିଲା । ହଠାତ୍ ତା' ନିଜ କୋଠରିଟା ତାକୁ ବଡ଼ ବିରକ୍ତିକର ଲାଗିଲା । କେବଳ ଗୋଟାଏ ଝିଅର ପ୍ରେମ ତାକୁ ଏଇ କୋଠରି ଭିତରେ ବନ୍ଦ୍ କରିରଖିଛି । କୋଠରି ଭିତରେ ବନ୍ଦ୍ ହୋଇ ରହିଲେ ସେଇ ଯନ୍ତ୍ରଣା, ଯାହାର ଅନ୍ୟ ନାମ ପ୍ରେମ ଓ ଟ୍ରେନ୍ ସାଂଗେ ମଟରସାଇକେଲ ନେଇ ଦଉଡ଼ିଲେ ବି ସେଇ ଯନ୍ତ୍ରଣା ଯାହାର ନାମ ପ୍ରେମ । ସବୁଗୁଡ଼ା ଅସଫଳତାର ସାହାରା ମରୁ । କେମିତି କେଜାଣି ଏ ପ୍ରେମକୁ ପୁଂଜିକରି କବିଗୁଡ଼ା କବିତା ଲେଖନ୍ତି !

ନା, ବୁନୁ କବି ହୋଇପାରିବନି - ସେ ଏ ରୁମ୍ ଛାଡ଼ିଦେବ । କାଲି ସେ ଏ ଘରଟା ଛାଡ଼ିଦେଇ ସାଂଗେ ସାଂଗେ ଗୋଟାଏ ହୋଟେଲକୁ ଚାଲିଯିବ ।

ଆଳିମାଳିକା ଅନେକ ଜିନିଷ ସଜାଡ଼ିବାକୁ ଲାଗିଲା ସାରାରାତି । ଅନେକ ଅଦରକାରୀ ଜିନିଷ ଫୋପାଡ଼ିଦେଲା । ଅନେକ ଜିନିଷକୁ ଟ୍ରଙ୍କ ଭିତରେ ଯତ୍ନରେ ରଖିଲା । ଜିନିଷ ସଜାଡ଼ି ସାରିଲାବେଳକୁ ରାତିପାହିଯାଇଥିଲା । କ୍ଳାନ୍ତହୋଇ ସେ ଖଟ ଉପରେ ଶୋଇପଡ଼ିଲା । କାହାର କଅଁଳ ହାତଛୁଆଁରେ ତା' ନିଦ ଭାଂଗିଗଲା । ନୀନୁର ସାନଭାଇ ଗୋଟେ ନୀଳରଙ୍ଗର ଲଫାପା ଧରି ଛିଡାହୋଇଛି । ବୁନୁ ଖୋଲି ପଢ଼ିଲା - 'ଅନେକ ଦିନ ପରେ ତମକୁ ଦେଖିଲି । ତମେ କିନ୍ତୁ ମତେ ଦେଖିପାରିଲନି । ହେଇଥିବ ତମେ ମତେ ଦେଖି ଆଭଏଡ୍ କରିଛ । ମୁଁ କାଲି ସାରାରାତି ଶୋଇନି । ରାତି ଦୁଇଟାବେଳେ ପ୍ରାୟ ତମ ଘରକୁ ଯାଇଥିଲି । ଲାଇଟ୍ ଲଗେଇ ତମେ କ'ଣ କାମ କରୁଥିଲ । ଝରକା ପାଖକୁ ଯାଇ ଦେଖିଲି, ସେ ଭଂଗା ରେଲିଂଟା ମଜଭୁତ୍ କରି ଲଗାହୋଇଛି । ସେଟା ବୋଧହୁଏ ମରାମତି କରେଇଦେଇଛ ନୁହେଁ ? ମୋର ଗୋଟେ କଥା ପଚାରିବାର ଅଛି - ଆମ ସମ୍ପର୍କ ଯାହା ଥିଲା, ସେୟା କ'ଣ ସବୁଦିନ ସେୟା ହିଁ ହୋଇରହିବ ?'

ବୁନୁ ଚିଠିଟା ମୋଡ଼ିମାଡ଼ି ଖଟ ତଳକୁ ପକେଇଦେଲା । ମନେ ମନେ କହିଲା, 'ହଁ, ଯାହା ଥିଲା ସମ୍ପର୍କ ସେୟା - ମୋର ଯାହା କରିବାର କଥା ମୁଁ ଠିକ୍ ସେୟା ହିଁ କରିଚି । କହିସାରି ତା'ର ମନେପଡ଼ିଲା ପ୍ରଥମେ ତା'ର କ'ଣ କରିବାର ଥିଲା । ଓଃ ! ଘର ବଦଳେଇବା କଥା ।

ବୁନୁ ଅଗଣା ଟପି କୋଠରିକୁ ଗଲା । ସେଠି ଘରର ମାଲିକ ରୁହନ୍ତି । ବୁନୁ ତା' ରୁମ୍‌ର ଭଡ଼ାବାବଦକୁ ସବୁ ଟଙ୍କା ପରିଶୋଧ କରିଦେଇ ଫେରିଆସିଲା । ରିକ୍‌ସା ଡାକି ସବୁ ଜିନିଷ ଗୋଟି ଗୋଟି କରି ବୋଝେଇକଲା ।

## ବିଚରା

ସବୁ ଜିନିଷ ରଖିବା ପରେ ପୁଣିଥରେ କୋଠରିକୁ ଆସିଲା – ଦେଖିବା ପାଇଁ କିଛି ଜିନିଷ ଛାଡ଼ିଦେଇଛି କି ନାହିଁ । ଖଟତଳେ ପଡ଼ିଥିଲା ଖଣ୍ଡେ ଚିଠି । ନୀଳ ଚିଠି । ନୀଳ, ଯାହା ଦୁଃଖର ଚିହ୍ନ । ଗୋଟିଏ ଅବିଶ୍ୱାସୀ ଆକାଶର ଖଣ୍ଡେ ଛିଡ଼ିପଡ଼ିଥିବା ଟୁକୁରା – ଆଉ ଗୋଟେ କଣରେ ନୀନୁର ସେଇ କଳାରଙ୍ଗର ସ୍କର୍ଟ । ସେଇଟା ନେଇ କୋଉଠି ରଖିବ ? କାଲି ରାତିସାରା ଏଇ ସ୍କର୍ଟଟା ଧରି ସେ ଭବୁଥିଲା, କ'ଣ କରିବ ?

ବର୍ତ୍ତମାନ ବୁନୁ ସଂଗେ ସଂଗେ ସିଦ୍ଧାନ୍ତ କରିନେଲା । ସ୍କର୍ଟଟାକୁ ମଝିରେ ଚିରିଦେଇ, ପାଖ ଝରକାରେ ପରଦା କରି ଟଙ୍ଗେଇଦେଲା । ହାତମାରି ଦେଖିଲା, ରେଲିଂଟା ମଜବୁତ୍ ଅଛି ନା ନାହିଁ । ତା'ପରେ ଚାଲିଆସିଲା ରିକ୍ସା ପାଖକୁ ।

– 'ଏ ରିକ୍‌ସା, ଚଲ...'

– 'କୋଉଠିକି ?'

– 'ବକ୍ସିବଜାର ।'

ଆରେ, ଆଶ୍ଚର୍ଯ୍ୟ – ଏ ତ ବକ୍ସିବଜାର ! ତେବେ ବୁନୁ କ'ଣ ସ୍ୱପ୍ନରେ ଭାବୁଥିଲା ! ତେବେ କ'ଣ ନୀଳ ଲଫାପା ମିଛ ! ତେବେ କ'ଣ ସ୍କର୍ଟଟା ପର୍ଦ୍ଦା କରିବା ମିଛ ! ତେବେ କ'ଣ ଘର ବଦଳେଇବା କଥା ମିଛ ? ତେବେ କ'ଣ ପୁରୀରୁ ମଟର ସାଇକେଲରେ ଆସିବା ମିଛ ? ତେବେ କ'ଣ...ତେବେ କ'ଣ...ତେବେ କ'ଣ...

ବୁନୁ ଆଉ କ'ଣ କରୁଥିଲା ?

ବିଚରା ସ୍ୱପ୍ନରେ ଚାଲୁଥିଲା...

ବିଚରା...

# ନଗ୍ନ ମୋନାଲିସା

ଶ୍ରୀମତୀ ମୋନାଲିସା ପଟ୍ଟନାୟକ ହସି ହସି କହିଲେ, 'ମୁଁ ମୋନାଲିସା ନୁହେଁ କି ଆପଣ ଡାଭିନ୍‌ସି ନୁହନ୍ତି ।'

ବହୁତ ଅର୍ଥ ଏ ଉକ୍ତିର । ପ୍ରଚୁର ଗବେଷଣା ଦରକାର । ମୋନାଲିସା ଡାଭିନ୍‌ସିଙ୍କ ଆଗରେ ବସିଥିଲାବେଳେ ଡାଭିନ୍‌ସିଙ୍କୁ ଦେଖୁଥିଲେ ନା ଆଉ କାହାକୁ ଦେଖୁଥିଲେ ? ମୋନାଲିସା ଡାଭିନ୍‌ସିଙ୍କୁ ପ୍ରେମ କରୁଥିଲେ ନା କରୁନଥିଲେ ? ଡାଭିନ୍‌ସି ସେଇ ରହସ୍ୟମୟ ହସ ଟିକକ ଫୁଟେଇବା ପାଇଁ କି ଉପାୟ କରିଥିଲେ ? ସବୁଠୁ ବଡ଼ ପ୍ରଶ୍ନ ହେଉଛି ସେମାନଙ୍କ ମଧ୍ୟରେ ଏକ ସ୍ୱର୍ଗୀୟ ପ୍ରେମ ଥିଲା ନା ନାହିଁ ?

ଆଉ ଶ୍ରୀମତୀ ପଟ୍ଟନାୟକ ସାତଦିନ ଧୈର୍ଯ୍ୟ ଧରି ସିଟିଂ ଦେଲାପରେ କାହିଁକି ଏମିତି ଗୋଟେ କଥା କହିଲେ ?

ମୁଁ ବର୍ତ୍ତମାନ ଏଇ କଥାଟାର ଅର୍ଥ ଖୋଜିବି ନା ମୋନାଲିସାର ପ୍ରତିମୂର୍ତ୍ତି ଶେଷ କରିବି ? ମୁଁ ନୀରବ ହୋଇ ବସିଲି । ଆଖିଆଗରେ ମୋନାଲିସା । ଏକ ଈଷତ୍ ଗୋଲାପୀ ବନାରସୀ ଶାଢ଼ିରେ ଆବୃତ ଏକ ମଖମଲି ଦେହ । ମୋ' ଠାରୁ ଅନେକ ଦୂରରେ ବସିଛନ୍ତି । ଦେହର ଲୋମ ମଧ୍ୟ ମତେ ଦିଶୁନି । ତାଙ୍କର ଦୃଷ୍ଟି କିନ୍ତୁ ମୋ ଉପରେ । ମୁଁ କେବଳ ତାଙ୍କ ଆଖିଦୁଇଟିକୁ ଛାଡ଼ି ଆଉ ସମସ୍ତ ଅଂଶକୁ ଅନାଇବାକୁ ଠିକ୍ କରିନେଇଛି । ପ୍ରଥମଦିନ ଆଖିକୁ ଚାହିଁଥିଲି । ସେ ଦୃଷ୍ଟିରେ ଏତେ ଲାଳସା ଯେ ମୋ ଜୀବନ ଯେପରି ଏକ ମରୁନଦୀ ହୋଇଯିବାକୁ ବସିଥିଲା । ତେଣୁ ସେହିଦିନଠାରୁ ଠିକ୍‌କରିଛି ଆଉ ମୋନାଲିସାଙ୍କ ଆଖିକୁ ଅନେଇବି ନାହିଁ ।

ମୋନାଲିସା ଯେ କୌଣସି ଶିଳ୍ପୀ ପାଇଁ ଏକ ଚମତ୍କାର ମଡେଲ । ବେଶୀକଥା କୁହନ୍ତି ନାହିଁ । ବେଶୀ ଅନ୍ୟମନସ୍କ ହୁଅନ୍ତି ନାହିଁ । ବେଶୀ ଅସ୍ତବ୍ୟସ୍ତ ମଧ୍ୟ ହୁଅନ୍ତି ନାହିଁ । ସୁନାପିଲାଟି ପରି ଘଣ୍ଟାଘଣ୍ଟା ବସିପାରନ୍ତି । ମୁଁ ତାଙ୍କୁ ମନେକରିଥିଲି ଜଣେ ପୋଖତ ମଡ଼େଲ । ତେଣୁ ଦ୍ୱିତୀୟ ଦିନ ମୁଁ ତାଙ୍କୁ ପଚାରିଥିଲି, 'ଆପଣ କେବେ ଆଗରୁ କୌଣସି ଶିଳ୍ପୀ ଆଗରେ ମଡ଼େଲ ହୋଇ ବସିଥିଲେ ?'

'କାହିଁକି ?' ସେ ଗମ୍ଭୀର ହୋଇ ପ୍ରଶ୍ନକଲେ ।

'ନା, ମାନେ – ଆପଣ ମୋ ପରି ଆଉ କୌଣସି ଶିଳ୍ପୀକୁ ଆପଣଙ୍କ ପୋଟ୍ରେଟ୍ କରିବାକୁ ନିଯୁକ୍ତି ଦେଇଥିଲେ କି ?'

'ଏକଥା ପଚାରୁଛନ୍ତି କାହିଁକି ?'

'ଆପଣଙ୍କ ଅସମ୍ଭବ ଧୈର୍ଯ୍ୟ ଦେଖି ।'

'ନା, ମୁଁ ଆଗରୁ କେବେ ବସିନି । ମିଷ୍ଟର ପଟ୍ଟନାୟକ ମୋ ଜୀବନରେ ପ୍ରଥମ ପୁରୁଷ ଓ ଆପଣ ମୋ ଜୀବନର ପ୍ରଥମ ଶିଳ୍ପୀ ।'

'ଏହାପରେ ଆପଣ ଆଉ କେଉଁ ଶିଳ୍ପୀ ଆଗରେ ହୁଏତ ବସିବେନି । ବଡ଼ ବିରକ୍ତିକର ଲାଗିଥିବ ନିଶ୍ଚୟ ।'

'ମତେ ବିରକ୍ତିକର ଲାଗୁନି । ଆପଣ ମତେ ଦେଖି ମୋ ମୂର୍ତ୍ତି ଗଢୁଛନ୍ତି । ମୁଁ ଆପଣଙ୍କ କାମ କରୁଛି ।'

ମୁଁ ଅଧିକା କଥାବାର୍ତ୍ତା କରି ସମୟ ନଷ୍ଟ କରିବାକୁ ଚାହିଁଲିନି ।

ମୋନାଲିସା ପଟ୍ଟନାୟକ ମୋତେ ବ୍ୟତିବ୍ୟସ୍ତ କରିଦେଲେଣି ଗତ ସାତଦିନ ହେବ । ଏତେ ସୁନ୍ଦରୀ ମଡେଲ ମୁଁ କେବେ ଆଗରେ ବସେଇ ନଥିଲି । ତା' ସଂଗେ ଏକଥା ମଧ୍ୟ ସତ୍ୟ ଯେ ଏତେ ବୋରିଂ ମହିଳା ମଧ୍ୟ ମୋ ଜୀବନରେ ଦେଖାଦେଇନଥିଲେ ।

ମୋର ଅଧିକାଂଶ ମଡ଼େଲ ହେଉଛନ୍ତି ଆଦିବାସୀ ସୁନ୍ଦରୀ – ଯେଉଁମାନେ ସବୁଠୁ ଅଧୈର୍ଯ୍ୟ । ମୁଁ ଯେ କଳା ସୃଷ୍ଟି କଲି ସେଇଟା ତାଙ୍କ ପାଇଁ କିଛି ଗୋଟେ ବଡ଼ ଘଟଣା ନୁହେଁ । ସେମାନେ ଅଳ୍ପକେ ବ୍ୟତିବ୍ୟସ୍ତ ହୋଇପଡ଼ନ୍ତି । ମତେ ଯାଇ ପୁଣି ତାଙ୍କୁ ବସେଇବାକୁ ପଡ଼େ । ତାଙ୍କ ପାଖରୁ ମୁକ୍ତି ଆଶା କରିବା ମୂର୍ଖତା । ତେଣୁ ମୁଁ ସେମାନଙ୍କ ମୁଖର Expression ପ୍ରତି କେବେ ସଜାଗ ହୋଇନି । ମୁଁ ଚିତ୍ର କରିଛି ସେମାନଙ୍କର ପବିତ୍ର ସ୍ୱାସ୍ଥ୍ୟକୁ – ଅଧିକାଂଶ କେବଳ ନଗ୍ନଚିତ୍ର ।

ସେମାନେ ମୋ ଘରକୁ ଆସିଛନ୍ତି । ମୋ ପାଖରୁ ପଇସା ନେଇଛନ୍ତି ଓ କେବଳ ପଇସା ନେଇ ଫେରିଛନ୍ତି ବୋଲି ଆଶ୍ଚର୍ଯ୍ୟ ହୋଇଛନ୍ତି । କାରଣ ସହର ଭିତରକୁ ସେମାନେ ଯେତେବେଳେ କୌଣସି ଦଲାଲ ଦ୍ୱାରା ଡକାହୋଇ ଆସନ୍ତି ତାଙ୍କୁ ମୁହଁରେ କୁହାନଗଲେ ମଧ୍ୟ ସେମାନେ ବେଶ୍ ଜାଣିଥାଆନ୍ତି ଯେ ସେମାନେ ବର୍ତ୍ତମାନ ଦେହ ବିକ୍ରି କରିବାକୁ ଯାଉଛନ୍ତି ।

ତେଣୁ ପ୍ରଥମେ ପ୍ରଥମେ କେବଳ ନଗ୍ନ ହୋଇ ମୋ ପାଖରେ ବସି ବସି ପଇସା ପାଇବାକୁ ମତେ ସେମାନେ ଗୋଟେ ପାଗଳ ବୋଲି ଗ୍ରହଣ କରି ନେଇଥିଲେ । ତା' ପରେ

ମୋ ଦଲାଲ୍ ଆସି ମତେ ଜଣାଇଲା ଯେ ସେମାନେ ମୋ ପାଖକୁ ଆସିବାକୁ ଆଦୌ ରାଜି ହେଉନାହାନ୍ତି । କାରଣ ମୁଁ ପୁରୁଷ ନୁହେଁ ।

ତା'ପରେ ମୁଁ ବାଧହୋଇଛି ପ୍ରମାଣ କରିବାକୁ ଯେ ମୁଁ ପୁରୁଷ, ତା'ପରେ ସେମାନେ ଖୁସି – ମୁଁ ବି ଖୁସି ।

କିନ୍ତୁ ଆଖି ଆଗରେ ଏକ ଶୁଭ୍ରକୋମଳ ନାରୀ – ବୟସ ସମ୍ଭବତଃ ମୋରି ପାଖାପାଖି – କିନ୍ତୁ ଦିଶୁଛନ୍ତି ମୋଠୁ ଅନେକ ସାନ । ଏ ନାରୀ କିନ୍ତୁ ମୋଠାରୁ ପଇସା ନେଉନାହିଁ ବରଂ ଏ ନାରୀ ମତେ ପଇସା ଦେଇ ଡକେଇଛନ୍ତି ।

ଆଦିବାସୀ ନାରୀମାନେ ନଗ୍ନହୋଇ ଛିଡ଼ା ହୋଇଚନ୍ତି – ଏ ନାରୀ ସମ୍ପୂର୍ଣ୍ଣ ବସ୍ତ୍ରାବୃତ୍ତା । ସେମାନେ ଚଂଚଳ, ଯେମିତି ପାହାଡ଼ିଝରଣା । ଏ କିନ୍ତୁ ଶାନ୍ତସୁଶୀଳ ସମତଳ ନଦୀ । ସେମାନେ ବିଳମ୍ବ ହେଲେ ତରତର ହୁଅନ୍ତି । କିନ୍ତୁ ଏ ନାରୀ ପାଖରେ ବିଳମ୍ବ ହେଲେ ମୁଁ ପଳେଇ ଆସିବାକୁ ତରତର ହୁଏ । ସେମାନଙ୍କୁ କେଉଁ ଭଂଗୀରେ ବସିବାକୁ ହେବ ତାଂକ ଦେହଧରି ଶିଖେଇବାକୁ ପଡ଼େ । ଏ ନାରୀ ଯେଉଁପରି ବସିଛନ୍ତି, ତାଙ୍କୁ ଛୁଇଁବା ତ ଦୂରର କଥା, ତାଙ୍କ ପଣତକୁ ଟିକେ ସଜାଡ଼ିଦେବାକୁ ଅନୁମତି ଦେବେନାହିଁ । ସେ କହିଲେ –

'ଗଳ୍ପ କରନ୍ତୁ । ଗଳ୍ପ କରି କ'ଣ କାମ କରିହୁଏନ ?' ମୁଁ କହିଲି, ' ନା, ଗଳ୍ପ କରିବାରେ ଆପତ୍ତି ନାହିଁ । କିନ୍ତୁ କେଉଁ ବିଷୟରେ ?'

ସେ – 'କାହିଁ ଆପଣଙ୍କ ସଂସାର ବିଷୟରେ ଗପିବା ।'

ମୁଁ – 'ମୋର ସଂସାର ନାହିଁ । ବାହା ହୋଇନି । ବାହା ମଧ୍ୟ ହେବିନି ।'

ସେ – 'ବାହା ହେବେନି ! ତେବେ ଦୁନିଆର ଗୋଟାଏ ଅନୁଭୂତିକୁ ଏଡେଇଯିବେ – ଶିଳ୍ପୀ ହେବେ କେମିତି ?'

ମୁଁ – 'ମଣିଷର କ'ଣ ସବୁ ଅନୁଭୂତି ନିଜ ରୋଜଗାର ? ଅନ୍ୟର ଅନୁଭୂତିକୁ ତ ପୁଣି କରଜ କରିବାକୁ ପଡ଼େ ?'

ସେ – 'ବେଶ୍ ତେବେ ତାହାହିଁ ହେଉ । ଆପଣଙ୍କ ଅବିବାହିତ ଜୀବନର ଅନୁଭୂତିକୁ କିଛି ମୁଁ ଅର୍ଜନ କରେ । କୁହନ୍ତୁ – ଆପଣଙ୍କୁ କେବେ ଏକା ଏକା ଲାଗେନି ?'

ମୁଁ – ମତେ ଏକା ରହିବାକୁ ଭଲ ଲାଗେ । କେବଳ ମଡେଲ୍ ନେଇ ଆଙ୍କିବାବେଳ ଛଡ଼ା ।'

ସେ – 'ତା ମାନେ ଆପଣଙ୍କ ଜୀବନରେ ନାରୀ କେହି ନାହାନ୍ତି ?'

ମୁଁ – 'ବହୁ ନାରୀ ଅଛନ୍ତି – କିନ୍ତୁ ସେମାନେ ମୋ ଜୀବନର କେହି ନୁହନ୍ତି – ଦୁନିଆର ମୁଁ କେବଳ ଦୃଶ୍ୟ ବଦଳେଇଛି – ରଂଗ ବଦଳେଇଛି – ଫ୍ରେମିଂ ବଦଳେଇଛି ।'

ସେ – 'ତା'ହେଲେ ଚରିତ୍ର କହିଲେ ଆପଣ କ'ଣ ବୁଝନ୍ତି ?'

ମୁଁ – 'କର୍ତ୍ତବ୍ୟ ।'

ସେ – 'ଯଦି ଦରକାର ପଡ଼େ କାହାକୁ ଦିନକ ପାଇଁ ଭଲ ପାଇବାକୁ କେବଳ କର୍ତ୍ତବ୍ୟ ଖାତିରରେ ଆପଣ ତାକୁ ଭଲପାଇ ପାରିବେ ?'

ମୁଁ – ' ପାରିବି କ'ଣ – ପାରୁଛି । ତା' ମୋର ନିତିଦିନର କାମ ।'

ସେ – 'କେମିତି କୁହନ୍ତୁ ।'

ମୁଁ ଆସନ୍ତାକାଲି ପାଇଁ କଥାଟା ରଖିଦେଇ ଚାଲିଆସିଲି ମୋ' ରୁମ୍‌କୁ – ମୋ ରୁମ୍ ମୋ ଶୋଇବା ଘର – ମୋ ଷ୍ଟୁଡ଼ିଓ – ମୋ ପ୍ରେମ କରିବାର ସ୍ଥାନ – ମୋ ଧୋକ୍କା ଦେବାର ସ୍ଥାନ ।

ମୋ ଦଲାଲ୍ ଆସି ଅନେକବେଳୁ ବସିଛି । ମୁଁ ଏ ସହରକୁ ଆସିବା ଦିନ ତା'ର ରୋଜଗାରର ଅନ୍ୟାନ୍ୟ ପନ୍ଥାସବୁ ବନ୍ଦ୍ ହୋଇଯାଇଛି । ଅଧିକାଂଶ ସମୟ ସେ ମୋ ଘରେ ରହେ । ମୁଁ ଯେବେ ଲ୍ୟାଣ୍ଡସ୍କେପ୍ ଆଙ୍କିବାକୁ ପାଖଆଖ ବନପର୍ବତକୁ ଯାଏ, ସେତେବେଳେ ସେ ମୋ କ୍ୟାନ୍‌ଭାସ୍ ଷ୍ଟାଣ୍ଡ୍ ଓ ରଂଗ ପ୍ରଭୃତି ଧରି ପଛେ ପଛେ ଚାଲେ । ମୋର ଯେତେବେଳେ ଯେଉଁ ମଡ଼େଲ ଦରକାର ହୁଏ ତତ୍‌କ୍ଷଣାତ୍ ଆଣି ଯୋଗାଇ ଦେଇଯାଏ ।

ଆଜି ତା' ମୁହଁରେ ସମ୍ଭାଷଣର ହସ । ଅର୍ଥାତ୍ ଆଜି ସେ ଗୋଟେ ଆଦିବାସୀ ସୁନ୍ଦରୀକୁ ଡାକିଆଣିଛି । ମତେ ଦେଖି ନମସ୍କାର କଲା । କଥାବାର୍ତ୍ତା ସେ ଖୁବ୍ କମ୍ କରେ । କିନ୍ତୁ କାମିକା । ମୁଁ ଘର ଭିତରକୁ ପଶି ଦେଖେ ସତ କଥା ।

ଚମତ୍‌କାର ଏକ ଆଦିବାସୀ କିଶୋରୀ । ମୋତେ ଦେଖି ଲାଜ କଲା । ପୁଣି ବାହାରକୁ ଉଠିଯିବାକୁ ବସିଲା । ଦୁଆରମୁହଁରେ ମୋ ଦଲାଲ(ଯା ନାମ କାନ୍ଦ୍ରା) ତା' ବାଟ ଓଗାଳିଲା । କାନ୍ଦ୍ରା ଆଦିବାସୀ କି ନୁହେଁ ମୁଁ ଜାଣେନା, କିନ୍ତୁ ଆଦିବାସୀମାନଙ୍କ ଭାଷା ସୁନ୍ଦର କହିପାରେ । ସେଇ ଭାଷାରେ କିଶୋରୀକୁ କ'ଣ କହିଲା । ସେ ଫିକ୍‌କିନା ହସିଦେଇ ପୁଣି ଯାଇ ଗୋଟେ କୋଣରେ ବସିଲା ।

ମୋ'ଠୁ ମଦପିଇବା ପାଇଁ କିଛି ପଇସା ନେଇ କାନ୍ଦ୍ରା ଅନ୍ଧାରରେ ମିଶିଗଲା ।

ଆଗରେ ମୋର ଏକ ଆଦିବାସୀ କିଶୋରୀ, ସେ ମୋ କଥା ବୁଝେନା – ମୁଁ ତା' କଥା ବୁଝେନା । ସେ କଳାକାର କ'ଣ, ଶିଳ୍ପୀ କ'ଣ, କ୍ୟାନଭାସ କ'ଣ, ତୂଳୀ କ'ଣ ଏସବୁ ବୁଝେନା । ସେ ଜାଣେ କେବଳ ସେ ରାତିଟି ପାଇଁ ଆସିଛି । ତା'ର କିଛି ପଇସା ଦରକାର । ଆଉ ମୁଁ ଅବିବାହିତ । ମୋ ଜୀବନ ପାଇଁ କିଛି ଆନନ୍ଦ କିଛି ପ୍ରମୋଦ କିଛି ଖେଳ ଦରକାର ।

ସକାଳୁ ଉଠିଲାବେଳକୁ ଡେରି ହୋଇ ଯାଇଥିଲା । ଅନେକ ଆଗରୁ ଆସିବାସୀ

କିଶୋରୀ ଚାଲିଯାଇଛି । ଦୁଆର ଖୋଲା ଅଛି । ବାହାର ବାରଣ୍ଡାରେ ଖୁବ୍ ଯୋରରେ କାନ୍ଦ୍ରା ଘୁଙ୍ଗୁଡ଼ି ଶୁଭୁଛି । ଅଳ୍ପ ଆଲୁଅରେ କାଲି ରାତିରେ କରିଥିବା ସାଦାକାଗଜରେ ଚାରକୋଲ୍ ସ୍କେଚ୍‌କୁ ମୁଁ ଚାହିଁଲି । କିଶୋରୀଟି କୌଣସି ବିଶେଷ ଭଂଗୀରେ ବସିଛି । ସେ ବସିଛି ମୋ ଘର କୋଣରେ- ଅପେକ୍ଷା କରିଛି ଏକ ଘଟଣାକୁ ଯାହା ହୁଏତ ସେ ଜୀବନରେ ପ୍ରଥମଥର ପାଇଁ ଅନୁଭବ କରିବାକୁ ଯାଉଛି । ତା' ଦୃଷ୍ଟି ଅଧିକାଂଶ ସମୟ ଦରଆଉଜା ଦୁଆର ଆଡ଼କୁ । ସେ ଯେମିତି ଭାବୁଛି, ଏ ଦରଜାଟା କେତେବେଳେ ବନ୍ଦହେବ । ଏଇ ସମୟରେ ମୁଁ ତା'ର ସ୍କେଚ୍ କରିନେଇଛି । ମନରେ ମୋର ଖୁବ୍ ଶାନ୍ତି ଆସିଲା । ଅନେକ ନଗ୍ନଚିତ୍ର କରିଛି, କିନ୍ତୁ ଏପରି ସମ୍ମୋହିତ ଚିତ୍ର କେବେ ମୁଁ ଦେଖି ନଥିଲି ।

ସକାଳୁ ଉଠି ମୁଁ ସ୍କେଚ୍ ଆଗରେ ବସିଛି । ତାହା ମଧ ତିଆରି କରିବାକୁ ଭୁଲିଯାଇଛି । ମନେପଡ଼ିଲା, ଆଜି ମୋତେ ଶୀଘ୍ର ଯିବାକୁ ପଡ଼ିବ ମୋନାଲିସା ପଟ୍ଟନାୟକଙ୍କ ଘରକୁ । କାରଣ ଅଳ୍ପଦିନ ମଧ୍ୟରେ ମୋନାଲିସା ଏ ସହର ଛାଡ଼ି ଚାଲିଯାଉଛନ୍ତି । ତେଣୁ ତାଙ୍କର ପ୍ରତିକୃତିଟି ଶେଷ କରିବାକୁ ପଡ଼ିବ । ତୈଳଚିତ୍ର ପ୍ରତି ସେମିତି କିଛି ଦୁର୍ବଳତା ନାହିଁ । ତେଣୁ ସେ ଗୋଟେ ମୂର୍ତ୍ତି ବରାଦ କରିଛନ୍ତି । ମୋନାଲିସାଙ୍କର ସ୍ୱାମୀ ଅତ୍ୟନ୍ତ ପତ୍ନୀଭକ୍ତ । ସେ ମୂର୍ତ୍ତିଟିକୁ ତାଙ୍କ ବୈଠକଖାନାରେ ରଖିବେ, ମୁଁ ତରତର ହୋଇ ତାଙ୍କ ଘର ଅଭିମୁଖେ ବାହାରିଗଲି ।

ମୋନାଲିସାଙ୍କ ବାଲ୍‌କୋନି ଆମର ବସିବା ସ୍ଥାନ । ସେଇଠି ଅଧାତିଆରି ହୋଇଥିବା ମୂର୍ତ୍ତି - ଅଧାତିଆରି ମୋନାଲିସା । କେବେ ଯେ ଏଇଟା ଶେଷହେବ, ମଣିଷକୁ ଏକ ଜେଲ୍‌ଖାନା ଭିତରୁ ତ୍ରାହି ମିଳିବ । ନିର୍ଦ୍ଦିଷ୍ଟ ସମୟ ଭିତରେ କଳା ଚର୍ଚ୍ଚା କରିବାର ନିୟମ ମତେ ଗତ ଆଠଦିନ ହେବ ପାଗଳ କେରିଦେଲାଣି ।

ପୁନଶ୍ଚ ମୋନାଲିସାଙ୍କୁ ଅନେଇଲେ ମନେହୁଏ, ସେ ଯେମିତି ଗୋଟିଏ ଶୃଙ୍ଖଳାର ପ୍ରତିମୂର୍ତ୍ତି । ତାଙ୍କ ସ୍ୱାମୀ ପୁଣି ତା'ଠୁ ଅଧିକ ।

ଏଇ ସୁନ୍ଦର ସ୍ୱାମୀସ୍ତ୍ରୀଙ୍କର ଏକମାତ୍ର ଦୁଃଖ - ସେମାନେ ନିଃସନ୍ତାନ । ଫଳରେ ଘରେ ସାମୟିକ ବିଶୃଙ୍ଖଳାର ବାତାବରଣ ସୃଷ୍ଟି କରିବାକୁ ଆଉ କେହି ନାହାନ୍ତି ।

ମୋନାଲିସା ଆସିଲେ ସେଇ ଏକା ଶାଢ଼ି ଏକା ବ୍ଲାଉଜ୍ ପିନ୍ଧି । ଓଠରେ ସେଇ ଏକାପରି ରହସ୍ୟମୟ ଏକ ହସ । କଫି କପେ ଆଣି ବୟ୍ ଦେଇଗଲା । ଚାଖି ଦେଖିଲେ ସ୍ୱାଦ ମଧ ଠିକ୍ ଏକାପରି । ଓଃ, ବିରକ୍ତିକର । 'ସୌନ୍ଦର୍ଯ୍ୟ'ର ଆୟୁଷ ମୁହୂର୍ତ୍ତଠାରୁ ଅଧିକ ହେଲେ ଦେଖିବାକୁ ଇଚ୍ଛା ହୁଏନା । କିନ୍ତୁ କ'ଣ କରାଯିବ - ସୌନ୍ଦର୍ଯ୍ୟପିପାସୁ ଶିଳ୍ପୀମାନେ - ସଂସାରର ଚାପହେଉ, ବ୍ୟାବସାୟିକ ଦୃଷ୍ଟିକୋଣରୁ ହେଉ, ବ୍ୟକ୍ତିଗତ କୃତଜ୍ଞତା ହେତୁ ହେଉ - ଶିଳ୍ପସାଧନା କରୁ କରୁ ଯନ୍ତ୍ର ହୋଇଯାଆନ୍ତି । ଦୁନିଆ ଭାବେ 'ପ୍ରକୃତରେ କେତେ ସିଦ୍ଧହସ୍ତ

ଏମାନେ !' କିନ୍ତୁ ଶିଳ୍ପୀ ନିଜ କଳାକୃତିକୁ ଦେଖି ଭାବୁଥାଏ 'କେତେ ନିର୍ବୋଧ ଏ ଦୁନିଆ !'

ମୋନାଲିସା ଆରମ୍ଭକଲେ -

'କୁହନ୍ତୁ - କାଲିରାତି କେମିତି କଟିଲା ଏକୁଟିଆ - ନା ଅନ୍ୟକିଛି ?'

'ନା, କାଲିରାତି ମୋର ଏକ ରୋମାଣ୍ଟିକ୍ ରାତି' ମୁଁ କହିଲି । ମତେ କେମିତି ଲାଗୁଥିଲା ମୋନାଲିସାଙ୍କ ପାଖରେ ମୋର ଲୁଚେଇବା ପାଇଁ କିଛି ନାହିଁ । ମୋ ଉତ୍ତର ଶୁଣି ମୋନାଲିସା ଖୁବ୍ ଖୁସି ହୋଇଗଲେ । ମୋର ଏ ରକମର ଉତ୍ତରରେ ସେ ଉତ୍ସାହିତ ହୋଇ ମୋ ମୁହଁକୁ ଚାହିଁରହିଲେ । ମନେହେଲା, ସେ ଯେମିତି ଆଜି ସିଟିଂଦେବା ପାଇଁ ଆଦୌ ପ୍ରସ୍ତୁତ ନୁହନ୍ତି ।

ସେ କହିଲେ - 'ପଚାରିବେନି - କାଲିରାତି କେମିତି କଟିଲା ?'

ମୁଁ - ' ସେ ପ୍ରଶ୍ନ କେବଳ କେତେଜଣ ଖାସ୍ ଲୋକ ପଚାରିପାରନ୍ତି । ମୁଁ କ'ଣ ସେଇମାନଙ୍କ ମଧ୍ୟରୁ ଜଣେ ?'

ସେ କହିଲେ - 'ଯେ ପର୍ଯ୍ୟନ୍ତ ମୋ ପ୍ରତିମୂର୍ତ୍ତି ଶେଷ ହୋଇନି ଭାବିନିଅନ୍ତୁ ଆପଣ ସେଇ ହାତଗଣତି ନିହାତି ନିକଟତର ଲୋକମାନଙ୍କ ମଧ୍ୟରୁ ଜଣେ ।'

ମୁଁ - 'ତା'ମାନେ ପ୍ରତିମୂର୍ତ୍ତି ଶେଷହେଲେ ମୁଁ କେହି ନୁହେଁ ?'

ସେ କହିଲେ - 'ତୈଳଚିତ୍ର ଶେଷହୋଇଯିବା ପରେ ଆପଣ କେବଳ କୌଣସି ମଡ଼େଲ କଥା ଭାବିଛନ୍ତି ? ପ୍ରତିମୂର୍ତ୍ତି ଶେଷହେଲେ ମୁଁ ଆପଣଙ୍କର ମନେପଡ଼ିବି ? ମୋର ମନେହୁଏ ମୋ ପାଖରେ ଏପରି କିଛି ରୂପ ନାହିଁ ଯାହାକୁ ଥରେ ତୂଳୀରେ ଆଙ୍କିସାରିବା ପରେ ଆପଣ ଜୀବନସାରା ଆଉ କୌଣସି ଚିତ୍ର କରିବାକୁ ଜରୁରୀ ମନେକରିବେ ନାହିଁ ।'

ମୁଁ - 'ଆପଣ ଏତେ ଶୀଘ୍ର ମତେ ବୁଝିଗଲେ କେମିତି ?' ସେତେବେଳକୁ ମୋନାଲିସା ଏକବାରେ ରୋମାଣ୍ଟିକ୍ ହୋଇଉଠିଲେଣି । ମନ ଯେତେବେଳେ ରୋମାଣ୍ଟିକ୍ ହୋଇଉଠେ ସେତେବେଳେ ଚପଳତା ଆଗରେ ବୟସ ହାର ମାନେ । ମୋ ମନ ବି ରୋମାଣ୍ଟିକ୍ ହୋଇଉଠିଲେ ମୁଁ ଚିତ୍ର ଆଙ୍କିବା ବନ୍ଦ୍‌କରେ । ତେଣୁ ମୋନାଲିସା ଯେ ଚଂଚଳ ହୋଇଉଠି ଆଜି ସିଟିଂ ଦେବାକୁ ରାଜି ହେବେନି ଏଇଟା ମୋ ହୃଦୟ ମୋତେ କହୁଥିଲା ।

କିନ୍ତୁ ସେ ସିଟିଂ ଦେଲେ । ପୁଣି ନୀରବରେ ତିନିଘଣ୍ଟା । ତିନିଘଣ୍ଟା ମୁଁ ତାଙ୍କ ଦେହକୁ ଲକ୍ଷ୍ୟକରିଛି । ଆଉ ହୁଏତ ତିନିଘଣ୍ଟା ସେ ମତେ ଅନେଇଛନ୍ତି - ମୋ ଦୃଷ୍ଟିର ପଥକୁ ଅନୁସରଣ କରିଛନ୍ତି । ଚେଷ୍ଟା କରିଛନ୍ତି ମୋ ଆଖି ସହିତ ଥରେହେଲେ ଆଖି ମିଶାଇବା ପାଇଁ । କିନ୍ତୁ ମୁଁ ଅଚଂଚଳ ସ୍ଥିର । ମୁଁ ବୁଝିଛି, ମୋ ମୁହଁ ଉପରେ ତାଙ୍କ ଦୃଷ୍ଟିର ତାର ।

ଆଜି କିନ୍ତୁ ତାଙ୍କ ଶାଢ଼ିପଣତ ବଡ଼ ଇତସ୍ତତଃ । କେଉଁଠି କେଉଁ ଅଂଶଟା ରହିବ ଯେମିତି ଠିକ୍ କରିପାରୁନାହାନ୍ତି । ସେ ହୁଏତ ଜାଣି ଜାଣି ଭୁଲିଯାଇଛନ୍ତି ଯେ ତାଙ୍କ ଶାଢ଼ି

କେଉଁ Continuity ରେ ଥିଲା । ମୁଁ ଚାହିଁଥିଲେ କହିପାରିଥାନ୍ତି ଶାଢ଼ିଟା ସଜାଡ଼ିନେବାକୁ । କିନ୍ତୁ ଇଚ୍ଛାକରି କିଛି କହିଲିନି । କାରଣ ଆଜି ମୁଁ ତାଙ୍କ ସୁନ୍ଦର ଦକ୍ଷିଣବାହୁକୁ ଲକ୍ଷ୍ୟ ରଖିଛି ।

ବେଳେବେଳେ ମନେହୁଏ ବାହୁ ତାଙ୍କର ଏକ ତରାଟଫୁଲର ଗଜରା । ମଖମଲି ରଂଗ ଉପରେ ଅସ୍ପଷ୍ଟ ସୁନାଚୁଡ଼ି । ପୁଣି ବେଳେବେଳେ ମନେହେଉଛି ତାଙ୍କ ବାହୁ ଏକ ତୈଳ ରଂଗର ସାପ କିନ୍ତୁ ମୁଁ ପ୍ରତିମୂର୍ତ୍ତି କରୁଛି - ମୋ ପାଖରେ ତୈଳରଂଗ ନାହିଁ ।

ତେଣୁ ରଂଗକୁ ମତେ ଏକେବାରେ ଭୁଲିଯିବାକୁ ପଡ଼ିବ ।

'ମୋ ବାହୁ ସୁନ୍ଦର ବୋଲି ମତେ ସମସ୍ତେ କହନ୍ତି । ମତେ କିନ୍ତୁ ମୋ ବାହୁଟା ଭଲ ଲାଗେନା । ମୋ ହାତଗୁଡ଼ା ମୋ ଦେହ ତୁଳନାରେ ଖୁବ୍ ସରୁ ସରୁ ନୁହେଁ ?' ସେ ନୀରବତା ଭଂଗକରି ଆରମ୍ଭକଲେ । 'ନା, ବାହୁଟା ଦେହ ସଂଗେ ଖାପ୍ ଖାଉନି । କିନ୍ତୁ ଏକକ ଭାବରେ ଦେଖିଲେ ବାହୁଟା ଖୁବ୍ ସୁନ୍ଦର । ଆପଣଙ୍କ ଶରୀରର ବିଶେଷତ୍ୱଟା ସେଇଆ । ଅନେକ ଅଂଶ ଶରୀରର ଅନୁପାତ ରକ୍ଷାକରିନି, କିନ୍ତୁ ସୁନ୍ଦର ଦେଖିବାକୁ । ମୁଁ କିନ୍ତୁ ସବୁ ଅନୁପାତ ରକ୍ଷାକରି ରୂପ ନେଇଯାଇଛି ।'

'କାରଣ ମୁଁ ଫଟୋଗ୍ରାଫର ନୁହେଁ । ମୁଁ ଶିଳ୍ପୀ - ମୋ ସ୍ୱାଧୀନତା ଅଛି ।'

'ଅନ୍ୟ ଭାବରେ କହିବାକୁ ଗଲେ - ଆପଣ ମତେ ଯେଉଁ ରୂପରେ ଦେଖିବାକୁ ଚାହାନ୍ତି ସେଇ ରୂପରେ ଚିତ୍ରିତ କରିବାକୁ ଯାଉଛନ୍ତି । ସତ ?'

'ପ୍ରାୟ ସେୟା ।'

'ଆପଣ ମତେ କେଉଁ ରୂପରେ ଦେଖିବାକୁ ଚାହାନ୍ତି ?'

'ମୋନାଲିସା ପଟ୍ଟନାୟକ - ଶ୍ରୀମତୀକୁ କାଟିଦେଇ ।'

ମୁଁ କହିଦେଇ ହସିଦେଲି । ମୁଁ ନିଶ୍ଚିତ ଥିଲି ଏରକମ କଥା କହିଲେ କୌଣସି ନାରୀ ବିରକ୍ତ ହୁଏ ନାହିଁ । ସବୁ ନାରୀ ସାରାଜୀବନ କୁମାରୀତ୍ୱ ବଜାୟ ରଖିବାକୁ ଚେଷ୍ଟାକରନ୍ତି । ସେ ପ୍ରକୃତରେ ଖୁବ୍ ଖୁସିହେଲେ । ପୁଣି କିଛି ସମୟ ନୀରବତା ପରେ ମୁଁ ମୋ କାମ ଆହୁରି ନିବିଷ୍ଟ ଚିତ୍ତରେ ଆରମ୍ଭ କଲି ।

ସେଦିନ ଅନେକ କ୍ଳାନ୍ତ ହୋଇପଡ଼ିଥିଲି । ଜେଲ୍‌ଖାନାରେ ବସି ଚିତ୍ରଆଙ୍କିବା ଏକ ନିର୍ଯାତନା । ଅନ୍ୟଆଡ଼େ ଅନେକ ବୁଲାବୁଲି କରି ନିଜକୁ ହାଲୁକା କରିବାକୁ ଚେଷ୍ଟାକଲି । କିନ୍ତୁ ଫଳରେ ବେଶି ହାଲିଆ ହୋଇପଡ଼ିଲି । ସେଦିନ ସହର ଉପକଣ୍ଠରେ ଥିବା ଆଦିବାସୀ ଗାଁ ଭିତରକୁ ଯିବାକୁ ଠିକ୍‌କଲି । କାନ୍ଦ୍ରାକୁ ଖୋଜିପାଇଲି । ସେ ସେତେବେଳକୁ ମହୁଲି ଖାଇ ବେଶ୍ ମସଗୁଲ ହୋଇଥାଏ । ମୋର ଇଚ୍ଛାଟା ଶୁଣିସାରିବା ପରେ ସେ ଏକେବାରେ ଉତ୍ସାହିତ ହୋଇପଡ଼ିଲା ।

## ନଗ୍ନ ମୋନାଲିସା

ଦୁହେଁ ଚାଲିଚାଲି ଆଗେଇଲୁ । ସହର ମଧ୍ୟଦେଇ ହାଇୱେ ଯାଇଛି । ସହର ଶେଷରେ ଗୋଟେ ଛୋଟ ପାହାଡ଼ୀ ନଦୀ ଉପରୁ ଗୋଟେ ମରହଟ୍ଟା ପୋଲ ଅତିକ୍ରମ କଲେ ସାଂଗେ ସାଂଗେ ଜଙ୍ଗଲ ଆରମ୍ଭ ହୋଇଯାଏ । ରାତିରେ ଜଙ୍ଗଲଟା ବେଶି ରୋମାଂଚକର । ସହରର ଏତେ ପାଖରେ ଥାଇ ଏଇ ଆଦିବାସୀ ଗାଁଟା ଯେଉଁ ଅନ୍ଧାରକୁ ସେଇ ଅନ୍ଧାର । ସହର ସହିତ ଏମାନଙ୍କ ସଂପର୍କ କେବଳ ହାଟପାଳିଦିନ ଓ ଅନ୍ୟାନ୍ୟ ପର୍ବପର୍ବାଣି ଦିନ । ରଥଯାତ୍ରାରେ ଏମାନେ ଖୁବ୍ ଭିଡ଼ କରନ୍ତି ସହର ବଜାରରେ । ନିରୀହ ଆଦିବାସୀଙ୍କୁ ଠକେଇଦେଇ ସହରର ଦୋକାନୀ ବେଶ୍ ଦୁଇ ପଇସା ରୋଜଗାର କରନ୍ତି । କିନ୍ତୁ ଆଦିବାସୀମାନେ ନିଜେହିଁ ଜାଣନ୍ତି ନାହିଁ ଯେ ସେମାନେ ବର୍ଷ ବର୍ଷ ଧରି ଠକାମିରେ ପଡ଼ିଆସୁଛନ୍ତି ।

ଏତେଦିନଯାଏ ଆଦିବାସୀ ମହିଳାମାନେ ମୋ ଷ୍ଟୁଡ଼ିଓକୁ ଯାଇଛନ୍ତି - ମୋ ଇଚ୍ଛା ଅନୁସାରେ ନଗ୍ନ ହୋଇ ମଡ଼େଲ ହୋଇଛନ୍ତି - ମୋ ଇଚ୍ଛା ଅନୁଯାୟୀ ମୋ ସହିତ ମୋ ବିଛଣାରେ ନିସଂକୋଚରେ ଶୋଇଛନ୍ତି । କିନ୍ତୁ ଏମାନଙ୍କ ଘର ମୁଁ ପ୍ରଥମେ ଦେଖୁଛି ।

ଏତେ ପରିଷ୍କାରପରିଚ୍ଛନ୍ନ ହୋଇଛି ଯେ ମତେ ବଡ଼ ଅସ୍ୱସ୍ତି ବୋଧହେଲା । ମୁଁ ଜୀବନରେ କେବେ ଏତେ ଶୃଙ୍ଖଳିତ ହୋଇ ରହିନାହିଁ । ମୋ ରୁମ୍‌ଟା ଏକ ପ୍ରଳୟ । ଚଟାଣ ସାରା ବର୍ଷ ବର୍ଷର ଧୂଳି - ବହିପତ୍ର ସବୁ ଅସଜଡ଼ା - ମୋ ରଂଗ ସବୁ ଇତସ୍ତତଃ ହୋଇ ପଡ଼ିଥାଏ । ମୋ ତୂଳୀସବୁ ଗୋଛାହୋଇ ଗୋଟେ କୋଣକୁ ପଡ଼ିଥାଏ । ମୋ କ୍ୟାନ୍‌ଭାସ୍ ସବୁ ମୋ କାନ୍ଥସାରା ବଡ଼ ବିଶୃଙ୍ଖଳିତ ଭାବେ ଟଙ୍ଗା ହୋଇଛନ୍ତି । ମଝିରେ ଏକ ଲାଇଫ୍ ବୋଟ୍ ମୋ ଖଟ । ସେଥିରେ ଚାଦରଟା ଖୁବ୍ ପରିଷ୍କାର (କେବଳ ସେତିକି ପରିଷ୍କାର ଥାଏ) କିନ୍ତୁ ମଶାରିଟା କେବେ ଉଠାହୁଏନା ।

ଏହିପରି ସହରୀବାବୁ ଘରକୁ ଆଦିବାସୀ ଝିଅମାନେ ଯାଆନ୍ତି - ସେମାନଙ୍କ ଘର ନାଲିମାଟିରେ ଲିପା । କଳା ଓ ଧଳାରେ ସୁନ୍ଦର ଝୋଟି । ମତେ ଲାଗିଲା, ସେମାନଙ୍କ କଥାଭାଷା ବୁଝିବାପାଇଁ ସରକାରୀ କର୍ମଚାରୀମାନେ ବେଳେବେଳେ କାନ୍ଦ୍ରାକୁ ଇନ୍‌ଟରପ୍ରିଟର କରିଆଣିଥାନ୍ତି ।

ପୁରୁଷମାନେ ମତେ କେହି ଚିହ୍ନି ନାହାନ୍ତି । କେତୋଟି ଯୁବତୀ କେବଳ ମତେ ଜାଣିଛନ୍ତି । ସେମାନଙ୍କ ପାଖରେ ମୁଁ ଏକ ବିସ୍ମୟ ନୁହେଁ । ଭଦ୍ର ସମାଜ ହୋଇଥିଲେ ସେମାନେ ମତେ ଚିହ୍ନିଛନ୍ତି ବୋଲି ଜଣେଇବାକୁ ସଂକୋଚପ୍ରକାଶ କରିଥାନ୍ତେ । କିନ୍ତୁ ସେମାନେ ମତେ ଜାଣିଛନ୍ତି, ଏଇଟା ତାଙ୍କ ପାଇଁ ଗୋଟେ ବାହାଦୁରୀ ।

ସେମାନଙ୍କ ଭାଷାରେ ସେମାନେ ମତେ ଥଟ୍ଟାକଲେ । ମତେ ବାଧିଲାନି । ମୁଁ ଆଗରୁ ଏରକମ୍ ବ୍ୟବହାର ପାଇଛି । କିନ୍ତୁ ମତେ ଏପରି ଭଦ୍ରଭାବରେ ଗାଁକୁ ପଶିଆସିବାର ଦେଖି ସେମାନେ ଆଶ୍ଚର୍ଯ୍ୟ ହେଉଥିଲେ । ତାଙ୍କ ଭିତରୁ ସବୁଠୁ ରହସ୍ୟମୟୀ କିଶୋରୀ ଯେ କି

ଶେଷଥର ମୋ'ଘରକୁ ଯାଇଥିଲା - ତା' ନା 'ଝାଟି' ।
ଝାଟି ମତେ ତା' ଘରକୁ ଡାକିଲା । ମୁଁ କେବଳ ଏମିତି ବୁଲିବାକୁ ଚାଲିଆସିଛି କହି
ତା'ଠାରୁ ବିଦାୟନେଲି । କିନ୍ତୁ କାନ୍ଦ୍ରାକୁ କହିଲି ଚୁପ୍‌କରି ଯେ ମୋର ଆଜିବି ଏଇ ଝାଟି
ଦରକାର ।

କାନ୍ଦ୍ରା ମୋତେ ଫେରିଯିବାକୁ କହିଲା ଓ ପରେ ଝାଟିକୁ ନେଇ ନିଜେ ଆସିବ
ବୋଲି ପ୍ରତିଶ୍ରୁତି ଦେଲା । ମୁଁ ଗାଁ ମଝିରେ ଆସୁଆସୁ କେତୋଟି ଛୋଟପିଲାଙ୍କ ସହିତ
ଖେଳିବାକୁ ଚେଷ୍ଟାକଲି । ଏଇ ଅବସରରେ କାନ୍ଦ୍ରା ଝାଟି ପାଖରୁ ଫେରିଆସିଲା । ତା'
ଆଖିରେ ହାତାଶାର ଛାଇ । ମୁଁ ଝାଟି ଘରକୁ ଗଲିନାହିଁ ବୋଲି ଝାଟି ମନାକରିଦେଲା ।
ମୋନାଲିସା ଏମିତି ଅଭିନୟ କରିପାରିବେ? ମୋନାଲିସା ଏମିତି କ'ଣ ନିଃସଂକୋଚରେ
ମତେ ତାଙ୍କ ଶୋଇବାଘରକୁ ଡାକିପାରିବେ? ପୁଣି ଥରେ ଝାଟି ଘରକୁ ଯାଇ ଝାଟିକୁ
ମନେପକାଇବାକୁ ଚେଷ୍ଟାକଲି, ଗ୍ରାମବାସୀ ମତେ ସନ୍ଦେହ କରିବେ । ସେଇ ଭୟରେ ମୁଁ
ବାଧ୍ୟ ଶିଶୁଟି ପରି ସହରକୁ ଫେରିଆସିଲି । ଦିନରାତି ଯେଉଁ ଶିଳ୍ପୀ ନାରୀର ରୂପ ଓ ଦେହକୁ
ନେଇ କଳା ସୃଷ୍ଟିକରୁଛି, ତା' ପାଇଁ ନାରୀ କ'ଣ ଅବସରର ବିନୋଦନ ହୋଇପାରେ?
ଜଗତର ଚିର ବିସ୍ମୟ ରହସ୍ୟମୟ ବସ୍ତୁ ସେଇ ନାରୀପ୍ରତି ମୋର ଏକ ବିତୃଷ୍ଣା ହେଲା ।
ମନେହେଲା, ମୁଁ ବୋଧହୁଏ ଭୁଲ୍‌ରେ ଶିଳ୍ପୀ ହୋଇଯାଇଛି । ନାନା ଦୁଶ୍ଚିନ୍ତା ଭିତରେ ମୁଁ ମୋ
ଷ୍ଟୁଡ଼ିଓକୁ ଫେରିଲି - ଷ୍ଟୁଡ଼ିଓ ଭିତର ଅନ୍ଧାର । କାନ୍ଥସାରା ନାରୀ ଚିତ୍ର । ଦିଆସିଲି ଜାଳିଲେ
କାହା ମୁହଁ ଆଉ ଦେଖିବି? ଝାଟିର - କାରଣ, ଏପର୍ଯ୍ୟନ୍ତ ଅସମ୍ପୂର୍ଣ୍ଣ ସ୍କେଚ୍‌ଟି ଷ୍ଟାଣ୍ଡ୍ ଉପରେ
ଥୁଆହୋଇଛି । ଆରେ! ମୁଁ ନିଜକୁ ପାପୀ ବୋଲି କାହିଁକି ଭାବୁଛି? ମୁଁ ତ ଚାହିଁନଥିଲି
ଝାଟିକୁ ଡାକିଆଣି ଉପଭୋଗ କରିବା ପାଇଁ । ମୁଁ ବରଂ ଚାହିଁଥିଲି ଝାଟିର ଏକ ତୈଳଚିତ୍ର
କରିବାପାଇଁ - ନଗ୍ନ ନୁହେଁ - ସମ୍ପୂର୍ଣ୍ଣ ବସ୍ତ୍ରାବୃତ୍ତ ।

ବାହାରେ କାନ୍ଦ୍ରାର ଆବାଜ୍ । କିଏ ଆସିଛ? ମୁଁ ପାଦଶବ୍ଦରୁ ଅନୁମାନ କରିବାକୁ
ଚେଷ୍ଟାକଲି । ନା, କୌଣସି ପୁରୁଷର ପାଦଶବ୍ଦ ଏ ନୁହେଁ । ଦରଜା ଅଳ୍ପ ଖୋଲିଗଲା, ଉଜ୍ଜ୍ୱଳ
କୃଷ୍ଣବର୍ଣ୍ଣ କିଶୋରୀ ଝାଟିର ମୁହଁ । ପରେ ପରେ କାନ୍ଦ୍ରା ଆସି ସଫେଇଦେଲା ଯେ, ଝାଟି
ମୋର କାଳେ ମନ ଦୁଃଖ ହୋଇଥିବ ସେଇକଥା ଭାବି ଅନେକ ବିପଦ ଅତିକ୍ରମ କରି
ଚାଲିଆସିଛି । ସାରା ରାତି ରହିପାରିବନି । ଅଳ୍ପସମୟ ପରେ ଚାଲିଯିବ । ମୁଁ ସାମାନ୍ୟ ହସରେ
ଝାଟିକୁ ସ୍ୱାଗତ ଜଣେଇଲି ।

ଚାହିଁଥିଲେ ଝାଟିକୁ ବିବସନା କରି ମୁଁ ତା'ର ଯୌବନକୁ ଉପଭୋଗ କରିପାରିଥାନ୍ତି ।
ଚାହିଁଥିଲେ ତା'ର ଏକ ନଗ୍ନଚିତ୍ର କରିପାରିଥାନ୍ତି । ଚାହିଁଥିଲେ ଅସଂପୂର୍ଣ୍ଣ ଚିତ୍ର ଶେଷ
କରିପାରିଥାନ୍ତି । କିନ୍ତୁ ସେସବୁ କରିବାକୁ ମନ ହେଲାନି । ଝାଟି ସହିତ ଗଳ୍ପ କରିବି ବୋଲି

ବସିଲି । ସେ ନା ମୋ କଥା ବୁଝିପାରେ, ନା ମୁଁ ତା' କଥା ବୁଝିପାରେ । ଦୀର୍ଘ ଦୁଇଘଣ୍ଟା ଆମେ ଦୁହେଁ ସାମ୍ନାସାମ୍ନି ବସି କେବଳ ଆଖିରେ ହିଁ କଥାଭାଷା କଲୁ । ଏକ ଉଜ୍ଜ୍ୱଳ ଗୌର ବର୍ଣ୍ଣର ନାରୀ ସହିତ ମୁଁ ଗତ ଆଠଦିନ କଟେଇଛି – କିନ୍ତୁ ଆଖିକୁ ଅନେଇପାରେନି । ଗୋଟିଏ କୃଷ୍ଣା କିଶୋରୀ ସହିତ ମୁଁ ଦୁଇଦିନ କଟେଇଛି – ଅଧିକାଂଶ ସମୟ କେବଳ ତା' ଆଖିକୁ ଅନେଇ ।

ଝାଟି ଚାଲିଗଲା – ମୋ ଦେହର ପିପାସା ମେଣ୍ଟିଲାନି । କିନ୍ତୁ ସେ ରାତିରେ ତୃପ୍ତିର ନିଦ ।

ମୋନାଲିସା ଆଜି ଅନ୍ୟଏକ ଶାଢ଼ିରେ ସଜ୍ଜିତା । ଆଜି ସେ ସିଟିଂଦେବାକୁ ବୋଧହୁଏ ରାଜି ନୁହଁନ୍ତି । ଆଜି ସେ ଗଳ୍ପ କରିବା ମୁଡ୍‌ରେ ବୋଧହୁଏ ଅଛନ୍ତି । ମୁଁ ଅସଂପୂର୍ଣ୍ଣ ମୂର୍ତ୍ତି ପାଖରେ ଛିଡ଼ା ହୋଇ ମୋର ତ୍ରୁଟିସବୁ ମନେମନେ ସମାଲୋଚନା କରୁଥିଲି । ପଛରୁ ଆସିଲେ ମୋନାଲିସା । ଉପର ମହଲାକୁ ଆସୁଥିଲାବେଳେ ମୁଁ ପାହାଚରେ ମୋନାଲିସାଙ୍କୁ ଦେଖିଲି । ଆଜି ସେ ଆସିଛନ୍ତି ଅନ୍ୟଏକ ବେଶରେ, ଅନ୍ୟଏକ ଭଂଗୀରେ ।

ମୁଁ ବାଲକୋନି ଉପରେ ତାଙ୍କର ଉପସ୍ଥିତି ଅନୁଭବ କରି ପଛକୁ ଫେରି ଚାହିଁଲି ।

ମଥାରେ ତାଙ୍କର ସେଇ ଅତ୍ୟାଧୁନିକ କେଶ ବିନ୍ୟାସ ନାହିଁ । ଆଜି ସବୁ କେଶ ମୁକ୍ତ । ସାମ୍ପୁ ଦେଇଛନ୍ତି ବୋଧହୁଏ । ଅନେକବେଳୁ ଶୁଖି ଗଲାଣି । ଆଖିଗୁଡାକରେ ଅତିହ୍ରାସ ରଂଗ । ମୁଁ ଆଖି ଫେରେଇ ନେଇ ପଚାରିଲି –

'ଆଜି ଆପଣ ବୋଧହୁଏ ପ୍ରସ୍ତୁତ ନୁହନ୍ତି ?'

'ଆଜି ମୁଁ ପ୍ରସ୍ତୁତ ନୁହେଁ । ଆଜି ମୋର ଅନ୍ୟ କାମ ଅଛି ।'

'ତା' ହେଲେ ମୁଁ ଯାଏଁ ।'

'ନା ନା, ଆପଣ ବସନ୍ତୁ । କପେ କଫି ତ ଅନ୍ତତଃ ପିଇକରି ଯିବେ ?'

ମୁଁ ବାଧ୍ୟ ଶିଶୁଟି ପରି ବସିଲି ଯଦିଓ ଦେଖେଇବାର କାରଣ କିଛି ନଥିଲା । ଅଳ୍ପ ସମୟ ପରେ କଫି ଆସିଲା । କଫି କପ୍ ମୁହଁରେ ଲଗାଉ ଲଗାଉ ସେ ସେଇ ପୁରୁଣା ପ୍ରଶ୍ନ ପଚାରିଲେ –

'କୁହନ୍ତୁ, କାଲି ରାତି ଆପଣଙ୍କର କେମିତି କଟିଲା ?'

'ଖୁବ୍ ରୋମାଣ୍ଟିକ୍ । ଗୋଟିଏ ଆଦିବାସୀ କିଶୋରୀ ସହିତ ସାରା ରାତି । ଗଳ୍ପସଳ୍ପ ନୁହେଁ – ଦେହରେ ଲାଳସା ନୁହେଁ । କେବଳ ଏକ ବନ୍ଦ କୋଠରି-ନୀରବତା ଓ ଦୃଷ୍ଟି ବିନିମୟ ।'

'ନୀରବତା କେବେ ସମସ୍ୟା ସମାଧାନ କରେ ।'

## ବନ୍ଦୀ ପ୍ରେମିକ

'ନୀରବତା ବେଳେବେଳେ ଶାନ୍ତି ଆଣିଦିଏ ବୋଲି ମୁଁ ଜାଣିଛି । ଆପଣ କ'ଣ ମନେକରନ୍ତି ?'

'ମୋର ସାରା ଜୀବନ ନୀରବ । ଆଉ ଜୀବନଟା ଅଛି ଯେତେବେଳେ ସବୁ ଋତୁର ଜ୍ୱାଳା ତ ସହ୍ୟ କରିବାକୁ ପଡ଼ିବ । ତେଣୁ ମୋ ନୀରବତାରେ ଝଡ ବି ଅଛି ଶାନ୍ତି ବି ଅଛି, ପ୍ରେମ ବି ଅଛି, ଘୃଣାବି ଅଛି ।

'ତା'ହେଲେ ଆପଣଙ୍କ ଜୀବନ ବଡ଼ ଦୁର୍ବିସହ ହୋଇଥିବ । ମୋର ଅନୁମାନ ଠିକ୍?'

'ଆପଣଙ୍କ ଅନୁମାନ ଏକେବାର ଠିକ୍ । ମୁଁ ଅଦ୍‌ଭୁତ ଭାବରେ ବେଳ କାଟେ । ଏଇ ଦେଖନ୍ତୁ କାଲି ସାରାରାତି ମୁଁ ଆପଣଙ୍କ ଖବର ନେବାରେ ସମୟ କଟେଇଛି ?'

'ଆଶ୍ଚର୍ଯ୍ୟ - ଆପଣ ମୋ ବିଷୟରେ ଏତେ ଅନିସନ୍ଧିସ୍ନୁ ହୋଇଉଠିଲେ କାହିଁକି? ମୋର ସ୍ଥିତି ଏତେ ମୂଲ୍ୟବାନ୍ ନୁହେଁ ।'

'Fancy ର ଦାମ୍ କିଛି ନୁହେଁ - ଚାହିଁଲେ ଅମୂଲ୍ୟ ନ ଚାହିଁଲେ ମୂଲ୍ୟହୀନ ।'

'ମୋ ପ୍ରତି Fancy ରୁ ଆପଣ କ'ଣ ପାଇଲେ ?'

'ଆପଣଙ୍କ ପାଖରୁ କାଲି ମୁଁ ଗୋଟିଏ ଜିନିଷ ପାଇଲି - ଯାହା ମୁଁ ସାରାଜୀବନ ଅନୁଭବ କରିଆସିଛି - ତା' ହେଉଛି ଆପଣ ଏକାନ୍ତ ଏକାକୀ ।'

'ନା, ଭୁଲ୍ ବୁଝିଲେ । ମୁଁ ସବୁବେଳେ ମୋ କଳ୍ପନା ସଂଗେ ଥାଏ । ଘୁମ୍‌ରେ ଥିଲାବେଳେ ମୋ ଚିତ୍ରମାନଙ୍କ ସାଂଗେ ଥାଏ । ଆଙ୍କୁଥିଲାବେଳେ ମୋ ମଡ଼େଲମାନଙ୍କ ସାଙ୍ଗରେ ।'

'ଏଇଟା କେବଳ ମନକୁ ବୁଝେଇବା କଥା । ମୁଁ ଏ କଥାଟାକୁ ଗୁରୁତ୍ୱ ଦେଉନି । ଆପଣ ଏକା - ନିହାତି ଏକା - ଏକଥା ମାନିବାକୁ ଆପଣ ରାଜି ନୁହଁନ୍ତି କାହିଁକି ?'

ଗପସପଟା ଯୁକ୍ତିତର୍କ ଆଡ଼କୁ ଗତିକରିବା ଦେଖି ମୁଁ କଥାଟା ବଦଳେଇଦେଲି । କହିଲି ...

'ଆପଣ କାଲି କ'ଣ ମୋ, ବିଷୟରେ ଅନୁସନ୍ଧାନ କଲେ - କେମିତି କଲେ ?'

'ମୁଁ ଦେଖିଲି ଆପଣ ହଠାତ୍ ଜଙ୍ଗଲ ଆଡ଼କୁ ଚାଲିଛନ୍ତି । ମୁଁ ସେତେବେଳେ ମୋ କାର୍ ନେଇ ଯାଉଥିଲି । ମୁଁ ସହର ଉପକଣ୍ଠରେ ଅପେକ୍ଷା କଲି । ଆପଣ ଫେରିଆସିଲେ । ପୁଣି ଆପଣଙ୍କୁ ଅନୁସରଣ କରି ଆପଣଙ୍କ ଷ୍ଟୁଡ଼ିଓ ପର୍ଯ୍ୟନ୍ତ ଗଲି । ତା' ପରେ ଫେରିଆସିଲି ।'

'ଫେରି ଆସିଲେ ? କ'ଣ ବିରକ୍ତିରେ ?'

'ପ୍ରାୟ ସେୟା - ଆପଣଙ୍କ ଓ ମୋ ଜୀବନର ସାଦୃଶ୍ୟଟା ଅନୁଭବ କରି କରି ଫେରିଆସିଲି ।'

'ଆପଣ ତା'ହେଲେ ଆଜି ବସିବେ ନାହିଁ - ତେବେ ମିଃ ପଟ୍ଟନାୟକଙ୍କୁ ମୁଁ ଯେଉଁ

କଥା ଦେଇଛି ତା' ହୁଏତ ମୁଁ ରଖିପାରୁନାହିଁ । କାରଣ ଏଇଠି ଆଉ ଦୁଇତିନି ଦିନ କାମପରେ ମତେ finish କରିବାକୁ ହେବ ଏ ମୂର୍ତ୍ତିଟାକୁ, ମୋ ଷ୍ଟୁଡ଼ିଓକୁ ନେଇଯିବାକୁ ପଡ଼ିବ ।'

'ପ୍ରତ୍ୟେକ ଦିନ ମିଃ ପଟ୍ଟନାୟକ ଆସି ମୂର୍ତ୍ତିଟିକୁ ତଦାରଖ କରନ୍ତି । ତାଙ୍କୁ ଖୁବ୍ ଭଲ ଲାଗିଛି...'

'ଆଉ ଆପଣଙ୍କୁ ?'

'ମତେ ମୋ ନିଜ ଫଟୋ ମଧ୍ୟ ଭଲ ଲାଗେନା – '

'ତା'ହେଲେ ମୋ ପରିଶ୍ରମଗୁଡ଼ା ଅଯଥା !'

'ନା, ମୂର୍ତ୍ତି ଆପଣ କରୁଛନ୍ତି ମିଃ ପଟ୍ଟନାୟକଙ୍କ ପାଇଁ ।'

'ଠିକ୍ କଥା – ଆପଣ କେତେ ସୁନ୍ଦରୀ ସେଇଟା ଆପଣଙ୍କ ଆଖି କଳନା କରି ପାରିବନି । ମିଃ ପଟ୍ଟନାୟକଙ୍କ ଆଖିପାରିବ ।'

'ଆଉ ଆପଣଙ୍କ ଆଖି ?'

'ମୋ ଆଖିରେ କଳା ହିଁ ସୁନ୍ଦର ।'

'ଆପଣ ସ୍ୱାର୍ଥପର ।'

'ପ୍ରତ୍ୟେକ ଶିଳ୍ପୀ ।'

ସେ ସେଇଠି କଥାବାର୍ତ୍ତା ବନ୍ଦ୍‌କରି କେଶ ବାନ୍ଧିବାକୁ ଲାଗିଲେ । ଚାକରାଣୀକୁ ଡାକିଲେ ତାଙ୍କ ଶାଢ଼ିଟା ଆଣିବାକୁ । ଆଶ୍ଚର୍ଯ୍ୟ, ଏଇଠାରେ ଲୁଗାବଦଳିବେ ନା କ'ଣ ?

ପ୍ରକୃତରେ ସେ ସେଇ ବାଲ୍‌କୋନିରେ ହିଁ ଲୁଗା ବଦଳିଲେ । କିନ୍ତୁ କାନ୍ଥକଡ଼କୁ ପଡ଼ିଥିବା ଗୋଟେ କାଠ କଟନ୍ ସେପାଖରେ । ମୁଁ ଏ ପାଖରେ ପ୍ଲାଷ୍ଟର ଅଫ୍ ପ୍ୟାରିସ୍ ନେଇ ପ୍ରସ୍ତୁତ ହେଉଥିଲି ।

ଝାଟି ସେଦିନ ରାତିରେ ଏକା ଏକା ଆସିଲା । ମୁଁ ଜାଣିଥିଲି, ସେ ଆସିବ । ତା'ର ପଇସା ଦରକାର । ସେଥିଲାଗି ସେଦିନ ସେ କାନ୍ଦ୍ରା ଡାକକୁ ଅପେକ୍ଷା ନକରି ଚାଲିଆସିଛି । ମୁଁ ଘରେ ଏକା ଶୋଇଛି । ଶୋଇଶୋଇ ମୋର ଜୀବନର ସମସ୍ତ ଅସମ୍ପୂର୍ଣ୍ଣ ଚିତ୍ର କଥା ଭାବୁଛି । କେଉଁଠି, କେଉଁ ଚିତ୍ର କେଉଁ ଅବସ୍ଥାରେ ଅଧା ରହିଗଲା ସବୁକୁ ଯଦି ଲେଖାଯାଏ ତେବେ ମୋର ଜୀବନ ଇତିହାସ ପୂରା ହୋଇଯିବ ।

ଆଜି ଝାଟିର ଚିତ୍ର ମଧ୍ୟ ସ୍କେଚ୍ ହୋଇ ରହିଛି । ମୁଁ ଝାଟିର ଗୋଟେ ତୈଳଚିତ୍ର କରିବାକୁ ମନସ୍ଥ କରିଛି ।

ନା, ଝାଟିକୁ ନଗ୍ନକରି ପ୍ରତିକୃତି ଆଙ୍କିବି ନାହିଁ । ଦେହରେ ଏଇ ଧଳା ଶାଢ଼ିଟାହିଁ ସବୁଠୁ ବେଶି ସୁନ୍ଦର । ମୁଁ ଅନୁମାନ କରିପାରୁଥିଲି, ସମ୍ପୂର୍ଣ୍ଣ ନଗ୍ନହେଲେ ଝାଟି କେତେ ସୁନ୍ଦର

ଦିଶିବ । କିନ୍ତୁ ଏଇ କିଶୋରୀ ପ୍ରତି ମୋର ଗୋଟେ ମମତା ହୋଇଗଲାଣି । ସେ ପେସାଦାର ହୋଇଉଠିନି । ସଭ୍ୟସମାଜର ଡାକରା ସେ ପାଇନି । ହୁଏତ ମୁଁ ତା' ଜୀବନର ପ୍ରଥମ ପୁରୁଷ । ବରଂ ତାକୁ ଅକ୍ଷତ ରହିବାକୁ ଦିଆଯାଉଚି ।

ମୁଁ ସେଦିନ ଝାଟିକୁ ମୋ ବିଛଣା ଉପରେ ବସିବାକୁ ଅନୁମତି ଦେଲି । ବସିବା ଭଂଗୀଟା ବିଶେଷ ଭଲ ଲାଗିଲା ନାହିଁ ।

ମୁଁ ତାକୁ ଶୋଇଯିବାକୁ କହିଲି ।

ସେ ଅନ୍ୟ କିଛି ଆଶା କରୁଥିଲା । ସେ ଶୋଇଲା । ଅପେକ୍ଷା କରୁଥିଲା, କେତେବେଳେ ମୁଁ ତା' ପାଖକୁ ଯିବି । ଓଃ, ଚମତ୍‌କାର ଅପେକ୍ଷା କରିବାର ଭଂଗୀ !

ମୁଁ ପେଣ୍ଟିଂ କରିବା ଆରମ୍ଭ କଲି । ଝାଟି ଖଟ ଉପରେ ଶୋଇବା ଅବସ୍ଥାରେ ଥାଇ ମଧ୍ୟ ଅନେକ ରାତିଯାଏ ଚେଇଁ ରହିଲା । ଅନେକବେଳ ପରେ ମୁଁ ତାକୁ ଅଧୈର୍ଯ୍ୟ ହେବାର ଦେଖି ତାକୁ ବିଦାୟ ଦେଲି ।

ସେ ଭଂଗା ଭଂଗା ଓଡ଼ିଆରେ ମୋତେ ପଇସା ମାଗିଲା –

ମୁଁ ବିନା ଦ୍ୱିଧାରେ ଦେଲି ଓ ପୁଣି ଆସିବାକୁ କହିଲି । ଗଲାବେଳେ ସେ ତା' ଚିତ୍ରଟାକୁ ଭଲଭାବରେ ଦେଖିଲା ଓ ଖୁବ୍ ହସ ହସ ମୁହଁରେ ଚାଲିଗଲା ।

କିଛି ସମୟ ପରେ କାନ୍ଦ୍ରା ଆସିଲା । ସେ ମତେ ଉପଦେଶ ଦେଲା, ଝାଟି କେବଳ ପଇସା ପାଇଁ କିମ୍ବା ମଡ଼େଲ ହେବାପାଇଁ ଆସୁନି । ତା'ର ମଧ୍ୟ ଦେହ ଅଛି – କ୍ଷୁଧା ଅଛି । ଏମିତି ଯଦି ପ୍ରତ୍ୟେକ ଦିନ ସେ ଫେରିଯାଏ, ଦିନେ ହୁଏତ ଆସିନପାରେ ।

ମତେ କାନ୍ଦ୍ରା କଥାରେ ବିଶ୍ୱାସ ହେଲାନାହିଁ । ଝାଟି ମୋନାଲିସା ନୁହେଁ । ଝାଟି କେବେହେଲେ ମତେ ଠକେଇ ନପାରେ ।

କିନ୍ତୁ ମୋନାଲିସା ତ କେବେ ଆସିବା ପାଇଁ ମତେ ପ୍ରତିଶ୍ରୁତି ଦେଇ ନାହାନ୍ତି । ମୁଁ ତାଙ୍କୁ ଆପଣା ଦୋଷ ଦେଉଛି କାହିଁକି ?

ଗୋଲାପଫୁଲର କିଆରି ଭିତରେ ଈଷତ୍ ଗୋଲାପୀ ରଙ୍ଗ ଶାଢ଼ି ପିନ୍ଧି ଶ୍ରୀମତୀ ମୋନାଲିସା ମୋ ଅପେକ୍ଷାରେ ଥିଲେ । ସ୍ୱାମୀ ଅନେକବେଳୁ ଅଫିସ୍ ଚାଲିଯାଇଛନ୍ତି । ମେଘୁଆ ପାଗ । ନିଜ ହାତରେ ଲଗା ହୋଇଥିବା ଫୁଲଗଛଗୁଡ଼ିକୁ ତଦାରଖ କରୁଛନ୍ତି ମୋନାଲିସା ।

ତାଙ୍କ ଗୋଲାପ କିଆରି ଭିତରୁ ଉପରମହଲାର ବାଲକୋନୀ ଦେଖାଯାଉଛି । ଯେମିତି ତାଙ୍କର ଅଧାତିଆରି ମୂର୍ତ୍ତି ଗୋଟେ ପତଳା କନାରେ ଘୋଡାହୋଇ ରହିଛି । ମତେ ଦେଖି ସେ ବାଲ୍‌କୋନି ଆଡ଼କୁ ଅନେଇ ରହିଲେ । କିଛି ବେଳ ପରେ କହିଲେ –

'କେତେଦିନ ଏମିତି ଆଉ ଲାଗିବ – ଏଇଟା ଶେଷ କରିବାକୁ ?'

'କାହିଁକି ? ଆପଣ କ'ଣ ବୋର୍ ହୋଇଗଲେଣି ?'

'ଆପଣଙ୍କ ଆଗରେ ବସୁଛି ବୋଲି ବୋର୍ ହେଉନି । ମୂର୍ତ୍ତିଟା ସମ୍ପୂର୍ଣ୍ଣ ଦେଖିବାକୁ ମିଃ.ପଟ୍ଟନାୟକ ଯେପରି ଭାବରେ ଉତ୍ସୁକ - ସେଇଟା ହିଁ ଅଧିକ ବୋରିଂ ।'

'ଏକଥାର ଅର୍ଥ ଅନ୍ୟଲୋକ ଭୁଲ୍ ବୁଝିପାରନ୍ତି । କାହିଁକି କଥାଟାକୁ ସହଜ ଭାବରେ ନେଉନାହାନ୍ତି ? ନିଶ୍ଚିତ ଭାବେ ମିଃ ପଟ୍ଟନାୟକ ଆପଣଙ୍କୁ ଖୁବ୍ ଭଲପାଆନ୍ତି ।'

'ସ୍ୱାମୀ ଯେତେବେଳେ ତା'ତ ପାଇବେ । କିନ୍ତୁ ପ୍ରଶ୍ନ ହେଉଛି, ମୁଁ ତାଙ୍କୁ ଭଲପାଏ କି ନାହିଁ ।'

'ସେଇଟା ଆପଣଙ୍କର ବ୍ୟକ୍ତିଗତ ସମସ୍ୟା । ମତେ ତା' ଭିତରେ ଭର୍ତ୍ତି କରନ୍ତୁ ନାହିଁ ।'

'ବ୍ୟକ୍ତିଗତ ସମସ୍ୟା ଭିତରେ ଆପଣ ନ ପଶିଲେ ମୋ ଚରିତ୍ର କିପରି ଅଧ୍ୟୟନ କରିବେ ? ମୋ ଚରିତ୍ର ଅଧ୍ୟୟନ ନକଲେ ଆପଣ ମୋ ପ୍ରତିମୂର୍ତ୍ତିରେ Expression ଦେବେ କିପରି ? ବାଃ, ଭଲ ଶିଳ୍ପୀ ତ !'

'Expression ଦେବାପାଇଁ ଲିପ୍ତହେବା ନିହାତି ଜରୁରୀ ନୁହେଁ ।'

'ଆପଣଙ୍କ Expression ଆପଣଙ୍କ ମୁହଁରେ - ସେଇଟା ଯେକୌଣସି ଶିଳ୍ପୀ ଆଖିରେ ଧରାପଡ଼ିଯିବ ।'

'କ'ଣ ମୋ ମୁହଁ କହେ ?'

'ଆପଣ ଏକା ।'

'ସେଇଟା ତ ମୋ କଥା ମତେ ଫେରେଇଦେଲେ । କିନ୍ତୁ ତା' ସଂଗେ ସଂଗେ ଆଉ ଗୋଟେ କଥା ମଧ୍ୟ କହୁଥିବ । ମୁଁ ବନ୍ଧ୍ୟା, ବୋଧହୁଏ ବନ୍ଧ୍ୟା ।'

'ସେଇଟା ଅର୍ଜନ ମଧ୍ୟ ହେଇପାରେ ।'

'ଚାଲନ୍ତୁ, ଏଇ ସମୟରେ ହିଁ ମୁଁ ଆପଣଙ୍କ ପ୍ରତିମୂର୍ତ୍ତିର କାମ କରିବି । ମତେ ଏଇ ମୁଡ୍ ହିଁ ଦରକାର ।'

'ଝାଟି ପ୍ରତି ମନ ମୋର ଦୁର୍ବଳ ହୋଇଆସୁଛି । ଝାଟି ଏକ ନିଃସହାୟ ଆତ୍ମା । ତା'ର ପଇସା ଦରକାର, ସେଥିପାଇଁ ସେ ବାହାରକୁ ଗୋଡ କାଢ଼ିଛି । ତା'ର ବେଳେବେଳେ ପ୍ରେମ ଦରକାର, ସେଥିପାଇଁ ସେ ବାହାରକୁ ଗୋଡ଼ କାଢ଼ିଛି ।'

ସନ୍ଧ୍ୟାହେଲେ ସୁନାପିଲାଟି ପରି ସେ ମୋ ରୁମ୍ ଭିତରକୁ ଚାଲିଆସେ । ବଡ ନିର୍ଭୟ ତା' ଚାହାଣି । ବାହାରେ କାନ୍ଦ୍ରା ଅଛି, ସେଥିକୁ ଖାତିର ନାହିଁ । ଗାଁଲୋକେ ଜାଣିଲେ ତାକୁ ଜାତିରୁ ବାସନ୍ଦ କରିପାରନ୍ତି, ସେଥିକୁ ମଧ୍ୟ ତା'ର ଡର ନାହିଁ । ଅନୁଭବ କଲି - ଏଇ ଝିଅଟି ଯେପରି ମତେ ପ୍ରେମ କରିବାକୁ ଯାଉଛି । ଏଇ ବୋଧହୁଏ ମୋର ଅନ୍ତିମ ଦିନ ପର୍ଯ୍ୟନ୍ତ ମୋ ପାଖେପାଖେ ରହିପାରିବ ।

## ବନ୍ଦୀ ପ୍ରେମିକ

ଝାଟି ଆସିଲା । ବାହାରେ କାନ୍ଦ୍ରାର ଖଣ୍ଡିକାଶ । ଝାଟିର ଖୋଷାରେ ପେନ୍ଥାଏ ମଲ୍ଲିଫୁଲ । ବଣମଲ୍ଲୀର ବାସ୍ନାରେ ମୋ ରୁମ୍‌ଟା ହସିଉଠିଲା । ଆଜି ଅନ୍ୟଏକ ଶାଢ଼ିପିନ୍ଧି ଆସିଛି । ସେ କୁଆଡୁ ଜାଣିବ ଯେ ମଡ଼େଲ୍ ହୋଇ ଆସିବାକୁ ହେଲେ ସେଇ ଗୋଟିଏ ଶାଢ଼ିକୁ ଚିତ୍ର ଶେଷ ପର୍ଯ୍ୟନ୍ତ ପିନ୍ଧିବାକୁ ପଡ଼ିବ ବୋଲି ! ମୁଁ ତା' ଶାଢ଼ିକୁ ଧରି କାହିଁକି ସେଟା ବଦଳେଇଲା ବୋଲି ପଚାରିଲି । ସେ ଜବାବ୍‌ରେ କେବଳ ଫିକ୍‌କିନା ହସିଦେଲା । ଯେମିତି ଏ ପ୍ରଶ୍ନଟାର ଉତ୍ତରଦେବାକୁ ସେ ବାଧ୍ୟ ନୁହେଁ ।

ତା' କେଶବିନ୍ୟାସ ମଧ୍ୟ ବଦଳିଯାଇଛି – କିନ୍ତୁ ଏ ବି ବେଶ୍ ଭଲ ଲାଗୁଛି । ଆଜି ସେ କାନରେ ହଳେ ଗିଲିଟିସୁନା ଫୁଲ ଲଗେଇଛି । କଳା ମୁହଁକୁ ବେଶ୍ ମାନୁଛି । ଆଜି ବ୍ଲାଉଜ୍ ପିନ୍ଧିଛି ।

ତଥାପି ତା' ଚିତ୍ର ଆଙ୍କିବାକୁ ବସିଗଲି ।

ଗତ ତିନିଦିନ ମଧ୍ୟରେ ସେ ତିନିରକମ ବେଶରେ ଆସିଛି । ପ୍ରତିଥର ମତେ ଚିତ୍ରରେ କିଛି କିଛି ବଦଳେଇବାକୁ ପଡ଼ିଛି । ବଡ଼ ହଇରାଣ କଲା ଝିଅଟା । ନଗ୍ନଚିତ୍ର କରିଥିଲେ ଏସବୁ ବେଶ ବଦଳେଇବା ନେଇ ଝାମେଲାଟା ନଥାନ୍ତା ।

ସେ ମୋ ଖଟ ଉପରେ ପୂର୍ବଭଂଗୀରେ ଶୋଇପଡ଼ିଲା । ହାତଟା କେମିତି ରଖିବ ମନେପଡ଼ିଲାନି ବୋଧହୁଏ । ଚଟ୍‌କରି ଖଟ ଉପରୁ ଓହ୍ଲାଇ ପଡ଼ି ମୋ ଚିତ୍ରଆଡ଼କୁ ଚାଲିଆସିଲା । ଚିତ୍ରଟିକୁ ଦେଖି ଭଂଗୀଟା ମନେପଡ଼ିଗଲା । ପୁଣି ମନକୁମନ ହସିହସି ଯାଇ ଖଟ ଉପରେ ଶୋଇପଡ଼ିଲା । ଏଥର କିନ୍ତୁ ଭଂଗୀଟା ଠିକ୍ । ମୁଁ ତୂଳୀ ଧରି ଥରେ ଚିତ୍ରକୁ ଓ ଥରେ ତାକୁ ଦେଖି କିଛି ସମୟ ଗୁମ୍‌ମାରି ବସିପଡ଼ିଲି । ଚିତ୍ରରେ ତା'ର ବ୍ଲାଉଜ୍ ନାହିଁ । ବର୍ତ୍ତମାନ ପୁଣି ଗାରଟାଣି ତା' ଚିତ୍ରର ଦେହରେ ବ୍ଲାଉଜ୍‌ଟା ଯୋଡ଼ିବି କି ନାହିଁ ଭାବୁଛି, ସେ ମୋର ଅସୁବିଧା ବୋଧହୁଏ ବୁଝିପାରିଲା ।

ସେ ପୁଣିଥରେ ଖଟ ଉପରୁ ଚିତ୍ର ପାଖକୁ ଚାଲିଆସିଲା । ଚିତ୍ରଟିକୁ ଭଲକରି ଲକ୍ଷ୍ୟକଲା । ତା' ପରେ ବେଶ୍ ସମଝଦାର୍ ଝିଅପରି ମତେ ବୁଝେଇଲା ପରି ଦୃଷ୍ଟିରେ ଚାହିଁଲା ଓ ଖଟ ପାଖକୁ ଯାଇ ବ୍ଲାଉଜ୍‌ଟା ଖୋଲିବାକୁ ଆରମ୍ଭ କଲା ।

ଚମତ୍କାର ବକ୍ଷ ତା'ର ! ଭିତରେ ବ୍ରା ପିନ୍ଧିବାର ଆବଶ୍ୟକତା ନାହିଁ । ସେଇ ଉନ୍ନତ ବକ୍ଷ ଉପରେ ତା' ଶାଢ଼ିଟା ସଜାଡ଼ିନେଇ ସେ ଖଟ ଉପରେ ପୂର୍ବ ଭଂଗୀରେ ଶୋଇପଡ଼ିଲା ।

କାନ୍ଦ୍ରା ବାହାରେ ଖଣ୍ଡିକାଶ ମାରୁଥିଲା । ମୁଁ ଚିତ୍ରଆଙ୍କିଲି । ଅଧଘଣ୍ଟାକ ପରେ କାହିଁକି କେଜାଣି କ୍ଲାନ୍ତ ହୋଇପଡ଼ିଲି ବୋଧହୁଏ ତା'ର ବକ୍ଷକୁ ଦେଖି । ମୁଁ ଆଉ ଆଙ୍କିପାରିଲି ନାହିଁ । ତାକୁ ଚାଲିଯିବାକୁ ଅନୁମତିଦେଲି । ସେ ପୁଣି ବ୍ଲାଉଜ୍ ପିନ୍ଧିବାକୁ ଆରମ୍ଭକଲା । ମୁଁ ବାହାରୁ କାନ୍ଦ୍ରାକୁ ଡାକିଲି ।

## ନଗ୍ନ ମୋନାଲିସା

କାନ୍ଦ୍ରା ଭିତରକୁ ଆସି ଝାଟିକୁ ବ୍ଲାଉଜ୍ ପିନ୍ଧୁଥିବାର ଦେଖି ମତେ କଣେଇ କଣେଇ ଚାହିଁ ହସିଲା । ମୁଁ ତାକୁ ବୁଝେଇଦେଲି ଯେ ତା' ସନ୍ଦେହ ସତ ନୁହେଁ । ଉତ୍ତରରେ ସେ ମତେ ଦୋଷଦେଲା । ତା' କହିବା କଥା ହେଉଛି, ଝାଟିର ଏହାଫଳରେ ମୋ ପାଖକୁ ଆସିବାର ନିଶା କମିଯିବ । ମୁଁ କାନ୍ଦ୍ରାକୁ ପଇସା ଦେଲି ମଦ ପିଇବାକୁ । ସେ ଝାଟିକୁ ଖୁସି କରେଇବାକୁ ସିନେମା ଦେଖେଇ ନେଇଯିବ ବୋଲି ମତେ ଅନୁମତି ମାଗିଲା । ମୁଁ ଅଧିକା କିଛି ପଇସା ଦେଇ ସେମାନଙ୍କୁ ବିଦାୟଦେଲି ।

'ହଁ, ତା'ପରେ ସେ ବଳେବଳେ ବ୍ଲାଉଜ୍‌ଟା ଦେଲା ?' ମୋନାଲିସା ପଚାରିଲେ ।

'କହିଲି ତ, ଠିକ୍ ଆପଣ ଯେମିତି ସେଦିନ ଏଇ ବାଲ୍‌କୋନି ଉପରେ ମୋର ଉପସ୍ଥିତିରେ ସେଇ କାଠକାର୍ବନ ଉହାଡ଼ରୁ ଲୁଗାବଦଳୁଥିଲେ ।'

'ତା' ମାନେ ସେ ଓ ମୁଁ ସମାନ ?'

ମୁଁ ଚିତ୍ରକର, ଆପଣଙ୍କ ରଙ୍ଗକୁ ମୁଁ ଚିତ୍ରରେ ଅନ୍ୟକିଛି ରଙ୍ଗ କରିଦେଇପାରେ । ତେଣୁ ଚିତ୍ରକରର ଆଖିରେ ଦେହ ହିଁ ସମାନ ।'

'ମୁଁ କିନ୍ତୁ ଶାଢ଼ି ବଦଳେଇଲି ଆପଣଙ୍କ continuity ପାଇଁ ନୁହେଁ । ମୂର୍ତ୍ତି ତିଆରି କରିବାରେ ଶାଢ଼ି continuity ର ଆବଶ୍ୟକତା କ'ଣ ? ମୂର୍ତ୍ତିର ତ ଗୋଟାଏ ରଂଗ ।'

'ତେବେ ଆପଣ କ'ଣ ପାଇଁ ଶାଢ଼ି ବଦଳୁଥିଲେ ?'

'ମୁଁ ଦେଖିବାକୁ ଚାହୁଁଥିଲି, ଆପଣ ମୋର କେତେମାତ୍ରାରେ ଆନ୍ତରିକ ହୋଇଛନ୍ତି । ଦେଖିଲି, ଆପଣ ମୋର ପାଖକୁ ଆଦୌ ଆସିନାହାନ୍ତି । ଆପଣ ମୋର ସହିତ ଗଳ୍ପ କରିପାରନ୍ତି ବନ୍ଧୁ ଭାବରେ, କିନ୍ତୁ ସେଇ ଆଦିବାସୀ ଝିଅଟିକୁ ଯେପରି ନିଃସଂକୋଚରେ ଶାଢ଼ି ବଦଳିଲାବେଳେ ଚାହିଁପାରିଲେ ମତେ ସେମିତି ଚାହିଁ ପାରନ୍ତିନି ।'

'ଶାଳୀନତା ବୋଲି କିଛି ଗୋଟାଏ ଅଛିତ ?'

'ଶାଳୀନତା ମୁଁ ଅତିକ୍ରମ କରିପାରେ ! ଆପଣଙ୍କ ସୀମା ବ୍ୟତିକ୍ରମ କରିବାରେ ବାଧା କ'ଣ ?'

'ବାଧା ଏଇ ଯେ ଆପଣ ମତେ ପଇସା ଦେଇଛନ୍ତି - ଆଉ ଝାଟି ପାଖରେ ବାଧା ନାହିଁ - କାରଣ ମୁଁ ତାକୁ ପଇସା ଦଉଚି - ଆସନ୍ତୁ ଆଜି ମୁଁ ଅଳ୍ପ କାମକରି ଆଜି ମୂର୍ତ୍ତିଟାକୁ ମୋ ଷ୍ଟୁଡ଼ିଓକୁ ନେଇଯିବି । କାଲି ସାରାଦିନ Finishing touch ଦେଇ ପଅରଦିନ ଦେଇଯିବି ।'

ମୁଁ କାମ ଆରମ୍ଭ କଲି । ମୋନାଲିସା ଚୁପ୍‌ରହିଲେ, ଆଜି ସେ ବହୁତ ଅନ୍ୟମନସ୍କ । ଆଜି ମୁଁ ତାଙ୍କ ଆଖିକୁ ଦେଖିବାକୁ ପଡ଼ିବ । କାରଣ ଆଜି ମୂର୍ତ୍ତିର ଚକ୍ଷୁଦାନ ଦେବାକୁ ପଡ଼ିବ ।

## ବନ୍ଦୀ ପ୍ରେମିକ

ସେ ଏଇ କେତେଦିନ ମଧ୍ୟରେ ଆଜି ହିଁ ମୋ ଆଖିକୁ ତୀବ୍ର ଦୃଷ୍ଟିରେ ଚାହିଁ ନାହାନ୍ତି । ତଳକୁ ଦୃଷ୍ଟି । ମୂର୍ତ୍ତିରେ ମୁଁ ତାଙ୍କ ଦୃଷ୍ଟି କେଉଁ ଆଡ଼କୁ ରଖିବି ? ନା - ତଳକୁ, ହଁ ସେ ଚାହାନ୍ତୁ ।

'ମୋର କାମ ଅଳ୍ପ ସମୟ ମଧ୍ୟରେ ସରିଗଲା । ମୋନାଲିସାଙ୍କ କାର୍‌ରେ ମୁଁ ତାଙ୍କ ମୂର୍ତ୍ତିଟାକୁ ନେଇ ମୋ ଷ୍ଟୁଡ଼ିଓକୁ ଫେରିଲି ।'

କାନ୍ଦ୍ରା ଆସିଲା ଉପଦେଶ ଦେବା ପାଇଁ । ତା'ର ଜିଦ୍, ଝାଟିକୁ ମୁଁ ଯେପରି ଏଥର ନିରାଶ ନକରେ । ଝାଟି କାଲେ ମତେ କାୟୋମନୋବାକ୍ୟରେ ପାଇବାକୁ ଚାହେଁ । ମୁଁ ବୁଝିକଲି, ଝାଟି ଗୋଟେ ଭଲ ଝିଅ । ତା'ର ଅକ୍ଷତ ଶରୀର ଅକ୍ଷତ ହୋଇ ରହୁ । ପାପୀ ମୁଁ କାହିଁକି ହେବି ? ବରଂ ସେ ତା' ଗ୍ରାମରେ ତା'ରି ସଂପ୍ରଦାୟ ମଧରେ କୌଣସି ଯୁବକକୁ ବାଛିନେଉ ।

କାନ୍ଦ୍ରା ମାନିବାକୁ କିନ୍ତୁ ରାଜି ନୁହେଁ । ସେ ମତେ ଶିଖାଇଲା ଯେ ଝାଟିକୁ ମୋର ଘରେ ଚାକରାଣୀ କରି ରଖିବାକୁ । ଝାଟି ମୋ ପାଇଁ ତା' ଗାଁ, ତା' ପରିବାର ସବୁ ଛାଡ଼ିବାକୁ ରାଜି ।

ମୋର ସହରରେ ଆଉ ଜଣେ ବନ୍ଧୁଘରକୁ ଯିବାର ଥିଲା । ମୁଁ ତାକୁ ବୁଝେଇ କହିଲି - ଝାଟି ସହିତ ମୁଁ ଆଜି ଗୋଟେ ବୁଝାମଣା କରିନେବି । ତା' ସଂଗେ ସଂଗେ ଝାଟିକୁ ମୋ ରୁମ୍‌ରେ ଅପେକ୍ଷା କରିନେବା ପାଇଁ କାନ୍ଦ୍ରାକୁ ନିର୍ଦ୍ଦେଶ ଦେଇ ମୁଁ ବାହାରିଗଲି ।

ସନ୍ଧ୍ୟାବେଳେ ସହରରେ ଏଇ ଜନଗହଳି ଛକ ଉପରେ ମିଷ୍ଟର ପଟ୍ଟନାୟକଙ୍କ ସାଙ୍ଗେ ଦେଖାହେଲା । ସେ ମତେ ପ୍ରତିମୂର୍ତ୍ତି ସମ୍ପର୍କରେ ପଚାରିଲେ । ପଅରଦିନ ଆସି ମୋ ଷ୍ଟୁଡ଼ିଓରୁ ପ୍ରତିମୂର୍ତ୍ତି ନେଇଯିବାକୁ ମୁଁ ତାଙ୍କୁ ଅନୁରୋଧ କଲି । ସେ ବନ୍ଧୁମାନଙ୍କ ସହିତ ବନ୍ଧୁକ ଧରି ଶିକାର କରିବାକୁ ଯାଉଥିଲେ । ତେଣୁ ବେଶି ସମୟ ଗପ୍ପ ହୋଇପାରିଲା ନାହିଁ ।

ମୋର ବନ୍ଧୁଙ୍କ ଘରେ କେଇ ଘଣ୍ଟା ଆରାମରେ କଟିଲା - ହୁଇସ୍କି ଓ ସୋଡ଼ା ସାଙ୍ଗରେ । କାରଣ ଆଜି ରାତିରେ ମୋନାଲିସାଙ୍କ ପ୍ରତିମୂର୍ତ୍ତି ଉପରେ ମତେ କିଛି କାମ କରିବାକୁ ପଡ଼ିବ ନାହିଁ ।

ଆହୁରି ମଧ ଝାଟିର ତୈଳଚିତ୍ର ସମ୍ପୂର୍ଣ୍ଣ କରିବାକୁ ପଡୁନି । କାରଣ ମୁ ବଦ୍ଧପରିକର - ମୁଁ ଆଜି ଝାଟିକୁ ଉପଭୋଗ କରୁଛି ।

ନିଶାରେ ଝୁଲିଝୁଲି ବେଶ୍ ଡେରିରାତିରେ ମୁଁ ଘରକୁ ଫେରିଲି ।

ବାହାରେ ଚୁପଚାପ୍ - କାନ୍ଦ୍ରାର ଘଂଗୁଡ଼ି ଶବ୍ଦ ନାହିଁ । କାନ୍ଦ୍ରା କୁଆଡ଼େଗଲା ? ବୋଧହୁଏ ପିଇବାକୁ ଆଜି ଆଦିବାସୀ ଗାଁଆ ଆଡ଼େ ଚାଲିଯାଇଛି । ସେ କିନ୍ତୁ ରହିବା କଥା । ତା'ମାନେ ଏପର୍ଯ୍ୟନ୍ତ ବୋଧହୁଏ ଝାଟି ଆସିନି - ଅସୁବିଧା କିଛି ହେଲା ବୋଧହୁଏ, ଯେଉଁଥିପାଇଁ କାନ୍ଦ୍ରାର ମଧ ଦେଖାନାହିଁ । କିନ୍ତୁ ଭିତରକୁ ଯିବି କେମିତି ? କାନ୍ଦ୍ରା ପାଖରେ

# ନଗ୍ନ ମୋନାଲିସା

ସେ ଚାବି । ମୁଁ ଦୁଆରମୁହଁରେ ଅପେକ୍ଷାକରି ଠିଆହେଲି ।

ମୋ' ଦେହ ନିଶାରେ ଟଳୁଥିଲା । ସିଧାହୋଇ ଛିଡ଼ାହୋଇ ପାରୁନଥିଲି । କବାଟ ପାଖରେ ପ୍ରାୟ ଦୋହଲିଉଠି କବାଟ ଦେହରେ ଜୋର୍‌ରେ ବାଡ଼େଇ ହେଇଗଲି ।

କବାଟ ଖୋଲା । ତା'ମାନେ ଘରେ ବୋଧହୁଏ ଚୋର ପଶିଥିଲା । ତେବେ କ'ଣ ସବୁ ଚିତ୍ର ମୋର କେହି ଚୋରିକରି ନେଇଯାଇଛି ?

ମୁଁ ଅନ୍ଧାରରେ ଉଣ୍ଡାଳି ସୁଇଚ୍‌ରେ ହାତମାରିଲି । ଧେତ୍‌ତେରି - କରେଣ୍ଟ୍ ନାହିଁ! ତା'ମାନେ ବର୍ତ୍ତମାନ ଅନ୍ଧକାରରେ ବସିବାକୁ ପଡ଼ିବ । କିନ୍ତୁ ଘରଟାକୁ ଖୋଲାରଖି କାନ୍ଦ୍ରା କେମିତି ଚାଲିଗଲା ? ଆଜି ତାକୁ ଚାକିରିରୁ ବରଖାସ୍ତ କରିବାକୁପଡ଼ିବ ।

ଉଣ୍ଡାଳି ଉଣ୍ଡାଳି ଦେଖିଲି, ମୋନାଲିସାଙ୍କ ମୂର୍ତ୍ତି ଠିକ୍ ଯେମିତି ଥିଲା ସେମିତି ଅଛି । ଖାଲି ଯେଉଁ ବାକ୍‌ସ ଉପରେ ଥୁଆହୋଇଥିଲା ସେଇଟା ଟିକେ ଘୁଂଚିଯାଇଛି । ମୁଁ ହାତମାରି ଦେଖିଲି - ଏଇ ତ ମୋନାଲିସାଙ୍କ କପାଳ - ଏଇ ତ ଆଖି ନାକ - ଏଇ ଓଠ - ଏଇ ବେକ ଛାତି । ବାସ୍, ସେଇଠି ଶେଷ । ଚାହିଁଥିଲେ ସମ୍ପୂର୍ଣ୍ଣ ଶରୀରର ପ୍ରତିମୂର୍ତ୍ତି ବନେଇ ହୋଇଥାନ୍ତା କିନ୍ତୁ ଏତେବଡ଼ ମୂର୍ତ୍ତିକୁ ଉଠାଉଠିକରି ନେବାରେ ଅସୁବିଧା ହେବ ବୋଲି ମିଃ ପଟ୍ଟନାୟକ କେବଳ bust କରିବାକୁ ନିର୍ଦ୍ଦେଶ ଦେଇଥିଲେ ।

ମୋନାଲିସା ! ଅନ୍ଧାରରେ ବସିଥାଅ । ଦେଖେ, ଝାଟିର ତୈଳଚିତ୍ର ଅଛି; କିନ୍ତୁ ସେଥିରେ ତା' ଦେହ ବାରିବା ଅସମ୍ଭବ । ମୁଁ ଝୁଲିଝୁଲି ମୋ ଖଟ ପାଖକୁ ଆଗେଇଲି ।

ମନେହେଲା, କିଏ ଜଣେ କମଳ ଘୋଡ଼େଇହୋଇ ଶୋଇଛି । ବାହାରେ ଭାରି ଶୀତ ହେଉଛି - ତେବେ କ'ଣ କାନ୍ଦ୍ରା ଆସି ମୋ ଶେଯରେ ଶୋଇଯାଇଛି ! ମୁଁ କମଳ ଭିତରେ ହାତ ଭର୍ତ୍ତିକଲି । ଇସ୍ ସଂପୂର୍ଣ୍ଣ ଏକ ନଗ୍ନ ନାରୀର ଦେହ ତେବେ -!

କାନ୍ଦ୍ରା ତା'ର କର୍ତ୍ତବ୍ୟ କରିଯାଇଛି । ଝାଟିକୁ ତା' ଜାଗାରେ ପହୁଁଞ୍ଚେଇଦେଇ ଚାଲିଯାଇଛି ନିଜେ ଅନ୍ୟଆଡ଼େ । ବେଶ୍ ତେବେ - ମୁଁ ନିଜକୁ ବସ୍ତ୍ରଶୂନ୍ୟ କରିବାକୁ ଲାଗିଲି । ଉଷୁମ ଦେହ ସହିତ ମୋ ଥଣ୍ଡା ଦେହ ଲାଗିବା ମାତ୍ରେ ସେ ଦେହଟା ଚେଇଁଉଠିଲା ଓ ମତେ ଜାବୁଡ଼ିଧରିଲା ।

ଘନ ଅନ୍ଧାରରେ ମୁଁ ଅନୁଭବ କଲି, ସେ ନାରୀ ଝାଟି ନୁହେଁ । ତେବେ ସେ ନାରୀ କିଏ ? ମୋ ମନରେ, ଶରୀରରେ ତୀବ୍ର ଝଡ଼ ।

ସେ ମୋ ହାତଟା ଦୂରକୁ ଫିଙ୍ଗିଦେଲା । ମୁଁ ଏତେ ନିଶାରେ ଥିଲି ଯେ ମୋ ହାତଟା ଏକବାରେ ଢିଲା ହେଇଯାଇଥିଲା । ତା' ହାତ ଧକ୍‌କାରେ ମୋ ହାତ ଯେମିତି ମୋ ଶରୀରଠାରୁ ଅଲଗା ହୋଇଯାଉଥିଲା ।

ମୁଁ ଭୁଲିଗଲି ସବୁ । ବର୍ତ୍ତମାନ ଗୋଟିଏ ଶେଯରେ ପୁରୁଷ ଓ ନାରୀ । ମୁଁ ବିଳମ୍ବ

କରିବା ଉଚିତ ନୁହେଁ - କିନ୍ତୁ ଓଠରେ ମୋ ଓଠ ଛୁଆଁଇ ଅନୁଭବ କଲି, ଏ ଓଠ ଯେମିତି ଝାଟିର ନୁହେଁ । ହାତମାରି ମୁହଁଟା କଳନା କରିବାକୁ ଚେଷ୍ଟାକଲି । ନା, ଏ ମୁହଁ କୌଣସି ଆଦିବାସୀ ନାରୀର ନୁହେଁ । ଖଟ ଉପରେ ଉଠିବସି ମୁଁ ପଚାରିଲି - 'କିଏ ତୁମେ ?'

ନାରୀର ଦେହରୁ ଘନଘନ ଶ୍ୱାସପ୍ରଶ୍ୱାସ । ମୁଁ ପୁଣି ପଚାରିଲି, 'ତୁମେ ଝାଟି ନୁହଁ, କିନ୍ତୁ କିଏ ତୁମେ ?' ନାରୀ ଶରୀର ଫୁଲି ଫୁଲି କାନ୍ଦିବାକୁ ଆରମ୍ଭକଲା । ଦୁଇହାତ ବଢ଼ାଇ ମତେ ତା' ଆଡ଼କୁ ଟାଣିନେବାକୁ ବସିଲା । ମୁଁ ତା' ହାତଟା ଫିଙ୍ଗିଦେଲି । ମୋର ସେଇ ଏକା ପ୍ରଶ୍ନ, 'କିଏ ତୁମେ ?'

'କେମିତି ତୁମେ ଏଠାକୁ ଆସିଲ ?'

ନାରୀଶରୀର ଶଯ୍ୟା ତ୍ୟାଗ କରି ଲୁଗା ପିନ୍ଧିବାକୁ ଆରମ୍ଭକଲା ।

ମୁଁ କାଳବିଳମ୍ବ ନକରି ସୁଇଚ୍ ଆଡ଼କୁ ଆଗେଇଲି । ନା, ଆଲୁଅ ତ ନାହିଁ । ଝରକା ଖୋଲିଲି, ଷ୍ଟ୍ରିଟ୍ ଲାଇଟ୍‌ର ଗୋଟେ ଧାରା ଆସେ ବୋଲି । ନା, ଷ୍ଟ୍ରିଟ୍ ଲାଇଟ୍‌ର ବଲ୍‌ବଟା ବୋଧହୁଏ ଫିଉଜ୍ ହୋଇଯାଇଛି ।

କେବଳ ଅନ୍ଧାରରେ ଅନୁଭବ କଲି, ଗୋଟିଏ ନାରୀ ମୂର୍ତ୍ତି ବେଶଭୂଷା ହୋଇ ମୋରି ଆଗରେ ମୋ କବାଟ ଖୋଲି ବାହାରକୁ ଚାଲିଗଲା । ସେ ବାହାରକୁ ଯାଇ କବାଟ ଆଉଜାଇଦେଲା । ମୁଁ ଦୌଡ଼ିଗଲି ତାକୁ ଅନୁସରଣ କରିବାକୁ । ନା, ସେ ବାହାରୁ କବାଟ ବନ୍ଦ୍ କରିଦେଇଛି । ମୁଁ ବର୍ତ୍ତମାନ ମୋ ଘରେ ବନ୍ଦୀ । ଝୁଣ୍ଟିପଡ଼ିଲି ମୋନାଲିସାର ମୂର୍ତ୍ତିକୁ । ମୂର୍ତ୍ତିଟା ପଡୁପଡୁ ମୋ ହାତରେ ବଂଚିଗଲା । ଅନ୍ଧାରରେ ସେଇ ମୂର୍ତ୍ତିର ମୁହଁରେ ହାତଦେଇ ଅନୁଭବ କରିପାରିଲି - କିଏ ଆସିଥିଲେ, ଏଇ ଅନ୍ଧାରରେ ମୋ ସହିତ ଦେହର କ୍ଷୁଧା ମେଣ୍ଟାଇବାକୁ । କିନ୍ତୁ ସେ କେବେହେଲେ ମତେ ଇଂଗିତ ଦେଇ ନାହାନ୍ତି ଯେ ସେ ମୋ ପ୍ରତି ଦୁର୍ବଳ ବୋଲି । ବରଂ ସେ ମୋର ଛୋଟ ବଡ଼ ପାପର ହିସାବ ରଖି ମତେ ଏକ ହୀନସ୍ତରର ପ୍ରାଣୀ ବୋଲି ପ୍ରମାଣିତ କରିବାକୁ ଯାଉଥିଲେ । ଅଥଚ ନିଜେ ଆସି ନିଜ ପରିଚୟ ଦେବାକୁ ନାରାଜ ?

ଆଲୁଅ ଜଳିଉଠିଲା । ଆଲୁଅ ଜଳିବା ପାଇଁ ବାହାର ପିଣ୍ଡାରେ ପାଦଶବ୍ଦ ହେଲା । ମନେହେଲା, ପିଣ୍ଡାରେ ଥିବା ସୁଇଚ୍ ବୋର୍ଡ଼ ପାଖରେ କେହି ବୋଧହୁଏ କିଛି କରିଥିଲା । ତେବେ ମୋନାଲିସା ନିଜେ ବୋଧହୁଏ ମେନ୍‌ସୁଇଚ୍ ଅଫ୍ କରି ବସିଥିଲେ ।

ଆଜି ରାତିରେ ହିଁ ମୋନାଲିସାର ମୂର୍ତ୍ତି କରିବାକୁ ପଡ଼ିବ । ମୂର୍ତ୍ତିର ମୁହଁରେ ଆଉ ହାତ ଲଗାଇବାର ଆବଶ୍ୟକତା ନାହିଁ । ମୂର୍ତ୍ତିର ବକ୍ଷଦେଶକୁ ଲକ୍ଷ୍ୟକଲି । କ'ଣ ଦରକାର ଶାଢ଼ିଟା ? bust ଟା ଯଦି ନଗ୍ନ କରିଦିଆଯାଏ ! ମୁଁ ମୂର୍ତ୍ତିଟାକୁ ସଜାଡ଼ିବାକୁ ଆରମ୍ଭକଲି ।

# ନଗ୍ନ ମୋନାଲିସା

ଶେଷବେଳକୁ ଆଗରେ ରଖିଦେଲି ମୋର ସମ୍ପୂର୍ଣ୍ଣ କଳାକୃତି । ନଗ୍ନ ମୋନାଲିସା ବାମସ୍ତନରେ ଏକ କ୍ଷତ ।

ତା'ପରେ ଆଖି ପଡ଼ିଲା ଝାଟିର ତୈଳଚିତ୍ର ଉପରେ - ଘୃଣା ହେଲା ଯେଉଁ ଝିଅ ନଗ୍ନହେବାକୁ ରାଜି ତାକୁ ଲୁଗାରେ ସଜେଇବା କ'ଣ ଦରକାର ! ପୁଣିଥରେ ଝାଟିର ତୈଳଚିତ୍ରକୁ ମୁଁ ସଂଶୋଧନ କଲି ।

ସୂର୍ଯ୍ୟୋଦୟବେଳକୁ ଆଗରେ ନଗ୍ନ ଆଦିବାସୀ କିଶୋରୀ ଏବଂ ତା'ର ବାମ ସ୍ତନରେ ମଧ୍ୟ କ୍ଷତଚିହ୍ନ ।

କ୍ଷତ ଚିହ୍ନ ହିଁ ସମସ୍ତଙ୍କ ପାଖରେ । ସେ ତୈଳଚିତ୍ର ହେଉ, ସ୍କେଚ୍ ହେଉ, water colour ହେଉ - ଅବା ପ୍ଲାଷ୍ଟର ଅଫ୍ ପ୍ୟାରିସ୍‌ର ମୂର୍ତ୍ତି ହେଉ ।

ଦିନ ହୋଇଯାଇଛି । ବାହାରୁ ତାଲାପଡ଼ିଛି - କାଳେ ମୋନାଲିସାକୁ ମୁଁ ଅନୁସରଣ କରିବି - ସେଥିପାଇଁ ସେ ନିଜେ ତାଲା ପକେଇଦେଇ ଯାଇଛି । କନ୍ଦ୍ରା ମୋନାଲିସାଠୁ ମୋଟା ଉତ୍କୋଚ ପାଇ ହୁଏତ ଘରଛାଡ଼ି ଚାଲିଯାଇଛି । ଝାଟିର ସମସ୍ୟା ତ ଅର୍ଥରେ ସମାଧାନ ହୋଇଯିବ ।

କେହି ଆସିବେନି - ମୁଁ ଜାଣେ । ମତେ ବର୍ତ୍ତମାନ ଝରକା ଭାଂଗି ବାହାରକୁ ଚାଲିଯିବାକୁ ହେବ । କାରଣ ଶିଳ୍ପୀକୁ ଶିଳ୍ପୀ ନିଜେ ହିଁ ମୁକ୍ତ କରେ ।

ମୁଁ ଝରକା ଭାଂଗି ବାହାରେ ଛିଡ଼ାହେଲି । ଏକ ସ୍ୱାଧୀନ ପୃଥିବୀ ।

ବାହାରେ ପ୍ରଥମଥର ପାଇଁ ଅନୁଭବ କଲି, ମୋର ଛାତିର ଅଦେଖା କୋଣରେ ଥିବା କ୍ଷତଟା ପ୍ରକୃତରେ ଏତେ ବଡ଼ ନୁହେଁ । ଶିଳ୍ପୀ ହିସାବରେ ମୁଁ ସାରାଜୀବନ ଗୋଟେ ଜରୁରୀ - ମୁଁ ମୋ କଳାକୃତିକୁ ନେଇ ନିବୁଜ କୋଠରି ଭିତରେ ରଖିଦେଇ ସହର ଛାଡ଼ି ଆସିଲି ଏବଂ -

- ସେଇଦିନରୁ ମୁଁ ମୋ ମଡ଼େଲମାନଙ୍କର କ୍ଷତ ଆବିଷ୍କାର କରିବାକୁ ଆଦୌ ଭୁଲିନି ।

# ପଡ଼ିଆ

ପ୍ରେମ - ଯାହାକୁ ଲୋକ ପ୍ରେମ କୁହନ୍ତି - ଯାହାକୁ ଦୁନିଆ ପ୍ରେମ ବୋଲି ନାକଟେକେ ଏବଂ ଯାହା ପ୍ରକୃତରେ ପ୍ରେମ ନୁହେଁ - ସେଇ ସମ୍ପର୍କରେ ଏ ଗଳ୍ପଟି ।

ଆଖି ଆଗରେ ଏକ ଅସରନ୍ତି ପଥ । ଚାହିଁଲେ ମନେହୁଏ ଦିଗ୍‌ବଳୟ ତା'ର ଅୟନାନ୍ତ ଏବଂ ମନେହୁଏ ଏହା ଏକ ଅମଡ଼ାବାଟ ଯାହାର ଦୁଇକଡ଼େ କେବଳ କୃଷ୍ଣଚୂଡ଼ାଗଛ । ଆକାଶ ନୀଳ, ସାଥିରେ କୃଷ୍ଣଚୂଡ଼ା ଫୁଲର ନାଲି ରଙ୍ଗର ଅପୂର୍ବ ମିଶ୍ରଣ - ସେଇ ପଥରେ ଚାଲିବା ପାଇଁ କେବଳ ଗୋଟେ ବୟସ ଅଛି ଏବଂ ସେଇ ବୟସ ଗୋଟେ ଅଦ୍‌ଭୁତ ଖିଆଲ ନେଇ କେତେବେଳେ ରାସ୍ତାକଡ଼ର ପଥରକୁ ଉଠେଇ ଦୂର ବିଲକୁ ଫୋପାଡ଼ି ଚାଲେ ତ କେତେବେଳେ ରାସ୍ତାକଡ଼ର ଆଉଏକ ପଥରକୁ ସିନ୍ଦୂରବୋଲି ଦେବତା କରିଦିଏ ।

ମୋର ବୟସ ସେତେବେଳେ କୃଷ୍ଣଚୂଡ଼ା । ଆଉ କୃଷ୍ଣଚୂଡ଼ା ଖୋଜେ ଗୋଟେ ଚାହାଣି ଯେଉଁ ଆଖିର ମାଲିକାଣୀ କହୁଥିବ - 'ଏ ମା', କେତେ ସୁନ୍ଦର ହେଇଛି ଏ କୃଷ୍ଣଚୂଡ଼ା! ଇଚ୍ଛାହଉଛି ସବୁ ଫୁଲ ତୋଳିନେବାକୁ ।'

ସେମିତି ଗୋଟେ ଝିଅ କୃଷ୍ଣା ହଠାତ୍ ହୋଇଗଲା ମୋ' ବୟସର କେତୋଟି ଲୋହିତ ତାରିଖ ।

'କୃଷ୍ଣା, ତୁମେ - ତୁମେ ମତେ ଭଲପାଇବ ତ ?'

'ପାଇବି ।'

'କୃଷ୍ଣା, ତୁମେ ମୋର ତୃଷ୍ଣା ହେବନି ତ ?'

'ହେବିନି ।'

'କୃଷ୍ଣା, ଏ ପ୍ରେମ କ'ଣ କାହାଣୀ ସୃଷ୍ଟି କରିପାରିବ ?'

'କାହାଣୀ ନୁହେଁ, ଇତିହାସ ।'

'କୃଷ୍ଣା, ଏ ଇତିହାସର ଲେଖକ କିଏ ?'

'ତୁମେ ?'

'କୃଷ୍ଣା, ଏ ଲେଖକ କ'ଣ ଅମର ହୋଇପାରିବ ?'

'ଯେଦିନୁ ତୁମେ ମୋର ଶିଳ୍ପୀ, ସେଦିନୁ ଆମ ପ୍ରେମ ଏକ ଶିଳାଲିପି ।'

ଏ ଥିଲା ସ୍ୱପ୍ନର ରାଜ୍ୟ । ମୁଁ ଫେରିଆସିଲି ତେଲଲୁଣ ଦୁନିଆକୁ ।

'କୃଷ୍ଣି, ତୁ ଯୋଉ ମୋ ସହିତ ଦେଖାକରିବାକୁ ଆସୁଛୁ, ତମ ଘରେ କେହି ଜାଣନ୍ତି ?'

'ବୋଧେ ଜାଣନ୍ତି ।'

'କିଏ କିଏ ଜାଣନ୍ତି ?'

'ମିଟୁଭାଇ ଜାଣେ । ବୋଉ ଜାଣେ । ଆଉ ଆମ ଚାକର ରସିଆ ଜାଣେ ।'

'କ୍ଷତି ନାହିଁ ।'

'ନା ।'

'କିନ୍ତୁ ବାପା ?'

'ବାପାଙ୍କୁ ପଚାରେ କିଏ ? ବୋଉ ଯାହା କହିବ ତାହାହିଁ ହେବ । ବାପା ଖାଲି ବୋଉର ହଁରେ ହଁ ମାରନ୍ତି ।'

'ଆଃ, ତା'ପରେ ପୁଣି ଫେରିଗଲି ମୋର ସ୍ୱପ୍ନର ଦୁନିଆକୁ ।'

'କୃଷ୍ଣା, କୃଷ୍ଣଚୂଡା ଫୁଲସବୁ ମଉଳିବା ଆଗରୁ ଆମର ଏ ବାଟଚଲା ଶେଷହେବା ଉଚିତ ।'

'ଡର ନାହିଁ । ଯେଉଁଠି ବାଟ ଶେଷ, ସେଇଠି କୃଷ୍ଣଚୂଡାର ସିଜନ୍ ଶେଷ ।'

'ଆଉ ଯଦି ତା' ଆଗରୁ ପାଦତଳେ ଶୁଖିଲା କୃଷ୍ଣଚୂଡାର ପାଖୁଡା ଦେଖାଯାଏ ?'

'ମଥାପୋତି ଚାଲିବା ପ୍ରେମର ଲକ୍ଷଣ ନୁହେଁ । ତୁମେ ପାଦକୁ କାହିଁ ଚାହିଁବ ? ପାଦତଳେ ଯଦି କିଛି କଅଁଳ ପାଖୁଡାର ସ୍ପର୍ଶ ମିଳେ ତେବେ ଭାବିନେବ ଆମେ ଆମର ଲକ୍ଷ୍ୟସ୍ଥଳ ସେଇ ସ୍ୱପ୍ନପୁରୀରେ ପହଂଚିବାକୁ ଯେଉଁ ସୁନାମହଲରେ କେବଳ ଆଶାର ଗାଲିଚା ବିଛା ।'

- ଆଶା ତ ବୈତରଣୀ । କିନ୍ତୁ କୁଷି ନିଜକୁ ସମାଜରେ ପ୍ରତିଷ୍ଠିତ କରୁକରୁ ଯଦି ବୟସ ଚାଲିଯାଏ ?'

'ତେବେ ଏତେ ହତାଶ ହେଉପଡୁଛ କାହିଁକି ? ଆଇ.ଏ.ଏସ୍. ପରୀକ୍ଷା ଦଉନା ।'

'ବୟସ ନାହିଁ ।'

'ତେବେ ବ୍ୟବସାୟ କର ।'

'ମୂଳଧନ ନାହିଁ ।'

'ମୋ ମାମୁ ବ୍ୟବସାୟ କରନ୍ତି; କିନ୍ତୁ ସେ ଆରମ୍ଭ କଲାବେଳେ କୁଆଡେ଼ ତାଙ୍କ ପାଖରେ ଶହେଟା ଟଙ୍କା ନଥିଲା ।'

## ବନ୍ଦୀ ପ୍ରେମିକ

'ସେଇଟା ଭାଗ୍ୟର କଥା । ଆଉ ବ୍ୟବସାୟରେ ଉଠି ମଣିଷହବାକୁ ବି ସମୟ ଲାଗିବ ।'

ତେଲଲୁଣ ଦୁନିଆର ଏଇସବୁ ଯୁକ୍ତି ନେଇ ଶହେ କୃଷ୍ଣାର ଚିଠି । ପୁଣି ଗୋଟେ ଚିଠିକୁ ଅପେକ୍ଷାକରି ବସିବାରେ କି ଦୁର୍ବଳତା, କି ଉଦ୍ଦୀପନା ! ଚିଠି ଆସେ - ଚିଠି ନିଜେ ପଢ଼େ ଆଉ 'କାହାକୁ କହିବୁନି' କହି ପ୍ରାୟ ମୋର ସବୁ ବନ୍ଧୁଙ୍କୁ ପଢ଼ାଏ ।

ଚାରିଆଡ଼େ ଚର୍ଚ୍ଚା । ପ୍ରେମ ପ୍ରେମ ପ୍ରେମ । ଏ ସହରରେ ସବୁଠୁ ଚାଂଚଲ୍ୟକର ପ୍ରେମ ଘଟଣା । ଅଫିସର୍ ମହଲରେ ଆଲୋଚନା । କୃଷ୍ଣାର ବାପାଙ୍କ ଅଫିସ୍‌ର ଚପରାଶି, ଅଡ଼ର୍ଲି ସମସ୍ତଙ୍କର ସେଇ ଏକ ଆଲୋଚନା - 'ଆମେମାନେ କୁଆଡ଼େ ପ୍ରେମ କରୁଚୁ ।'

ସେତିକି ନୁହେଁ, ପ୍ରେମିକାର ଭାଇଭଉଣୀ ଓ ଚାକର ରସିଆ ମଧ୍ୟ ସମସ୍ତେ କୃଷ୍ଣା ସହିତ ଥଟ୍ଟାମଜ୍ଜା କରନ୍ତି । ଦିନେ ତ ରସିଆ ଜିଦ୍‌ଧରି ବସିଲା ମୋ ଫଟୋ ଦେଖିବାକୁ । ଅଗତ୍ୟା ମତେ ଗୋଟେ ଫଟୋ ପଠେଇବାକୁ ପଡ଼ିଲା । ରସିଆ ଦେଖି କହିଲା - 'କୁଷିଲୋ, ତୁ ଏକବାରେ ଗଡ଼ ଜିଣିଚୁ ।'

କୃଷ୍ଣାର ସାହସ ହୋଇଗଲା ମୋ ପାଖକୁ ଆହୁରି ଆସିବାକୁ । କଠିନ କବିତାର ଅର୍ଥ ଥରେ ବୁଝିଗଲେ ଯେମିତି ତାକୁ ବାରମ୍ବାର ପଢ଼ିବାକୁ ଇଚ୍ଛାହୁଏ, ଠିକ୍ ସେମିତି ପ୍ରେମର ରହସ୍ୟ ଟିକେ ଖୋଲିଗଲେ ବାରମ୍ବାର ଦେଖାକରିବାକୁ ଇଚ୍ଛାହୁଏ ଉଭୟ ପ୍ରେମିକ ଓ ପ୍ରେମିକାଙ୍କର ।

ଏଣେ ମୋର ବ୍ୟବସାୟ । ନିଜକୁ କିଛି ଗୋଟେ କରିକି, ଦେଖେଇବାକୁ ପଡ଼ିବ । ସବୁବେଳେ ମନରେ ସେଇ ଉତ୍ସାହ - 'ପ୍ରତ୍ୟେକ ସଫଳ ପୁରୁଷ ପଛରେ ଜଣେ ନାରୀର ପ୍ରେରଣା ।'

ପ୍ରେମ - ଯାହାକୁ ଲୋକମାନେ ପ୍ରେମ କହନ୍ତି ଓ ଦୁନିଆ ଯାହାକୁ ପ୍ରେମ ବୋଲି ନାକଟେକେ - ସେଇ ପ୍ରେମର ଗୋଟେ ଅଦ୍‌ଭୁତ ମୋଡ଼ ଅଛି । ସେଇ ମୋଡ଼ରେ ପହଂଚିଲେ ଚାରିଆଡ଼େ କୁହୁଡ଼ି ଘେରିଆସେ । ସେ ବେଳ ଆସିଗଲା । ଦିନେ କୃଷ୍ଣା ସହିତ ଦେଖା । ତା'ର ସେଇ ପ୍ରଶ୍ନ:

'କେମିତି ଚାଲିଛି ?'

'ଭଲ, ମାନେ ବେଶ୍ ଭଲ ।'

'କେତେ ବ୍ୟାଙ୍କ ବାଲାନ୍‌ସ ହେଲାଣି ।'

'ହେଲାଣି ବେଶ୍ ।'

'ଗୋଟେ କାର୍ କିଣିପାରିବ ?'

'ପାରିବି ।'

'ତେବେ ଶୀଘ୍ର କିଣିପକାଅ ।'

'ଲାଭ ?'

'ବାହାଘର ସାଙ୍ଗେ ସାଙ୍ଗେ ହବ ।'

କୁହୁଡି ମାଡ଼ିଆସିଲା । ମୋର ନିଜର ଘର ନାହିଁ । ନିଜର ସମ୍ମାନ, ସ୍ଥିତି କିଛି ପ୍ରତିଷ୍ଠିତ ନୁହେଁ । ଅଥଚ ଗୋଟେ କାର୍ କିଣିଦେଲେ ମୋ' ବାହାଘର ହୋଇଯିବ ମୋର ସ୍ୱପ୍ନସୁନ୍ଦରୀ ସହିତ ? ଅର୍ଥାତ୍ ମୋ ସ୍ୱପ୍ନର ମୂଲ୍ୟ ଗୋଟେ ଆମ୍ବାସାଡର୍ କାର୍ ?

'ନା କୃଷ୍ଣା, କ୍ଷମାକର । ମୁଁ ନିଜର ସ୍ୱପ୍ନକୁ ଏତେ ହାଲୁକା କରିପାରିବିନି ।'

'ପାରିବନି, ମାନେ ?'

'ପ୍ରତ୍ୟେକ ପ୍ରେମର ଗୋଟେ ଆଦର୍ଶ ଥିବା ଉଚିତ ।'

'କିନ୍ତୁ ସେଇ ଆଦର୍ଶ ଲାଗି କିଛି ତେଲଲୁଣ ଦୁନିଆର ପ୍ରତିଷ୍ଠା ତ ଦେଖେଇବାକୁ ପଡ଼ିବ ।'

'କୃଷ୍ଣା, ତମ ମୋ ଭିତରେ କେତେ ଫରକ ! ତମେ ଜଣେ ବଡ଼ ଅଫିସରଙ୍କ ଝିଅ, ଆଉ ମୁଁ ଜଣେ କିରାଣିର ପୁଅ । ଦୁହେଁ ହିନ୍ଦୁ ହେଲେ ବି ତମ ଜାତି ମୋ ଜାତି ଦୁଇଟି ରକ୍ଷଣଶୀଳ ଜାତି - କେହି କାହା ଗର୍ବ ଛାଡ଼ିବାକୁ ନାରାଜ । ତମର ଦୁନିଆ ଡ୍ରଇଂରୁମ୍‌ରେ ଗପ - ସବୁଜ ଲନ୍‌ରେ ଚା'ପିଆ - କ୍ଲବ୍ ନାଇଟ୍‌ରେ ଡିନର ଖିଆ - ବଡ଼ ବଡ଼ ପାର୍ଟିରେ ଯୋଗଦେବା - ଏଇସବୁ ହେଲା ତମ ଦୁନିଆର ଘଟଣା । ଆଉ ମୋ ଦୁନିଆ ବକ୍ସିବଜାର ଛକର ପାନଦୋକାନ ଆଗରେ ଠିଆହୋଇ କାଫ୍‌କା, ସାତ୍ରେ କି କମ୍ୟୁଙ୍କ ସାହିତ୍ୟକୃତି ଉପରେ ଆଲୋଚନା । ଏତେଗୁଡ଼େ ଫରକର ସମାଧାନ ଗୋଟେ ଆମ୍ବାସାଡାର୍ କାର୍ କରିଦେବ ?'

ନା, ଅସମ୍ଭବ ଏ ସ୍ୱପ୍ନ ! ଏ ସ୍ୱପ୍ନ ଧୀରନଈରେ ଭାସିଯାଉଥିବା ଛୋଟ ନଉକା ନୁହେଁ, ଏ ଯେମିତି ବନ୍ୟାଜଳରେ ଭାସିଯାଉଥିବା ଜଣେ କାଠଗଣ୍ଡି - ଯେ କୌଣସି ଚେରମୂଳରେ ଲାଗି ମଣିଷ ହାତପାଆନ୍ତାରେ ପହଂଚିଗଲେ, ତା'ର କର୍ତ୍ତବ୍ୟ ଶେଷହେଲା । ଆମ୍ବାସାଡ଼ାର କାର୍ ମତେ ସେତିକି ସାନ୍ତ୍ୱନା ଦେଇପାରିବନି, ଯେତିକି ବ୍ରେଖଟ୍‌ଙ୍କ ନାଟକ କି ରିଲ୍‌କେଙ୍କ କବିତା ଦଉଛି ।

ମୋ' ଆଗରେ କୁହୁଡ଼ି ।

କୁହୁଡ଼ିରେ ବିତିଗଲା ଗୋଟିଏ ବର୍ଷ । ଗୋଟାଏ ବର୍ଷ ଭାବନା, ଯାହାର ସମାଧାନ କିଛି ନାହିଁ । ଦୁହେଁ ଅପେକ୍ଷା କରୁଥିଲୁ ଦୁହିଁଙ୍କର ନିଷ୍ପତ୍ତିର ପରିବର୍ତ୍ତନ ଲାଗି ।

ଯା ଭିତରେ ଆଉ କେତେ ଉପନାୟିକାଙ୍କ କାହାଣୀ - ଗଜାହୋଇ ଗଛ

ବାନ୍ଧବୀ ଅନିନ୍ଦିତା ପ୍ରେମକଲା ସ୍ୱରୂପକୁ । ଘରେ ସେମାନଙ୍କର
ହୋଇସାରିଲାଣି । କୃଷ୍ଣାର ବାନ୍ଧବୀ ଅନିନ୍ଦିତା ପ୍ରେମକଲା ସ୍ୱରୂପକୁ । ଘରେ ସେମାନଙ୍କର
ହୋଇସାରିଲାଣି । କୃଷ୍ଣାର ବାନ୍ଧବୀ ସତ୍ତ୍ୱେ ଦୁହେଁ ଅବାଧରେ ଏତେ ଗଭୀର ଭାବରେ ମିଳାମିଶା
ତୀବ୍ର ପ୍ରତିବାଦ; କିନ୍ତୁ ସବୁ ବାଧା ସତ୍ତ୍ୱେ ଦୁହେଁ ଅବାଧରେ ଏତେ ଗଭୀର ଭାବରେ ମିଳାମିଶା
କଲେ ଯେ ଦିନେ ଅନିନ୍ଦିତା ଆବିଷ୍କାର କଲା, ସେ ମାଆ ହେବାକୁଯାଉଛି । ବେଶ୍, ସବୁ
ସମାଧାନ ହୋଇଗଲା । ସେମାନଙ୍କ ଦୁଇ ଆତ୍ମାକୁ ଏକ କରିବାକୁ ଆଉଏକ ଆତ୍ମାର
ସଂଚାରହେଲା – ଆମ୍ଭାସାତ୍ତାର କାର୍ ନୁହେଁ ।

ମୁଁ ଭାବିଲି – ଏ ପ୍ରେମ ନୁହେଁ, ଏ କେବଳ ଦେହର କ୍ଷୁଧା । ଦେହର କ୍ଷୁଧା ଉପରେ
– ମୁଁ କାଫକା ପଢ଼େ, ରିଲ୍‌କେ ପଢ଼େ – ଦସ୍ତୋଭସ୍କି ପଢ଼େ । ସ୍ୱରୂପ ଓ ଅନିନ୍ଦିତା ସେସବୁରୁ
କ'ଣ ବୁଝିବେ ? ସେମାନେ କେବଳ ଚିହ୍ନନ୍ତି ଦେହକୁ ।

କିନ୍ତୁ ସ୍ୱରୂପ ଅନିନ୍ଦିତାର ବାହାଘର ବୋଧହୁଏ କୃଷ୍ଣା ଉପରେ ଆଉ ଏକ ପ୍ରଭାବ
ବିସ୍ତାର କରିଥିଲା । ବୋଧହୁଏ ତା'ର ମନେହେଲା କିମ୍ବା ତାକୁ ମନେକରେଇ ଦିଆଗଲା
ଯେ ପ୍ରେମିକକୁ ସ୍ୱାମୀ ରୂପରେ ପାଇବାକୁ ଯାଠୁ ଆଉ ସହଜ ଉପାୟ ନାହିଁ ।

ହଁ ଠିକ୍ କଥା । ତା'ର ଧାରଣା ସେୟା ବୋଲି ମୁଁ ଅଳ୍ପଦିନ ପରେ ଜାଣିପାରିଲି,
ଯେତେବେଳେ ମତେ ସେ ଏକାନ୍ତରେ ଦେଖାକରିବାକୁ ଚାହିଁଲା । ପ୍ରେମରେ ସବୁବେଳେ
ପୁରୁଷ ଆମେ ଏକାନ୍ତରେ ଦେଖାକରିବାକୁ ଚାହେଁ ନାରୀ ସହିତ । ନାରୀ ପେଟରେ ଭୋକ
ଥିଲେ ବି ମୁହଁରେ ଲାଜ ଥାଏ । ତେଣୁ ଉପରକୁ ଅନିଚ୍ଛା ଦେଖେଇହେଲେ ବି ଶେଷରେ
ନାରୀ ବେଳେ ବେଳେ ଧରାଦିଏ ।

ଏଠି କିନ୍ତୁ ଠିକ୍ ଅଲଗା । କୃଷ୍ଣା ଚାହୁଁଛି ଗୋଟେ ରୁମ୍ ଆରେଂଜ୍ କରିବାକୁ, ଯେଉଁଠି
ଆମେ ଦୁଇଘଣ୍ଟା ବସିବା ନିରୋଳାରେ – ବେଶ୍, ତା'ରି ଇଚ୍ଛା ହିଁ ପୂରଣ ହେଲା ।

'କୁହ କିଷୁ – ଏମିତି ରୁମ୍ ଭିତରେ ଦେଖାକରିବାକୁ କାହିଁକି ମନହେଲା ?'

'ହେଲା – ସବୁଦିନେ କ'ଣ ବାହାରେ ଦେଖା କରୁଥାନ୍ତେ ?'

'କିନ୍ତୁ ତମକୁ ଡର ଲାଗୁନି ?'

'ଡର କାହିଁକି ଲାଗିବ ? ତମେ ତ ମତେ ଭଲପାଅ ।'

'ଭଲପାଏ ବୋଲି ତୁମର କ'ଣ କାହାକୁ ଡର ନାହିଁ – ବାପାଙ୍କୁ, ବୋଉଙ୍କୁ...'

'ଡର ଅଛି ନିଶ୍ଚୟ – କିଏ କାହା ବାପାବୋଉଙ୍କୁ ନଡରେ ? କିନ୍ତୁ ତା'ଠୁ ବେଶି
ଡର, ତମକୁ ହରେଇବାର ଡର ।'

'ବ୍ୟସ୍ତ ହୁଅନା କିଷୁ – ମୁଁ ବଂଚିଥିବାଯାଏ ଭଲପାଉଥିବି ।'

'ଖାଲି ଭଲପାଇଲେ ତ ହବନି – ମୋର କେତେକ ପ୍ରୋବ୍‌ଲେମ୍...'

'କ'ଣ ସବୁ...'

'ଶୁଣିବ ? କାଲି ବାପାବୋଉଙ୍କ ଯୁକ୍ତିତର୍କ ଶୁଣିଲି ।'

'କିଏ ଘରରେ କିଏ ଏଗେନ୍‌ଷ୍ଟରେ ?'

'ଦି'ଜଣଯାକ ଏଗେନ୍‌ଷ୍ଟରେ ଯୁକ୍ତି କରୁଥିଲେ ମାମୁଙ୍କ ସାଙ୍ଗରେ । ମାମୁ ବାହାରୁ କୋଉଠି କ'ଣ ଶୁଣି ବୋଉକୁ ଆସି କହିଲେ - 'କୃଷି ଯାହାକୁ ଭଲପାଉଛି - ପିଲାଟି ଭଲ - ସେଇଠି ତା' ବାହାଘର କରିଦଉନୁ ?'

'ବୋଉ କ'ଣ କହିଲେ ?'

'ବୋଉ ବାପା ଦୁହେଁ କହିଲେ - ଆମର ଗୋଟେ ଷ୍ଟେଟସ୍ ଜ୍ଞାନ ନାହିଁ ?'

'ତାଙ୍କର ତ ଷ୍ଟେଟସ୍ ଜ୍ଞାନ ଅଛି - ତମର କ'ଣ ଅଛି ?'

'ତାଙ୍କର ଝିଅ ଯେତେବେଳେ ମୋର ବି ଥିବା ଉଚିତ - ସେଇଥିପାଇଁ ତ କହିଲି କାର୍‌ଟା କିଣିବାକୁ ।'

'କାର୍ କିଣିଦେଲେ ଏତେ ଫରକ୍‌ର ପାଚେରି ଭାଙ୍ଗିଯିବ ?'

'ଭାଙ୍ଗିଯିବ ।'

ମୁଁ ଚୁପ୍ ରହିଲି - ମୋ ଆଖି ଆଗରେ ସେଇ କୁହୁଡ଼ି, ସେଇ ଆତ୍ମଆଲୋଚନା, ସେଇ ସଂଶୟ । କିଷ୍ଣୁ ପୁଣି ଆରମ୍ଭକଲା-

'ଜାଣ, ଅନିନ୍ଦିତାର ବାହାଘର ସ୍ୱରୂପ ସାଙ୍ଗରେ ହଉଛି ।'

'ଆଉ କାହିଁକି ବାହାଘର ହେବାକୁ ବାଧ ତା'ର କାରଣ ମଧ ମୁଁ ଜାଣିଛି ।'

'ମୋର ମନେହୁଏ, ଅନିନ୍ଦିତା ଠିକ୍ ନିଷ୍ପତ୍ତି ନେଇଛି । ତାଙ୍କର ପ୍ରୋବଲେମ୍ କିଛି ନଥିଲା - କେବଳ ପ୍ରେମ କରୁଛନ୍ତି ବୋଲି ଦୁଇଘର ବାହାଘର କରେଇବାକୁ ରାଜି ନଥିଲେ ।'

'ଆମର ତ ପ୍ରୋବଲେମ୍ ଅନେକ ।'

'ସମସ୍ୟା ସମାଧାନ କରିବାକୁ ହୋଇଥାଏ । ଆମକୁ ମଧ ସେମିତିକିଛି ଗୋଟେ ଡିସିସନ୍ ନେବାକୁ ପଡ଼ିବ ।'

ମୋ ଆଖିର କୁହୁଡ଼ି ଭିତରେ ଗୋଟେ ଆଗ୍ନେୟଗିରିରୁ ଉଦ୍‌ଗୀରଣ ଆରମ୍ଭ ହେଲା । ସେଇ ଉତ୍ତପ୍ତ ଲାଭାରେ, କାଫ୍‌କା, ରିଲକେ, ର୍‌ୟାବୋ, ଦସ୍ତୋଭସ୍କି ଭାସିଗଲେ । ଆଉ ମୁଁ ମଧ ମନେମନେ ଠିକ୍‌କଲି ଯେତେବେଳେ ଗ୍ଲାସ୍‌ଟା ପୂରିଗଲାଣି, ଉଛୁଳିପଡ଼ିବା ପୂର୍ବରୁ ଓଠ ଲଗେଇ କିଛି ପିଇଦେବା ଉଚିତ । ସେଇ ମୁହୂର୍ତ୍ତରେ ମୁଁ ହୋଇଗଲି ସ୍ୱରୂପ ଓ ସେ ଅନିନ୍ଦିତା - ମୁଁ ସମ୍ପୂର୍ଣ୍ଣ ଅନ୍ୟମନସ୍କ ଏକ ଉତ୍ତପ୍ତ ଲୁହା ଓ ସେ ଏକ ମାଟିର ଛାଂଚ ।

ମୋର ପ୍ରଥମ ଅଭିଜ୍ଞତା ଏକ ବିରାଟ ଅସଫଳତା । ନିଜର ପୌରୁଷକୁ ଧିକ୍କାର ଦବା ପୂର୍ବରୁ ଦେଖିଲି, ତା' ଆଖିରେ ଏକ କୁହୁଡ଼ି ଜକେଇଆସୁଛି ।

ସେଇଦିନ ସନ୍ଧ୍ୟାବେଳେ ସେ ମତେ ଫୋନ୍‌ରେ କହିଲା - 'ତମକୁ ସିନା ମୁଁ ସ୍ୱରୂପ

## ବନ୍ଦୀ ପ୍ରେମିକ

ଅନିନ୍ଦିତା କଥା କହିଲି - କିନ୍ତୁ ମୋର ମନେହେଉଛି ତମେ କେବେ ବାପା ହୋଇପାରିବନି ।'

ଏପରି ଏକ ଅସଫଳ ସମାପ୍ତିକୁ ନେଇ ମୁଁ ସେଇ ବକ୍‌ସିବଜାର ଛକରେ ଛିଡ଼ାହୋଇ ଭାବିବାକୁ ଲାଗିଲି - 'ପ୍ରେମ - ଯାହାକୁ ଲୋକ ପ୍ରେମ କୁହନ୍ତି ଏବଂ ଯାହା ପ୍ରକୃତରେ ପ୍ରେମ ନୁହେଁ - ସେଠି ଯଦି ମୁଁ ଦୈହିକ ଅସଫଳତାରେ ଜର୍ଜରିତ, ମୋର ଦୁଃଖ କରିବାର କିଛି ନାହିଁ ।'

ବକ୍‌ସିବଜାର ଉପରଦେଇ କୋଡ଼ିଏଟି ଶ୍ରାବଣ ଗତିକରିଗଲା । ବକ୍‌ସିବଜାର ରାସ୍ତା ଉପରେ ଚାଲୁଥିବା ଲୋକମାନଙ୍କ ବୟସ ଓ ଚେହେରା ପରିବର୍ତ୍ତନ ହୋଇଗଲା । କୃଷ୍ଣା ହଜିଗଲା - ବକ୍‌ସିବଜାରଠାରୁ ଅନେକ ଦୂରରେ ତା'ର ସ୍ଥିତି - ଏମିତିକି ବକ୍‌ସିବଜାରରେ ଛିଡ଼ାହୋଇ ତା' ବିଷୟରେ  ଆଲୋଚନା କରିବା ମଧ୍ୟ ବନ୍ଦ ହୋଇଗଲା ।

ବକ୍‌ସିବଜାର ବଦଳିଲା ନାହିଁ ଏବଂ କୋଡ଼ିଏ ବର୍ଷ ପରେ ପୁଣି କୃଷ୍ଣା - ଏମିତି ଚେହେରା ସେ ହେପାଜତରେ ରଖିଛି ଯେମିତି ବକ୍‌ସିବଜାର ପରି ସେ ବି ବଦଳିବାକୁ ରାଜି ନୁହେଁ ।

ମୋର ଗର୍ବ - ଯା' ହେଉ ମୋ ପ୍ରେମିକା ତା'ର ଅବଶିଷ୍ଟ ଯୌବନ ମୋ ଲାଗି ସଂଚୟ କରି ରଖିଛି ।

ତା'ର ରିକ୍‌ସା ଅଟକିଗଲା ।

ସେ କହିଲା - 'ମୁଁ ଠିକ୍ ଜାଣିଥିଲି କୋଡ଼ିଏ ବର୍ଷ ପରେ ଆସିଲେ ବି ତମେ ଏଇଠି ଠିଆହୋଇଥିବ ।'

ସତେଯେମିତି ସେ ଭାବୁଥିଲା, ତା' ବିରହରେ ମୁଁ ଗତ କୋଡ଼ିଏ ବର୍ଷ ହେବ ଏଇଠି ଛିଡ଼ାହୋଇଛି ।

ସେ କହିଲା - 'ଇଂଲଣ୍ଡରୁ ମାସକ ପାଇଁ ଆସିଛି । କାଲି ଟେଲିଫୋନ୍ ଡାଇରେକ୍ଟରି ଦେଖୁଥିଲି - ଦେଖିଲି, ସେଥିରେ ତମ ନାଁ ଅଛି । ଯା ଭିତରେ କ'ଣ ଟେଲିଫୋନ୍ ନେଲଣି କି ?'

'ହଁ କିଷ୍ଟୁ, ଏଠି କଥାବାର୍ତ୍ତା କରିବା ଅପେକ୍ଷା ବରଂ କାଲି ସକାଳେ ମତେ ତୁ ଟେଲିଫୋନ୍‌ରେ ଡାକ, ନହେଲେ ମତେ ତୋ' ନମ୍ବର ଦେ - ମୁଁ ଡାକିବି ।'

କିନ୍ତୁ ଯେତେବେଳେ ବାଇଶ ବର୍ଷ ତଳେ ମୋ ଘରକୁ ଆସିଥିଲା ସେତେବେଳେ ମୁଁ ଗୋଟେ ଭଡ଼ାଘରେ ରହୁଥିଲି । ପୁରୁଣାକାଳିଆ ଚାଳଘର - ପୁଣି ପାଣିପାଇପ୍ ନାହିଁ, ଇଲେକ୍ଟ୍ରିକ୍ ନାହିଁ । ଏବେ ହଠାତ୍ ସେ ମୋ ଘରକୁ ଚାଲିଆସିଲା - ଦି' ମହଲା କୋଠା - ଟେଲିଫୋନ୍ - ଫ୍ରିଜ୍ - ଟିଭି - ଭିସିଆର - ସୁସଜ୍ଜିତ ଡ୍ରଇଂରୁମ୍ - ତିନିଶ ୱାଟର ଅଡ଼ିଓ ସିଷ୍ଟମ୍ -ମୋର ପାଂଚୋଟି ସନ୍ତାନ - ମୋର ସଦାସଜାଗ ଗୃହିଣୀ - ମୋ ଘର ଆଗରେ

## ପଢ଼ିଆ

ଗୋଲାପଗଛ – କ୍ରୋଟନଗଛ ଏବଂ ସର୍ବୋପରି ମୋ ଘର ଆଗରେ ପାର୍କିଂ କରାହୋଇଥିବା ମୋ ଆମ୍ବାସଡରର କାର୍ ।

କିନ୍ତୁ ମୁହଁରେ ପରାଜୟର ଗ୍ଲାନି । ତା' ସହିତ ମୋର ସମ୍ପର୍କ ଛିନ୍ନ ହେବା ପରେ ମୋର ଏତେସବୁ ବୈଷୟିକ ଉନ୍ନତି ହେବା ଉଚିତ ନଥିଲା ବୋଲି ସେ ଭାବୁଥିଲା । ପାଂଚମିନିଟ୍ ମଧ୍ୟ ସେ ମୋ ଘରେ କି ମୋ ପରିବାର ସହିତ ବସିପାରିଲାନି । ତରତରରେ କହିଲା –

'ବାହାରେ କୋଉଠି ଦେଖାହୋଇ ପାରିବନି ?'

'ମୁଁ ଖବର ଦେବି ।'

'ଶୀଘ୍ର – ମୁଁ ମାତ୍ର ଆଉ ସାତଦିନ ଅଛି ।'

'କାଲି ହିଁ ବନ୍ଦୋବସ୍ତ କରୁଛି ।'

ମୋର ସ୍ୱପ୍ନର କୃଷ୍ଣା ଆସିବ ଆଜି ଏକ ସୁନ୍ଦର ସୁସଜ୍ଜିତ ହୋଟେଲ୍‌ର ଏ.ସି. ରୁମ୍ ଭିତରକୁ । ଇଚ୍ଛା ହେଉଥିଲା କୋଠରିକୁ କେବଳ କୃଷ୍ଣଚୂଡ଼ାରେ ସଜେଇଦେବାକୁ ।

କିନ୍ତୁ ହାୟ, କୃଷ୍ଣଚୂଡ଼ାର ଋତୁ ଚାଲିଯାଇଛି । ତେବେ ଯାହେଉ ରୁମ୍‌ର ପର୍ଦ୍ଦା ଓ ଚାଦର ସବୁ ନାଲିରଙ୍ଗର, ଚଳିବ ।

କୃଷ୍ଣି କହିଛି, ତା'ର ଜଣେ ବାନ୍ଧବୀ ଘରୁ ସେ ଆସିବ ନିଜେ । ଏଥର କିନ୍ତୁ ସେ ଖୁବ୍ ବେଶି ସମୟାନୁବର୍ତ୍ତୀ । ଦୁଇମିନିଟ୍ ଆଗରୁ ଚାଲିଆସିଛି ।

କିନ୍ତୁ ଆସିବାର ପନ୍ଦର ମିନିଟ୍ ପରେ ବି କୋଠରି ଭିତରେ ଏକ ଦୁର୍ବିସହ ନୀରବତା । ମୁଁ ହିଁ ନୀରବତା ଭଂଗକଲି –

'ତେବେ ତୁମେ ଖୁବ୍ ଆରାମରେ ଅଛ ନା ? ତମ ସ୍ୱାମୀ ଆସିଛନ୍ତି ?'

'ନା, ମୁଁ ଏକା ଆସିଛି ।'

'ତମ ବାପାବୋଉଙ୍କ ଖବର କ'ଣ ?'

'ବୋଉ ଦୁଇବର୍ଷ ତଳେ ଚାଲିଗଲା । ବାପା ଅଛନ୍ତି ଯେ ପାରାଲିସିସ୍ ।'

'ଆଉ ମିଟୁଭାଇ...'

'ସେ ଲକ୍ଷ୍ନୌରେ – ଘରେ କେହି ନାହାନ୍ତି ।'

'ଏତେଦିନ ହେଲା ଆସିଲଣି, ମତେ ଆଗରୁ ଖବରଦେଲନି ?'

'ଯଦି ଜାଣିଥାନ୍ତି ତମର ଟେଲିଫୋନ୍ ଅଛି ତେବେ ପ୍ରଥମଦିନରୁ କଣ୍ଟାକ୍ଟ କରିଥାନ୍ତି ।'

ସେ କିଛି ସମୟ ଚୁପ୍ ରହି କହିଲା – 'ଆଉ ତୁମ ଖବର କ'ଣ ?'

ଏତେ ଗର୍ବ ତା'ର ଏଯାଏଁ ଯେ 'ତମେ ବି ତ ବେଶ୍ ଆରାମରେ ଅଛ' ବୋଲି କହିବାକୁ ନାରାଜ ।

ସେ କହିଲା – 'ଏଥର ଆସିଛି କିନ୍ତୁ ଗୋଟେ ମିସନ୍‌ରେ ।'

'କ'ଣ ସେଟା ?'

'ମୁଁ ସମସ୍ତଙ୍କ ଉପରେ ପ୍ରତଶୋଧ ନେବି ।'

ପଚାରିବାକୁ ଇଚ୍ଛା ହେଉଥିଲା – 'ଇଂଲଣ୍ଡ ଛାଡ଼ିବା ପୂର୍ବରୁ ଏମିତି ମିସନ୍ ଥିଲା ନା ମତେ, ମୋ ଘର ଓ ମୋ ପରିବାର ଦେଖିଲାପରେ ଏ ମିସନ୍‌ର ସୃଷ୍ଟି ହେଲା – ? ନା, ପଚାରିଲିନି – ତାକୁ ଖୁବ୍ ବେଶି ବାଧିବ ।

'କାହା ଉପରେ ପ୍ରତିଶୋଧ ?'

'ବାପା, ବୋଉ, ମିଟୁଭାଇ ଆଉ ଭଉଣୀମାନଙ୍କ ଉପରେ – ଯେଉଁମାନେ ତମକୁ ବାହାହେବାକୁ ମତେ ମନାକରିଥିଲେ – ସମସ୍ତଙ୍କ ଉପରେ ।'

'ଏମିତିକି ମୋ ଉପରେ ।'

'ନା, ତମକୁ ତ ମୁଁ ଭଲପାଏ – ଏବେ ବି ସେତିକି ଭଲପାଏ । ଏମିତି ସକାଳ ନାହିଁ, ସଂଜ ନାହିଁ, ଦିନ ନାହିଁ କି ରାତି ନାହିଁ, ଯେଉଁଦିନ ତମକଥା ମୋର ମନେନପଡ଼ିଛି । ତମର ମନେପଡ଼େ ?'

'ଏତିକି ପ୍ରଭେଦ ଆମ ଭିତରେ । ପୁରୁଷମାନେ ଗର୍ଭଧାରଣ କରିବା ପାଇଁ ଦାୟୀ, କିନ୍ତୁ ସ୍ତ୍ରୀମାନେ ଗର୍ଭବତୀ ହୁଅନ୍ତି । ପୁରୁଷ ପିତା ହେବାକୁ ଯାଉଛି ଜାଣି ମଧ୍ୟ ବିଶେଷ କିଛି ଚିନ୍ତା କରେନି । କିନ୍ତୁ ସ୍ତ୍ରୀର ସବୁବେଳେ ଚିନ୍ତା – ସନ୍ତାନ ହେବ ନା ଗର୍ଭପାତ ହେବ । ସନ୍ତାନ ହେଲେ ଲାଳନପାଳନ ଚିନ୍ତା ଆଉ ଗର୍ଭପାତ ହେଲେ ଅନୁତାପ । ବେଶ୍ ରବୀନ୍ଦ୍ରନାଥଙ୍କ ଭାଷା – 'ତୋମାର ହୋଲୋ ସୁରୁ ଆମାର ହୋଲୋ ସାରା ତୋମର ମନେ ଭୟ ଆମାର ଭୟ ହାରା ।'

ସେ ଏତେଗୁଡେ କଥା ଏକା ସଂଗେ ହଜମ କରିପାରିଲାନି ବୋଧହୁଏ କିମ୍ବା ହଜମ କରିବାକୁ ଚେଷ୍ଟାକଲାନି । ବରଂ ସେ ମୋ ମୁହଁକୁ ଚାହିଁଥିଲା ଅତି ଅଶ୍ଳୀଳ ଭାବେ । ଅତି ତୃଷ୍ଣା, ଅତି କ୍ଷୁଧା ।

ମୁଁ ତା' ଦେହରେ ହାତ ଦେଲି ଏବଂ They opened to me like spikes of hyacinth.

ସେ କହୁଛି – 'ଆଉ କ'ଣ ଲାଭ – ବୟସ ଚାଲିଗଲା । ମୁଁ ବି ଆଉ ମାଆ ହୋଇପାରିଲିନି । ଅପରେସନ୍ କରିଦେଇଛି ।'

ଏଇ କଥା ପରେ ତାକୁ ଅନେକ କଥା କହିବାର ଥିଲା; ଯଥା – 'ଏଇନା ତୁମେ କ'ଣ ତୁମ ବାପାବୋଉଙ୍କର ଝିଅ ନୁହଁ ? ଏଇନା କ'ଣ ତୁମେ ତୁମ ବାପାବୋଉଙ୍କ ଷ୍ଟେଟସ ଦେଖୁନ ?'

'ଥରେ ତମେ ଅସ୍ୱୀକାର କରିଥିଲ ଏଇଆ କହି ଯେ, ମୁଁ ବାପା ହେବାକୁ ଅଯୋଗ୍ୟ - ମୋର ପୌରୁଷ ନାହିଁ ।'

ଏବଂ ଆଜି ପୁଣିଥରେ ତୁମେ ଫେରିଆସିଛ ମୋ ପାଖକୁ -ତୁମ ନଗ୍ନ ଦେହ ନେଇ, ଯେଉଁ ଦେହ ଆଜି ମାଆହେବାକୁ ଅଯୋଗ୍ୟ ... ଇତ୍ୟାଦି ।'

କିନ୍ତୁ ତା' ମନକୁ ଦୁଃଖଦେଲା ପରି କିଛି କହିଲିନି । କିନ୍ତୁ ହୃଦୟକୁ ଦୁଃଖ ଦେଲାପରି ବ୍ୟବହାର କଲି । ମୁଁ ତା' ଦେହରେ ମୋ ଦେହ ମିଶାଇବା ପୂର୍ବରୁ କହିଲି - 'ମୋର ବେଳ ନାହିଁ କିମ୍ବା ଇଚ୍ଛା ନାହିଁ । ତୁମେ ଲୁଗାପଟା ସଜାଡ଼ିନିଅ । ତମକୁ ମୁଁ ଛାଡ଼ିଦେଇ ଆସିବି ।'

ତା' ଆଖିରେ କୌଣସି କ୍ଷୁଧିତ ବାଘୁଣୀର ଚାହାଣି ନାହିଁ । ବରଂ ଏକ ଆହତ ହରିଣୀର କରୁଣତା - ମୋ ସ୍ୱପ୍ନର ଆଦର୍ଶ ଏବେ ବି ବଂଚିଛି - କାଫକା, ରିଲ୍‌କେ, ବ୍ରେଖଟ୍, ଦସ୍ତୋଭସ୍କି ଏବେ ବି ବଂଚିଛନ୍ତି ।

ସେ ଓ ମୁଁ ଚାଲିଛୁ ଗୋଟିଏ ଗାଡ଼ିରେ ।

ଦୁହେଁ ନୀରବ ।

ସବୁ ଗଳ୍ପ ଶେଷ ହୋଇଯାଇଛି କିମ୍ବା ବର୍ତ୍ତମାନ ଯେଉଁ ଗଳ୍ପ ଚାଲିଛି ସେଥିରେ ନାୟିକା କୃଷ୍ଣା ନୁହେଁ । ମୋରି ଆମ୍ବାସାଡ଼ର କାର୍‌ରେ ଆମେ ଦୁହେଁ - ଏଇ ଗାଡ଼ିକୁ ଟିକେ ଆଗରୁ କିଣିଥିଲେ ହୁଏତ କୃଷ୍ଣାର ସମସ୍ତ ସମସ୍ୟାର ସମାଧାନ ହୋଇଯାଇଥା'ନ୍ତା ।

ସ୍କୁଲକୁ ଯାଉଥିବା ପିଲାଙ୍କ ଭିଡ଼ ରାସ୍ତାରେ - ଦୁହେଁ ଦେଖୁଛୁ ପିଲାଙ୍କୁ, ହୁଏତ ନିଜ ନିଜ ପିଲାମାନଙ୍କ ବିଷୟରେ ଚିନ୍ତା କରୁଥିଲୁ - ନା, ମୁଁ ଭାବୁଥିଲି ଅଲଗା କଥା... ।

'ପ୍ରେମ - ଯାହାକୁ ଲୋକ ପ୍ରେମ କହନ୍ତି - ଯାହାକୁ ଦୁନିଆ ନାକ ଟେକେ ଏବଂ ଯାହା ପ୍ରକୃତରେ ପ୍ରେମ ନୁହେଁ ସେଇଟା କ'ଣ ?'

ଦୂବହୀନ ପଡ଼ିଆ ।

# ପ୍ରେମିକାର କ୍ଲିନିକ୍

କେବଳ ପରିଚତ ନାରୀ ବା ବାଳିକାମାନଙ୍କ ଦେହକୁ ଲକ୍ଷ୍ୟକଲେ ଜଣାଯିବ ଯେ କଟକ ଉପରଦେଇ ଇତିମଧ୍ୟରେ ଦଶଟି ବର୍ଷ ବିତିଗଲାଣି । ନଚେତ୍ କଟକ, ମୁଁ ପ୍ରେମକଲାବେଳେ ଯେମିତି ଥିଲା, ଆଜିବି ଅବିକଳ ସେଇଆ ଅଛି । ଦଶବର୍ଷ ପରେ ଫେରିଆସି ମତେ କଟକ ନୂଆ ଲାଗୁନି । ଯେଉଁ ରାସ୍ତା ଓ ମୋଡ଼ମାନଙ୍କରେ ମୋର ସେଇ ଚଉଦବର୍ଷ ବୟସର ପ୍ରେମିକା ସହିତ ଦେଖାହଉଥିଲା, ଆଜି ଲାଗୁଛି ମତେ ହୁଏତ ସେ ସେଇଠି ଅପେକ୍ଷାକରିଛି । କିନ୍ତୁ ନା, ଏ ମଧ୍ୟରେ ଦଶବର୍ଷ ବିତିଗଲାଣି ଓ ବାରବର୍ଷ ପର୍ଯ୍ୟନ୍ତ କୌଣସି ପତିକୁ ଅପେକ୍ଷା କରିବା ପରି ସତୀ ଆଜିକାଲି କାହାନ୍ତି !

ପରିଚିତ ବଜାରର ରାସ୍ତା । ପରିଚିତ ଦୋକାନ ଓ ଦୋକାନୀ । ପରିଚିତ ଅସଭ୍ୟ ବାଟୋଇଙ୍କ ଭିତରେ ଚାଲୁଚାଲୁ ହଠାତ୍ ମତେ ଗୋଟିଏ ଅପରିଚିତ ନେମ୍‌ପ୍ଲେଟ୍ ପାଖରେ ଛିଡ଼ାହେବାକୁ ପଡୁଛି । ନାମର ଗୋଟିଏ ଅଂଶ ନିହାତି ପରିଚିତ ଓ ଅନ୍ୟ ଅଂଶଟା ଏକ ନୂତନ ସଂଯୋଗ । ହୋଇପାରେ ମୋ ପ୍ରେମିକା । ଅବଶ୍ୟ ବର୍ତ୍ତମାନ ପରର ସ୍ତ୍ରୀ । ଖବର ପାଇଥିଲି, ସେ ବିବାହ କରିଛି । କିନ୍ତୁ ମୋ ପୌରୁଷ ପ୍ରତି ସନ୍ଦେହ କରି ସେ ମତେ ତଡ଼ିଦେବା ପରେ ମୋର ତା' ବିଷୟରେ କୌଣସି ଖବର ରଖିବାର ଆବଶ୍ୟକତା ନଥିଲା । ମୁଁ ଚାଲିଯାଇଥିଲି ଅନ୍ୟଏକ ସହରକୁ ମୋ ପୌରୁଷ ଜାହିର କରିବାକୁ ।

ଏଣେ ଏକ ନୂତନ ସଂସାର । ବାଃ, ଏ ଅପରିଚିତ ଭଦ୍ରମହିଳା ଯଦି ମୋ ପ୍ରେମିକା ହୋଇଥାନ୍ତି ଓ ମୁଁ ଯଦି ତାଙ୍କୁ ଚକିତ କରି ତାଙ୍କ କ୍ଲିନିକ୍‌ରେ ହଠାତ୍ ପଶିଯାଇ ତାଙ୍କ ସ୍ୱାମୀଙ୍କ ପାଖରେ ବସି କୌଣସି ରକ୍ତ ଅଥବା ମଳ ନମୁନାପାତ୍ର ନେଇ ଆଲୋଚନା କରୁଥିବାର ଦେଖେ ତେବେ କେମିତି ମତେ ଲାଗିବ ? କେମିତି ତାଙ୍କୁ ଓ ତାଙ୍କର ସ୍ୱାମୀଙ୍କୁ ମଧ୍ୟ ଲାଗିବ ?

ମୁଁ ପର୍ଦ୍ଦା ଆଢ଼େଇ ଭିତରକୁ ପଶିଲି । ସେ ମତେ ଚାହିଁଲା । ବାସ୍ତବିକ ତା' ବକ୍ଷ ଉପରଦେଇ ଦଶଟି ବର୍ଷ ବିତିଯାଇଛି । ସେ ମତେ ଚାହୁଛି, 'ଓ ଆୟେ ହମ୍‌ରେ ଘର ଖୁଦାକି କୁଦ୍‌ରତ୍ ହୈ । କଭି ହମ୍ ଉନକୋ କଭି  ଅପନେ ଘରକୋ ଦେଖ୍‌ତେ ହେଁ ।'

ସେ – 'ଆରେ...'

ଚୌକି ଛାଡ଼ିବି କି ନାହିଁ ଚିନ୍ତା କରିପାରୁନି । ଆଲମିରା ଦୁଇଟା ମଝିରେ ଲଗାହୋଇଥିବା ପର୍ଦ୍ଦାଆଡ଼କୁ ଚାହୁଁଛି । ଭିତରଟା ବୋଧହୁଏ ରୋଗୀ ଦେଖିବା ଚେମ୍ବର । ମୁଁ ଆଶାକରୁଛି, ହୁଏତ ତା'ର ସ୍ୱାମୀ ଅଛି ।

ମୁଁ - 'ଆଉ କିଏ ଅଛନ୍ତି ?'

ସେ - 'ନା, କେହି ନାହାନ୍ତି । ବାସ୍ । ହଠାତ୍ ?'

ମୁଁ - 'ହଠାତ୍...'

ମୁଁ ତା ଆଖିକୁ ଚାହିଁଛି । ସେ ମୋ ସହିତ ଆଖିମିଳେଇବାକୁ ନାରାଜ । କାଚ ଉପରେ ପଡ଼ିଥିବା ଓଦାରକ୍ତକୁ ଦୋହଲାଇ ଶୁଖାଉଛି ।

ସେ କାଚଟିକୁ କାଗଜରେ ଗୁଡାଉଛି । ମୋ ଆଡେ ଚାହିଁବାର ଇଚ୍ଛା ଅଛି । କିନ୍ତୁ ଯେହେତୁ ସେ ଜାଣେ ଯେ ମୁଁ ତା' ଆଡ଼େ ଚାହିଁଥିବି, ସେହେତୁ ଚାହୁଁ ନାହିଁ ।

ମୁଁ - 'ତୁମ ସ୍ୱାମୀ ?'

ସେ - 'ଆସିବେ । ମେଡ଼ିକାଲ୍ ଯାଇଛନ୍ତି ।'

ମୁଁ - 'ତମେ ବି ଚାକିରି କରିଛ ?'

ସେ - 'ହଁ, ଛାଡ଼ । ତୁମ କଥା କୁହ ।'

ମୁଁ - 'ଆମେ ଦୁହେଁ ବି ଚାକିରି କରିଛୁ ।'

ସେ - 'ଆରେ ହଁ ଭୁଲିଯାଇଥିଲି । ସେ କେମିତି ?'

ମୁଁ - 'ସୁନ୍ଦର । ସବୁ ଭଲ । ଆମ ପ୍ରେମର ଖବର ସେ ଜାଣେ ।'

ସେ- 'ତମେ କହିଛ ?'

ମୁଁ - 'କିଛି ମୁଁ ଆଉ କିଛି ବଜାରରୁ ଖବର ପାଇଛନ୍ତି ।'

ସେ ହସୁଛି । ଖୁବ୍ ଗୋଟେ ମିଠାହସ । ଅତୀତର କୌଣସି ମୁହୂର୍ତ୍ତର ହସ ସହିତ ତାକୁ ତୁଳନା କରିପାରୁନି । ସବୁ ପ୍ରାୟ ଭୁଲିଯାଇଛି । କେତେଟା ମଞ୍ଜି ମଞ୍ଜି କଥା ଖାଲି ମନେଅଛି ।

ମୁଁ - 'ତମ କଥା କୁହ । ସେ କେମିତି ?'

ସେ - 'ମନ୍ଦ ନୁହେଁ । ଆମ ପ୍ରେମ ଖବର କିଛି ଜାଣନ୍ତିନି ।'

ମୁଁ - 'ତମେ କହିନ ?'

ସେ - 'ମୁଁ ଲୁଚେଇଛି ଆଉ ସେ ଲାଜରେ ପଚାରନ୍ତି ନାହିଁ ।'

ମୁଁ - 'ପିଲାପିଲି... !'

ସେ - 'ତିନି । ତମର ?'

ମୁଁ - 'ମୋର ପରିବାର ଭଗବାନ ନିୟନ୍ତ୍ରଣ କରିଛନ୍ତି ।'

ସେ – 'ମାନେ ?'

ମୁଁ – 'ଏବେ ବି କିଛି ନାହିଁ ।'

ସେ ମୋ ଆଡ଼କୁ ଚାହୁଁଛି । ବିଜୟିନୀର ଚାହାଣି । ସେ ଯେ ମତେ ବାହା ନହୋଇ ଜୀବନରେ ସବୁଠାରୁ ଏକ ମୂଲ୍ୟବାନ ନିଷ୍ପତ୍ତି ନେଇଛି, ସେଥିପାଇଁ ହୁଏତ ସେ ନିଜ ଅକଲକୁ ସାବାସ ଦେଉଛି । ମୁଁ କିନ୍ତୁ ଦୃଷ୍ଟି ଏଡେଇ ନେଉନି । କାରଣ ମତେ ତା' ମୁହଁକୁ ଚାହିଁବା ଦରକାର ।

ସେ – 'ତୁମର ଚାକିରି ?'

ମୁଁ – 'ଆମେ ଦୁହେଁ ଚାକିରି କରିଛୁ । ସେ ମୋଠୁ ବେଶି ଦରମା ପାଏ ।'

ସେ – 'ବୟସ କେତେ ହେଲାଣି ତାଙ୍କର ?'

ମୁଁ – 'ତାଙ୍କ ହିସାବ କହିବି ନା ମୋ ହିସାବ କହିବି ?'

ସେ – 'ମୁଁ ପଚାରୁଥିଲି, ବାହାଘର କେତେବର୍ଷ ହେଲାଣି ?'

ମୁଁ – 'ଦଶବର୍ଷ ।'

ସେ – 'ଏଇଠୁ ଯାଇ ସିଧା ବାହାହୋଇ ପଡ଼ିଲ ?'

ଏଥର ସେ ମତେ ଭଲଭାବରେ ଚାହିଁଛି । ମୁଁ କେତେମାତ୍ରାରେ  ଅକୃତଜ୍ଞ ସେଇଟା ସେ ଯେମିତି ମାପିବାକୁ ଚାହୁଁଛି । ମୋର ଦୃଷ୍ଟି ଫେରେଇନେବାର ମାନେ କିଛି ନାହିଁ । ମୋର ଏଇ ପର ସ୍ତ୍ରୀ ପାଖରେ କିଛି ଲୁଚେଇବାର ନାହିଁ । କାରଣ ସେ ଯେତେ ପର ସ୍ତ୍ରୀ ହେଉନା କାହିଁକି, ସେ ମୋର ପ୍ରେମିକା ଥିଲା । ତା' ସହିତ ମୋର ଅନେକ ନିର୍ଜନ ମୁହୂର୍ତ୍ତ କଟିଛି । ଯୌବନକୁ ଉପଭୋଗ କରିବାର ଯଜ୍ଞରେ ନିଜନିଜକୁ ଆହୁତି ଦେଇଛୁ । ସେ ସବୁବେଳେ ଚାହିଁଛି, ମୋଠୁ କିଛି ଗୋଟେ ପାଇବ । ପାଇବାରେ ତା'ର  ତୃପ୍ତି ନାହିଁ । ସବୁ ପାଇବା ପରେ...ମୁଁ ଗଳା ଝାଡ଼ିଲି ।

ମୁଁ – 'ଆଉ କ'ଣ କରିଥାଆନ୍ତି, ତୁମ ବିରହରେ ବସି କବିତା ଲେଖିଥାଆନ୍ତି ?' ତେବେ ଦଶବର୍ଷ ତଳେ ତା'ର ମୋର ପ୍ରଥମ ଭେଟ ହେଲା । ତୁମେ ଚାଲିଗଲାପରେ ସେ ଆଗେ ମୋ ପାଖକୁ ଆସି ଆଶାବାଡ଼ି ହୋଇଗଲା । ପ୍ରକୃତରେ ସାତବର୍ଷ ତଳେ ବାହାହୋଇଛି ।

ସେ – 'ମଝିରେ ତିନିବର୍ଷଟା...।'

ମୁଁ – 'ତାକୁ ନିରାପଦ ଦୂରତ୍ୱରେ ରଖିଥିଲି । ମନରେ ଡର ମଧ୍ୟ ଥିଲା, କାଳେ ସେ ତୁମ ପରି ମୋ ପୌରୁଷକୁ ସନ୍ଦେହ କରି ଧୋକା ଦେବ ।'

ସେ – 'ତା'ପରେ ହେଲା ବାହାଘର ।'

ଆଖିରେ ଦୁଷ୍ଟାମି ହସ; କିନ୍ତୁ ଏଥର ସେ ଖୋଜୁଛି ମୋ ଆଖିରେ ହତାଶାର ଛାଇକୁ ।

ମୁଁ ତା' ଆଗରେ ହତାଶହେବାର ଆବଶ୍ୟକତା ଦେଖୁନି।

ମୁଁ - 'ଯେମିତି ହୁଏ। ତା'ପରେ ହନିମୁନ୍। ମୁଁ ତୁମକୁ କଥା ଦେଇଥିଲି କାଶ୍ମୀର ଯିବାକୁ, କିନ୍ତୁ ଗଲି ତା' ସାଂଗରେ।'

ସେ - 'ମୁଁ ବି ଯାଇଥିଲି ଯେ।'

ମୁଁ - 'ଭଲହେଲା, କିନ୍ତୁ ମୋର ତୁମ କଥା ବହୁତ ମନେପଡୁଥିଲା।'

ସେ - 'ମୋର ବି।'

ମୁଁ - 'ତା'ପରେ ଧୀରେଧୀରେ ଭୁଲିଯିବାକୁ ଆରମ୍ଭକଲ ?'

ସେ - 'ତା'ପରେ ଏକ ପରେ ଏକ ହୋଇ ତିନୋଟି। ଘର ଜଂଜାଳରେ ସବୁ ଯାଏ। ସ୍ୱପ୍ନ, ଭାବାବେଗ ସବୁ ପାଉଁଶ।'

ମୁଁ - 'କିନ୍ତୁ ମୋର ଏବେ ବି ସେଇ କଥା ମନେପଡୁଛି। ତମେ ତ ଜାଣ, ମୋର ଜଂଜାଳ ନାହିଁ।'

ସେ - 'ପରୀକ୍ଷା କରିଥିଲ ?'

ଆସିଗଲା ପୁଣି ଡାକ୍ତରୀ କଥା। ମୁଁ ଜାବାବ୍‌ଦେବା ପୂର୍ବରୁ ରାସ୍ତାକୁ ଚାହିଁଛି। ଆଉଜଣେ ଭଦ୍ରମହିଳା ଭିତରକୁ ପଶୁଛି। ଗର୍ଭବତୀ। ହାତରେ କ'ଣ ସବୁ ନେଇ ପରୀକ୍ଷା କରିବା ପାଇଁ ଟେବୁଲ୍‌ରେ ରଖିଲେ। ବ୍ୟାଗ୍‌ରୁ ଟଙ୍କା ବାହାରକରି ଆଗରେ ରଖୁଛନ୍ତି। ପୁଣି ଦୁଇପଦ କଥା କହି ବାହାରକୁ ଚାଲିଯାଉଛନ୍ତି। ଦଶଟଙ୍କିଆ ନୋଟ୍‌ଟା ଟେବୁଲ ଉପରେ ଥୁଆହୋଇଛି। ତାକୁ ସେଇଟା ନେଇ ନିଜ ବ୍ୟାଗ୍‌ରେ ରଖିବାକୁ ଲାଜଲାଗୁଛି।

ମୁଁ - 'ତୁମର ରୋଜଗାର ବେଶ୍ ହେଉଛି।'

ସେ - 'ଚାଲିଛି। ହଁ କ'ଣ କହିଲନି ? ପରୀକ୍ଷା କରିଥିଲ ?'

ମୁଁ - 'ବହୁବାର, ବହୁ ଡାକ୍ତରଙ୍କ ପାଖରେ।'

ସେ - 'କ'ଣ କହୁଛନ୍ତି ସେମାନେ ?'

ମୁଁ - 'ସେ ଡାକ୍ତରୀ ଟର୍ମ ସବୁ ମୋର ମନେରହେ ନା। ତେବେ ତାଙ୍କର ବିଶେଷକିଛି ଅସୁବିଧା ନାହିଁ। ଥରେ କ୍ୟୁରେଟିଂ ହୋଇଯାଇଛି।'

ସେ - 'ତା'ହେଲେ ତ ଠିକ୍ ଅଛି।'

ସେ ବ୍ୟସ୍ତହେଉଛି ଦୋକାନ ବନ୍ଦକରିବାକୁ। ପରାମର୍ଶ ସମୟର ସୀମା ଆହୁରି ଅନେକ ଅଛି। ତା'ମାନେ ସେ ମତେ ଏଡେଇଯିବାକୁ ଚାହେଁ। ମୁଁ କିନ୍ତୁ ଯାଉନାହିଁ। ହଁ, ହୋଇପାରେ ତା' ସ୍ୱାମୀର ଆସିବାବେଳ ହୋଇଗଲାଣି। ସେ ଘଡ଼ି ଦେଖୁଛି ଓ ଧୀରେଧୀରେ ଟେବୁଲ ଉପରେ ଥିବା ଇତସ୍ତତଃ ଜିନିଷଗୁଡିକ ସଜାଡୁଛି।

ମୁଁ - 'କ'ଣ ଯିବାଲାଗି ଭାରି ବ୍ୟସ୍ତ ?'

ସେ - 'ନାଇଁ ଯେ, ମୋର ଟିକେ କାମ ଅଛି ।'

ମୁଁ - 'ତା'ହେଲେ ମୁଁ ଯାଏ ।'

ସେ - 'କେବେ ଆସିବ ?'

ମୁଁ - 'ତୁମ ସୁବିଧା ଦେଖ । ତମେ କୁହ ।'

ସେ - 'ତୁମେ କେଉଠି ଅଛ ?'

ମୁଁ - 'ହୋଟେଲ୍‌ରେ ।'

ସେ ଚିନ୍ତାକରୁଛି ବର୍ତ୍ତମାନ ପରିସ୍ଥିତିରେ ମୋ ସହିତ ଦେଖାକରିବାକୁ ହୋଟେଲ୍‌କୁ ତା'ର ଯିବା ଭିତରେ, କେତେବେଳେ ସେ କଡ଼ିକାଠ ଆଡ଼କୁ ଚାହୁଁଛି, ପୁଣି କେତେବେଳେ ପରଦାକୁ ।

ସେ ଚିନ୍ତାକରୁଛି, ବର୍ତ୍ତମାନ ପରିସ୍ଥିତିରେ ମୋ ସହିତ ଦେଖାକରିବାକୁ ହୋଟେଲ୍‌କୁ ତା'ର ଯିବା ଉଚିତ କି ନାହିଁ । ତା' ଆଖିର ଚାହାଣି ହଜିଯାଇଛି କ୍ଲିନିକ୍ ଭିତରର କାନ୍ଥ ଭିତରେ । କେତେବେଳେ ସେ କଡ଼ିକାଠ ଆଡ଼େ ଚାହିଁଛି, ପୁଣି କେତେବେଳେ ପରଦାକୁ ।

ସେ - 'ଏଇ ଟାଇମ୍‌ରେ । ସେ ନଥାନ୍ତି ପ୍ରାୟ, କିନ୍ତୁ ରୋଗୀ ଅନେକ ।'

ମୁଁ ଭାବୁଛି, ତାକୁ ଡାକିନେବାକୁ । ବର୍ତ୍ତମାନ ଯଦି ତା'ର ନିରୋଳାରେ କଥାବାର୍ତ୍ତା କରିବା ଦରକାର, ତେବେ ସେ ନିର୍ବିଘ୍ନରେ ହୋଟେଲ୍‌ରେ ମୋର ରୁମ୍‌କୁ ଆସିପାରେ; କିନ୍ତୁ ତାକୁ ଡାକିବା କ'ଣ ଉଚିତ ହେବ ? ଯେତେବେଳେ ସେ ମତେ ପ୍ରଥମେ ଉପେକ୍ଷା କରିଛି, କିନ୍ତୁ ଏଇ ତ ମ୍ୟାଗ୍‌ନାନିମିଟି ।

ମୁଁ - 'ମୁଁ ଯଦି ରୋଗୀ ହେଇ ତୁମକୁ କଲ୍ ଦିଏ ।'

ସେ ହସୁଛି । ମୋ କଥାକୁ ସେ ଭଲ ପାଉଥିଲା । ଆଜି ବି ଭଲପାଉଛି । ମୋ ସହିତ ଗଳ୍ପ କରିବାର ଢଂଗରୁ ଜଣାପଡୁଛି, ସେ ଯେପରି ଅନେକ ଦିନ ହେଲା ତା' ସ୍ୱାମୀ ସହିତ ଗଳ୍ପ କରିନି ।

ସେ - 'ଗଳ୍ପ କରିବାକୁ ସମୟ ମିଳେ ନା ?'

ମୁଁ - 'ନା, ମୁଁ କହିଲି - ପ୍ରଥମେ ପ୍ରଥମେ ।'

ସେ - 'ସେତେବେଳେ ମଧ୍ୟ ନୁହେଁ ।'

ମୁଁ - 'ଆଚ୍ଛା ଠିକ୍ ଅଛି, କାଲି ମୁଁ ପୁଣି ଆସୁଛି ।'

ମୁଁ କଟକର ରାସ୍ତା ଉପରକୁ ଉଠିଆସି ପୁଣି ମୋ ପ୍ରିୟ ସଡକକୁ ଦେଖିବାକୁ ଲାଗିଛି । ପରଦିନ କିନ୍ତୁ ରବିବାର । ମୋର ହଠାତ୍ ମନେପଡ଼ିଯାଉଛି । ମୁଁ ପଛରୁ ଡାକି ତାକୁ କହିଦେବାକୁ

ଚାହୁଁଛି । ମାତ୍ର ସେ ରିକ୍‌ସାରେ ବସି ଚାଲିଯାଇଛି । ପରଦିନ ଆସିବି ?

ବଜାର ବନ୍ଦ୍ । ରାସ୍ତା ଫାଙ୍କା । କ୍ଲିନିକ୍ ଖୋଲା । ଭିତରେ ସେ ଏକା ବସିଛି । ଆଜି ତା'ର କମ୍ପାଉଣ୍ଡର ନାହିଁ କି ଦାସୀଟା ବି ନାହିଁ ।

ମୁଁ - 'ଆଜି କ୍ଲିନିକ୍ ବନ୍ଦ୍ କରିନ ?'

ସେ - 'କାମ ଥିଲା ।'

ତା' ମୁହଁରେ ଗୋଟିଏ ଅଲଗା ଭଂଗୀ । ମତେ କଥା ଦେଇଛି ବୋଲି ଯେ କ୍ଲିନିକ୍ ଖୋଲିଚି, ସେ କଥା ସ୍ୱୀକାର କରିବାକୁ ତା' ଆଖି ରାଜି ନୁହେଁ । ଆଗରେ ମାଇକ୍ରୋସ୍କୋପ୍ । ଗୋଟିଏ ଆଖି ବନ୍ଦ୍ କରି ସେ ଆଡ୍‌ଜଷ୍ଟ୍ କରିବାକୁ ଚେଷ୍ଟାକରୁଛି । କାହାର ରକ୍ତ ?

ମୁଁ - 'ମୋତେ ବୋଧହୁଏ କଥା ଦେଇଥିଲ - ସେଇଥିପାଇଁ ଖୋଲିବାକୁ ପଡ଼ିଲା ?'

ସେ - 'କଥା ବି ଦେଇଥିଲି - କାମ ବି ଥିଲା । ହଁ, କ'ଣ କୁହ ଯାହା କହିବାର ଅଛି ।'

ମୁଁ - 'ଏ କଥା ଏକ ଡାଇଲଗ୍‌ରେ ସେଦିନ ବି ତମେ କହୁଥିଲ ।'

ସେ - 'ତୁମର ମୋ ସହିତ ଗପିବାକୁ କିଛି କଥା ନାହିଁ ?'

ମୁଁ - 'ହଁ, ଅଛି ଅନେକ । ଏଇ ମନେକର ମୋର ପିଲାପିଲି ହେଉ ନାହାନ୍ତି - ସେ ବିଷୟରେ ବି ତ କଥାବାର୍ତ୍ତା କରାଯାଇପାରେ ।'

ଏଥର ସେ ଟିକେ ହସୁଛି । ମୁଁ ବର୍ତ୍ତମାନ ତା' ପରିଧି ଭିତରକୁ ପଶୁଛି । ସେ ମୋ ସହିତ ବର୍ତ୍ତମାନ ବୋହୂଚୋରି ଖେଳିପାରେ । ମତେ ଏମିତିକିଛି ପ୍ରଶ୍ନ କରିପାରେ, ଯାହାର ଉତ୍ତର ମୁଁ ଦେବାପାଇଁ ଅକ୍ଷମ ହେବିନାହିଁ ।

ସେ - 'ପରୀକ୍ଷା କରିଥିଲ ?'

ମୁଁ - 'ତା'ର ସବୁ ପରୀକ୍ଷା କରିଛି ।'

ସେ - 'ତମର ?'

ମୁଁ - 'କରିନି । କାରଣ ଏ ପର୍ଯ୍ୟନ୍ତ ସେ ମୋ ପୌରୁଷ ପ୍ରତି ସନ୍ଦେହ କରିନି ।'

ସେ - 'ପିଲାଟା ତା'ର ଯେତିକି ଦରକାର, ତୁମର ବି ସେତିକି ଦରକାର । ତୁମେ ନିଜକୁ ଯେ ମୁଁ ବାପ ହେବାପାଇଁ ଅକ୍ଷମ, ସେଇ ଦିନଠୁ ।'

ସେ - 'ସେତେବେଳେ ସବୁ ପିଲାଳିଆ କଥା । ସେତେବେଳେ ମୁଁ ତ ଡାକ୍ତର ହୋଇନଥିଲି । ମୁଁ କ'ଣ ବୁଝିପାରୁଥିଲି ?'

ମୁଁ - 'ଏବେ ?'

ସେ - 'ପରୀକ୍ଷା ନକଲେ କିଛି କହିପାରିବିନି ।'

## ବନ୍ଦୀ ପ୍ରେମିକ

ମୁଁ ବର୍ତ୍ତମାନ ଭାବୁଛି, ତିନିବର୍ଷ ତଳେ ଆଉ ଗୋଟିଏ କ୍ଲିନିକ୍‌ରେ ମୁଁ ପରୀକ୍ଷା କରେଇଥିଲି । ଡାକ୍ତରଙ୍କର ମନ୍ତବ୍ୟ ଦେଖିଲି । ତା' ପରେ ଘରକୁ ଫେରି ହଠାତ୍ ଅନ୍ୟମନସ୍କ ହୋଇଯିବା ଦେଖି କେହି ତ କହିପାରିଲେନି ସନ୍ତାନ ନ ହେବାର କାରଣ କ'ଣ ?

ମୁଁ – 'ମତେ ବର୍ତ୍ତମାନ ପରୀକ୍ଷା କରିବ କି ?'

ସେ – ହଁ, ତୁମେ ଯଦି ଭାବ ଯେ ମୁଁ ଜଣେ ଡାକ୍ତର ।'

ମୁଁ – 'ମୋ ଭାବିବା ସହିତ ତୁମ ବିଦ୍ୟାର ସମ୍ପର୍କ ନାହିଁ । ଡାକ୍ତର ନ ହୋଇଥିଲେ କୌଣସି ପୁରାତନ ପ୍ରେମିକା ପାଖକୁ ଏଇ ଉଦ୍ଦେଶ୍ୟ ନେଇ କେହି ଆସେ ?'

ସେ ଉଠିପଡ଼ି ଭିତରକୁ ଯାଉଛି । କଳ ଖୋଲି କ'ଣ ଗୋଟାଏ ଧୋଇବାର ଶବ୍ଦ ହେଉଛି । ପୁଣି ହାତଧୋଇବାର ଶବ୍ଦ । ତା'ପରେ ହାତରେ ଗୋଟିଏ ଛୋଟ ଶିଶି ନେଇ ଫେରୁଛି । ପେନ୍‌ସିଲିନ୍ ଇଂଜେକ୍‌ସନ୍ ଶିଶି । ଖୁବ୍ ସଫା ହୋଇଛି ।

ସେ – 'ଏଇଟା ନିଅ । କାଲି ଏଜାକୁଲେସନ୍ ଫ୍ଲୁଇଡ୍ ଏଥିରେ ଆଣିବ । ମନେରଖ, ଘଣ୍ଟାକ ଭିତରେ ଆଣିବ ।'

ମୁଁ – 'ଚେଷ୍ଟା କରିବି ।'

ମୁଁ ଓ ସେ ଅନ୍ୟାନ୍ୟ ଛୋଟ ଛୋଟ ଘଟଣା ଦୁର୍ଘଟଣା ସମ୍ପର୍କରେ ବର୍ତ୍ତମାନ ଗଳ୍ପ କରୁଛୁ । ସେ ବାରଟା ବାଜିବା ପର୍ଯ୍ୟନ୍ତ ଘରକୁ ଯିବନି । କାରଣ ଆଜି ତା'ର ସ୍ୱାମୀ ଘରେ ନାହାନ୍ତି । ଦିନ ବାରଟାବେଳକୁ ସେ ଖୁବ୍ ବେଶି ଇମୋସନାଲ ହୋଇଯାଇଛି । ମତେ ଛାଡ଼ିବାକୁ ନାରାଜ । ପ୍ରେମିକାମାନଙ୍କର ସବୁଠୁ ବଡ଼ ଯାତନା ଏଇ ଯେ ଯାହା ପ୍ରେମିକ ପାଖରେ ପାଇଥାନ୍ତି, ତା ସ୍ୱାମୀ ପାଖରୁ ପାଆନ୍ତିନି ବୋଲି ଚାଲିଯାଆନ୍ତି ।

ହାତରେ ଶିଶି ଧରି ମୁଁ ହୋଟେଲକୁ ଫେରିଆସୁଛି । ଦିନସାରା ଅସ୍ୱସ୍ତି । ପାଖ ମାଗାଜିନ୍ ଷ୍ଟଲରୁ କେତୋଟି ସିନେମା ପତ୍ରିକା ଆଣି ତାରକାମାନଙ୍କ ଅର୍ଦ୍ଧନଗ୍ନ ଦେହକୁ ଲକ୍ଷ୍ୟକରୁଛି । ହୋଟେଲ ବୟକୁ ଡାକି କୌଣସି କଲ୍ ଗାର୍ଲର ସମ୍ବାଦ ନେଉଛି । ନା, କେହି ନାହିଁ । ଅସମ୍ଭବ । ନିଜକୁ କ୍ଷୁଧିତ କରିବାର ପରିବେଶ ହିଁ ନାହିଁ ।

ସକାଳ ନଅଟାରେ ସେ ତା'ର କ୍ଲିନିକ୍‌ରେ ଥିବ । ଅସମ୍ଭବ ସମୟ । ସାରା ରାତି ଯେତେବେଳେ କେବଳ ବିରକ୍ତ ହୋଇ କଟିଛି ସକାଳର କାମନା ବୋଲି ଗୋଟିଏ ଜିନିଷ କୁଆଡୁ ମନକୁ ଆସିବ ? ଖାଲି ଶିଶି ଧରି ମୁଁ କ୍ଲିନିକ୍ ବାରଣ୍ଡାକୁ ଉଠୁଛି । ସେ ମୋ ଅପେକ୍ଷାରେ ହିଁ ବସିଛି ।

ସେ – 'ଆଣିଛ ?'

ଶିଶିଟା ପରିପୂର୍ଣ୍ଣ ଅବସ୍ଥାରେ ଦେଖିବାକୁ ତା'ର ଯେପରି ପ୍ରବଳ ଇଚ୍ଛା ।

ମୁଁ - 'ନା, ମୋ ଦ୍ୱାରା ସମ୍ଭବ ନୁହେଁ । ତୁମେ ଅନ୍ୟ କୌଣସି ଟେକ୍‌ନିକାଲ...'

ସେ - 'ଆଉ କ'ଣ ଉପାୟ, ଏଇଟା ତ ସବୁଠୁ ସରଳ । ପ୍ରଥମେ ତ ସିମେନାଲ ଟେଷ୍ଟ । ତା' ପରେ ସିନା ଅନ୍ୟକିଛି କଥା ଚିନ୍ତା କରାଯାଇପାରେ ।'

ମୁଁ ରୋଗୀମାନଙ୍କର ଯିବାଆସିବା ମଧ୍ୟରେ ଯେତିକି ନିରୋଳା ମୁହୂର୍ତ୍ତ ପାଉଛି, ସେତିକିରେ ତାକୁ ବସି ବୁଝାଉଛି । କାଲି ମୁଁ କିପରି ଚେଷ୍ଟାକରିଛି ଏଇ ଫ୍ଲୁଇଡ୍ କଥା ବୁଝିବାକୁ ଆଦୌ ରାଜି ନୁହେଁ । ସେ ଯେପରି ଏଇ ପରୀକ୍ଷାଟା ନିଜ ହାତରେ କରିବା ପାଇଁ ପଣକରି ଆସିଛି ।

ସେ - 'ଆଚ୍ଛା, ତୁମେ ମୋ ଚାମ୍ବର ଭିତରକୁ ଯାଅ । ଦେଖ, ଏଇଟା ଶେଷ ଚେଷ୍ଟା ।'

ମୁଁ ଚାମ୍ବର ଭିତରେ । ପର୍ଦ୍ଦାଟା ଭଲଭାବରେ ଟଂଗାହୋଇଛି । ଆଲମିରା ସେକଡ଼ରେ ସେ । ବର୍ତ୍ତମାନ ଡାକ୍ତର, ପୁଣି ଅମୁକ ଡାକ୍ତରଙ୍କ ପତ୍ନୀ, ତିନୋଟି ସନ୍ତାନର ମା' ।

ମୁଁ - 'ଏଇ ! ତୁମର ମନେପଡୁଛି ଖରାଛୁଟି ଦିନସବୁ ?'

ସେ - 'ହଁ, ଅଳ୍ପ ।' ଆରପଟୁ ଉତ୍ତର ଶୁଭୁଛି ।

ମୁଁ - 'ମୋର କିନ୍ତୁ ଡିଟେଲ ମନେଅଛି । କ୍ୟାରମ୍ ଖେଳିବା ବାହାନାରେ ତୁମେ ଯେତେବେଳେ ଆସୁଥିଲ ଆମ ଘର ପାଖକୁ । ନିରୋଳା ରାସ୍ତା...'

ନିରୋଳା ରାସ୍ତାକଡ଼ରେ ଗୋଟାଏ ଭଂଗା ଦେଉଳ, ଦେଉଳ ଚାରିପାଖେ ଭଂଗାରୁଜା ବେଢ଼ା । ପ୍ରଥମେ ସେ ଆବିଷ୍କାର କଲା ସେ ବେଢ଼ା ଭିତରେ ଗୋଟିଏ କାଞ୍ଚନଗଛ ଅଛି, ଯାହାର ଫୁଲ ମୋ ହାତଠାରୁ ଅନେକ ଦୂରରେ । ମାନେ ଫୁଲ ତୋଳିବାକୁ ହେଲେ ମତେ ଗଛ ଉପରକୁ ଉଠିବାକୁ ପଡ଼ିବ; କିନ୍ତୁ ତା'ର ଫୁଲର ଆବଶ୍ୟକତା ମତେ କୌଣସିମତେ ପୂରଣ କରିବାକୁ ପଡ଼ିବ । ପାଚେରି ଉପରେ ଚଢ଼ି ମୁଁ ଶେଷରେ ଆଣିଲି ଫୁଲ । ତା' ପ୍ରତିଦାନରେ ମୁଁ ପାଇଥିଲି ତାର ପ୍ରେମ । ସ୍କୁଲ ଦିନମାନଙ୍କରେ ଘର ବାନ୍ଧିବାର ପ୍ରବଳ ନିଶା । ବାପ ମା' ହେବାପାଇଁ ଆକାଙ୍‌କ୍ଷା । ଘରେ ତା'ର ଜାଣିଲେ । କୌଣସି ପ୍ରେମବିବାହକୁ ତାଙ୍କ ପରିବାରରେ ସମର୍ଥନ ନାହିଁ । ଘରର ମଝିଆଝିଅ ସେ । ତେଣୁ ସବୁବେଳେ ବିଦ୍ରୋହିଣୀ । ବଡ଼ଭଉଣୀ ଏମ୍.ଏ. ପଢ଼ି ଚାକିରି କରୁଥିଲା । ତା' ଅଫିସ୍‌ର ଜଣେ ସହକର୍ମୀକୁ ବିବାହ କଲା । ଅବଶ୍ୟ ବେଦୀ ଉପରେ ବସି ।

କିନ୍ତୁ କୋଉ ବିଶ୍ୱାସ ସେ କରିନଥିବ ବୋଲି ? ସାନଭଉଣୀ ଦି'ଜଣ ନାଚ ସ୍କୁଲରେ ନାଚ ଶିଖନ୍ତି । ପ୍ରତ୍ୟେକ ଦିନ ଅନେକ ଭାଇ, ଅନେକ ସାର୍ କଥାବାର୍ତ୍ତା ଘରେ ଆସି ହୁଅନ୍ତି, କିନ୍ତୁ ତା'ର ଜୀବନ ଏକେବାରେ ନିରସ । କେମିତି ସେ ମତେ ପାଇଲା ? ମନେ ନାହିଁ । କେମିତି ମୁଁ ତାକୁ ପାଇଲି ? ମନେ ନାହିଁ । କିନ୍ତୁ ନିହାତି ଅଳ୍ପ ବୟସରୁ ସେ ମତେ ଟାଣିନେଇଥିଲା

## ବନ୍ଦୀ ପ୍ରେମିକ

କଞ୍ଚନଫୁଲ ଝରୁଥିବା ଚଟାଣ ଉପରକୁ । ସ୍କୁଲ୍ ଝିଅ, ଦଶମ ଶ୍ରେଣୀ ଛାତ୍ରୀ, ମା'ହେବାକୁ ଚାହେଁ । ମୁଁ ଦେଖୁଥିଲି ଆମରି ଘରପାଖ ଭଂଗାଦେଉଳ ବେଢ଼ାରେ କଞ୍ଚନଫୁଲସବୁ ଝରି ଚଟାଣରେ ପଡ଼ିଛି । ଈଷତ୍ ଲାଲ, ଈଷତ୍ ଶୁଭ୍ର । ଦେହ ତା'ର କୌଣସି ଭଂଗା ଦେଉଳର ଚଟାଣ । ମାର୍ବଲର ଦେହ ତା'ର । ମାର୍ବଲ ଚଟାଣରେ ଫୁଲର ନିମନ୍ତ୍ରଣ ।

କୃତକାର୍ଯ୍ୟ ହୋଇଛି । ଶେଷରେ ପାଇଛି ମୋ ଜୀବନର ଅର୍ଥ । ଚାମ୍ବରରେ ମୁଁ, ଆଲମାରି ସେପାଖରେ । ପ୍ରକୃତିସ୍ଥ ହୋଇ ମୁଁ ସେ ପାଖରୁ ଏଜାକୁଲେସନ୍ ଫ୍ଲୁଇଡ୍ ନେଇ ପ୍ରବେଶ କରୁଛି ।

ସେ ବିଜୟିନୀର ହସ ହସୁଛି । ବର୍ତ୍ତମାନ ସେ ପରୀକ୍ଷା କରିବ । ମାଇକ୍ରୋସ୍କୋପ୍‌ରେ ବୋଧହୁଏ । ହଁ, ସେ ସାଂଗେ ସାଂଗେ ପରୀକ୍ଷା ଆରମ୍ଭ କରୁଛି । ଖୁବ୍ ବେଶି ମନଦେଇ, ଯେପରି ଜଣେ ଆତ୍ମୀୟ ପାଇଁ କରାଯାଏ । ପୁଣି ମନ ଭିତରେ ଅସଂଖ୍ୟ ସନ୍ଦେହ । ବେଳେବେଳେ ମୁହଁକୁ ତା'ର ଚାହିଁଲେ ମନେହେଉଛି, ସେ ଯେପରି ଫଳାଫଳଟା ବହୁତ ଆଗରୁ ଜାଣିଛି, କେବଳ ପରୀକ୍ଷା କରି ଥରେ  କହିଦେବା ଦରକାର ।

ସେ ଯେକୌଣି ମୁହୂର୍ତ୍ତରେ, ସେ ଯେପରି ମତେ କହିଦେବ ଯେ  'ଅଲ୍ ଡେଡ୍ ସେଲ୍' ମୁଁ ନିଶ୍ଚିତ ହୋଇ ବସିଛି । କାରଣ ଏ ପରୀକ୍ଷା ମୋର ଆଗରୁ ସରିଛି, କିନ୍ତୁ ସେ ଡାକ୍ତର ଏ ଡାକ୍ତର ନୁହେଁ । ସେ ପରୀକ୍ଷାରେ ଫଳାଫଳ ଥିଲା ଜରୁରୀ, ଏ ପରୀକ୍ଷାରେ ପ୍ରେମିକା କଅଣ କହିବ ସେଇଟା ହିଁ ଶୁଣିବା ଜରୁରୀ ।

ସେ ମୁହଁଉଠେଇଲା ।

ସେ – 'ସବୁ ତ ଠିକ୍ ଥିଲା – ହେଲା ନାହିଁ କାହିଁକି ?'

ମୁଁ – 'ପୁଣି ତୁମେ ଭୁଲ୍ କଲ । ତମେ ପ୍ରେମିକାର ଡାଇଲଗ୍ କହିଲ ।'

ସେ – 'ମାନେ ?'

ମୁଁ – 'ମାନେ, ତମର କହିବାର ଥିଲା ସବୁ ତ ଠିକ୍ ଅଛି, ହେଉ ନାହିଁ କାହିଁକି ?'

ମୁଁ କ୍ଲିନିକ୍ ଛାଡ଼ି ଚାଲିଆସୁଛି । ମୁଁ ଏକା । ପଛରେ ଗୋଟିଏ ଭଂଗା ଦେଉଳ, କଞ୍ଚନଗଛ, କଞ୍ଚନଫୁଲ, ମାର୍ବଲ ଚଟାଣ, ଖରାଛୁଟି, ମାଇକ୍ରୋସ୍କୋପ୍ ଏବଂ କେତେଗୁଡିଏ ସେଲ୍ ଛାଡ଼ିଆସୁଛି ।

# ମଲା ପ୍ରଜାପତି

'ମୁଁ ପଥ, ମୁଁ ସତ୍ୟ, ମୁଁ ଜୀବନ...ତୁମେ ତୁମ ପ୍ରତିବେଶୀକୁ ଆତ୍ମତୁଲ୍ୟ ପ୍ରେମ କର ।' ଡାହାଣପାଖ କାନ୍ଥରେ ଏଇସବୁ ଆପ୍ତବାକ୍ୟ ନୀଳ ଓ ସବୁଜ ରଂଗରେ ଲିଖିତ । ପାଚେରି ସେପଟକୁ ଏକ ଗୀର୍ଜା । ଠିକ୍ ତା' ସମ୍ମୁଖକୁ ଅର୍ଥାତ୍ ରାସ୍ତାର ବାମକଡ଼େ ଏକ ଗୋଥିକ ସୌଧରେ ବିସପ୍‌ଙ୍କ ଆବାସସ୍ଥଳୀ । ଡାହାଣକଡ଼ରେ ଆଉ ଏକ ରାସ୍ତା ସହରର ହୃଦୟସ୍ଥଳକୁ ବର୍ଚ୍ଛା ପରି ପଶିଯାଇଛି ।

ପ୍ରତି ସକାଳେ ମୁଁ ଏଇ ବାଟଦେଇ ଯାଏ ଅବଶ୍ୟ ସାଇକେଲରେ, ଏଇ ଛକ ଉପରେ ଗୋଟିଏ କରୁଣ ସମ୍ବୋଧନ ଶୁଣିବାରେ ମୁଁ ଅଭ୍ୟସ୍ତ ।

ବୁଢ଼ୀଟିଏ, କୁଷ୍ଠରୋଗରେ ଗୋଟିଏ ହାତର ପାପୁଲି ସମ୍ପୂର୍ଣ୍ଣ ନଷ୍ଟ । ଗୋଟିଏ ଭଂଗାଛତା ତଳେ ରାସ୍ତାକଡ଼ରେ ବସି ଡାକୁଥାଏ 'ବାଉ ! ପଇସା ଦିଅ ।' କେହି ପଇସା ଦିଅନ୍ତି ଅଥବା ନ ଦିଅନ୍ତି ସେ କଥା ମତେ ଜଣାନାହିଁ । କିନ୍ତୁ ଏକଥା ନିଶ୍ଚିତ, ମୋ ମଥାରେ ଗୋଟିଏ ଚିନ୍ତା ପଶେ ଯାହାର ସମାଧାନ ମୁଁ ଆଜି ପର୍ଯ୍ୟନ୍ତ କରିପାରିନି । ତାହା ହେଉଛି ଏହି ମନ୍ଦିର, ମସ୍‌ଜିଦ୍, ଗୀର୍ଜା ଓ ଗୁରୁଦ୍ୱାର ଆଗରେ କାହିଁକି ଏଇ ଭିକାରି ଓ କୁଷ୍ଠରୋଗୀମାନେ ବସନ୍ତି ! ଏହା ଜୀବନର ଗୋଟିଏ ଜଟିଳ ପ୍ରଶ୍ନ ନୁହେଁ ବୋଲି ମୋ ମନ ଗ୍ରହଣ କରିନେଇଥିଲା । କିନ୍ତୁ ଆଜିକାଲି ବେଳେବେଳେ ତା'ର ଉତ୍ତର ଦେଇହୁଏ ଯେ ପାପୀମାନେ ପୁଣ୍ୟ କଲାବେଳେ ଭଗବାନ୍‌ଙ୍କୁ ସାକ୍ଷୀ ରଖି ପୁଣ୍ୟ କରିବାକୁ ଚାହାନ୍ତି ।

କିନ୍ତୁ ଏଇ ବୁଢ଼ୀଟିକୁ କେହି ତ ଦେଖନ୍ତି ନାହିଁ । ଯଦି ସବୁ ରବିବାର ଗୀର୍ଜାର ଉପାସନା ସାରି ଫେରୁଥିବା ଲୋକମାନେ ଏଇ ବୁଢ଼ୀଟିକୁ ଦଇପଇସା କରି ଚାନ୍ଦା ଦିଅନ୍ତେ, ତେବେ ବୁଢ଼ୀଟି ଗୋଟେଦିନ ରୋଜଗାର କରି ଏକମାସ ଜିଇଁପାରନ୍ତା । କିନ୍ତୁ ବୁଢ଼ୀଟିର ସେହି ଡାକ 'ବାଉ ! ପଇସା ଦିଅ ।' ସବୁଦିନ ସକାଳୁ ରାତି ଅଧଯାଏ ପ୍ରତିଧ୍ୱନିତ ହେଉଥାଏ । ଉପାସନାରୁ ଫେରି କେହି କେବେ ଦଶପଇସି ଅଥବା ସୁଉକିଟିଏ ଦେଇଛି ତ' କେହି କେବେ ଦେଖିଥିବ କି ନାହିଁ କହି ହେବ ନାହିଁ ।

ଆମେସବୁ ନିନ୍ଦା, ଲୁହ ଚାପିବା, ପୋଛିବା ଅଥବା ନିଗାଡ଼ିବାରେ ବ୍ୟସ୍ତ । ଅନ୍ୟର ଦୁଃଖ ଶୁଣିବାକୁ କିଏ ହାତରେ ବାଇବେଲ୍, କୋରାନ୍ ଧରି ବୁଲୁଛି । ସହରର ଗହଳି ଅଂଚଳରେ କାହାରି ଦୃଷ୍ଟି ଉପରେ ଥିବା କୋଠାବାଡ଼ି କିମ୍ବା ବତିଖୁଣ୍ଟର ଉପରିଭାଗକୁ ପଡ଼େନା । ସମସ୍ତେ ଦୋକାନ ବଜାର ଦେଖିବାରେ କେହି କେହି ଲୋକମାନଙ୍କୁ ଦେଖିବାରେ, କେହି ଟ୍ରାଫିକ୍‌ରୁ ନିଜକୁ ବଂଚେଇ ଚଳିବାରେ ବ୍ୟସ୍ତ । କିନ୍ତୁ ହଠାତ୍ ଦିନେ ସହରରେ ହରତାଳ

ହେଲେ ଲୋକମାନଙ୍କର ଆଖିରେ ପଡ଼େ 'ଆରେ ଏଇ ଲୁଗାଦୋକାନ ଉପରଟା ଏମିତିକା? କାହିଁ ମୋର ନଜର ଏ ପର୍ଯ୍ୟନ୍ତ ପଡ଼ିନଥିଲା!'

ଠିକ୍ ସେମିତି ମୋ ପରି ଚରିତ୍ରର ନଜର ପଡ଼ିଥିଲା ଏଇ ବୁଢ଼ୀଟି ଉପରେ। ଆରେ, ଏମିତି ଗୋଟେ ବୁଢ଼ୀ ବସିଛି, କାହିଁ -ମୁଁ ଏତେଦିନଯାଏ ଲକ୍ଷ୍ୟକରି ନଥିଲି! ଅସଲରେ କହିବାକୁ ଗଲେ ମୋ ଛାତିର ଦୟାର ତୁଷାର- ଖଣ୍ଡ ତା' ପାଇଁ କେତେ ତରଳିନଥିଲା! ଏଇ ଦୁଃସ୍ଥ ଅସହାୟ ଚରିତ୍ରଟିକୁ ନେଇ ମୋର ଈଶ୍ୱରଙ୍କ ସହିତ ସତରଂଜ ଖେଳିବାକୁ ଇଚ୍ଛାଥିଲା। ହଁ, ଠିକ କଥା ଈଶ୍ୱର ଓ ଶଇତାନ ସହିତ କେବଳ ସତରଂଜ ଖେଳାଯାଇପାରେ। କାରଣ, ଅନ୍ୟଖେଳରେ ମାରୁ ମାରୁ ମରିବାରେ କିମ୍ବା ମରୁ ମରୁ ମାରିବାରେ ଉଦ୍ଦୀପନା ନାହିଁ। ତେଣୁ ବୁଢ଼ୀକୁ ମୁଁ ମୋ ସତରଂଜର ଗୋଟେ ପନ୍ କରି ଦଉଥିଲି। ଗୋଟେ କାହିଁକି, ଷୋଳଟାଯାକ ପନ୍। ବୁଢ଼ୀ କେବେ ରାଜା, କେବେ ମନ୍ତ୍ରୀ, କେବେ ଘୋଡା, କେବେ ହାତୀ ଓ କେବେ ଜାହାଜ, କେବେ କେବେ ସୈନିକ ମଧ୍ୟ।

ମହାଦଶାରେ ଶନି ଯେତେବେଳେ ମୋର ଖରାପ ଅବସ୍ଥାରେ ଥିଲା ସେତେବେଳେ ଗାଁ ପୁରୋହିତ ମତେ ଉପଦେଶ ଦେଇଥିଲେ ଯେ ମୁଁ ଯେପରି ହର ଶନିବାର ଦିନ ଗୋଟିଏ ଭିକାରିକୁ ପେଟପୂରା ଖାଇବାକୁ ଦିଏ। ପ୍ରଥମ କେତେଦିନ ହୁଏତ ମୋର ମନେଥିଲା। କିନ୍ତୁ କିଛିଦିନ ପରେ ମୋର ଏଇ ଉପଦେଶ ସୋମବାରଦିନ ସକାଳୁ ମନେପଡ଼େ। ଫଳରେ ଶନି ତା'ର ଖେଳ ଦେଖାଇ ଚାଲିଗଲା ଏବଂ କୌଣସି ଭିକାରିର ଭରାପେଟ ମୋ' ଭାଗ୍ୟକୁ ବଦଳାଇ ପାରିଲାନି।

ସେଦିନ ଶନିବାର। ମୁଁ ଭୁବନେଶ୍ୱର ଯାଇଥାଏ। କ୍ଲବରେ ବସୁ ବସୁ ଅନେକ ଡେରି ହେଇଗଲା। ପରେ ଓ ପ୍ରତ୍ୟକ୍ଷ ଆଲୋଚନାରତ ମୋ ବନ୍ଧୁମାନେ ମତେ ମନେପକାଇଦେଲେ ଯେ ଶନିବାର ରାତି ହେଉଛି ବିଳାସର ରାତି।

ଶନି ମହାଦଶାରେ ଯନ୍ତି ହୋଇଥିବା ପ୍ରାଣୀ ଅର୍ଥାତ୍ ମୁଁ କୌଣସି ଶନିବାରରେ ସାବଧାନ ହୋଇନଥିଲି କିମ୍ବା ଶନିବାରରେ ବିଳାସର ଶୀର୍ଷାସନ ପାଇ ନଥିଲି। ତେଣୁ ବିଳାସକୁ ହସରେ ଉଡ଼େଇ ମୁଁ ଫେରିଆସିଲି ମୋର ସହରକୁ। ନିଶାର୍ଦ୍ଧର ଏକମାତ୍ର ପାନ୍ଥ ଆଖିକୁ ଜଳକା କରି ମାଡ଼ିଆସୁଛି ଟ୍ରକ୍‌ସବୁ। ପ୍ରତ୍ୟେକ ଆଲୋକ ଯେପରି ଏକ ମୃତ୍ୟୁର ବାର୍ତ୍ତା। ପତ୍ୟେକଟି ଆଲୋକ ଯେପରି ଏକ କ୍ରୁଦ୍ଧ ପ୍ରେମିକ। ପ୍ରତ୍ୟେକଟି ହେଡ୍‌ଲାଇଟ୍ ଯେପରି ଏକ ପବିତ୍ର ଆତ୍ମାର ଅମର ଚେତାବନୀ।

ଶନିଦଶା ମୋର ଚାଲିଗଲାଣି କେବେଠୁ କେଜାଣି, ନିକଟରେ ଆଉ କ୍ଳେଶର ଆଭାସ ନାହିଁ। ସମ୍ଭବତଃ ମୁଁ ଖୁବ୍ ଭଲ ସମୟ ଦେଇ ଗତିକରୁଛି। ତେଣୁ ମୋର ଦୁର୍ଘଟଣାରେ ମରିବାର ନାହିଁ।

ଚିନ୍ତା କରୁକରୁ ମୁଁ ପହଂଚିଗଲି ମୋ ସହରରେ। ମୋ ସହରରେ ମୁଁ ପ୍ରଥମେ ପ୍ରବେଶ

କଲେ ତା'ର ପବନକୁ ଚୁମା ଦିଏ ଠିକ୍ ଯେପରି ପ୍ରଥମ ଯୌବନରେ ମୋର ପ୍ରେମିକାର ବେଣୀକୁ ଚୁମା ଦେଉଥିଲି । ଚୁମାଟା ଚମଡ଼ା ଉପରେଦେଲେ ତାହା ହୃଦୟରେ ଚମକ ସୃଷ୍ଟିକରେ, କିନ୍ତୁ ବେଣୀରେ ଦେଲେ ସେଥିରେ ସ୍ପନ୍ଦନ ମୋ ପ୍ରେମିକା ପାଇଁ ନଥାଏ । ଠିକ୍ ସେହିପରି କଟକର ପବନକୁ ଚୁମା ଦେଲେ କଟକର ସ୍ପନ୍ଦନ ଜାତ ହୁଏନା ବୋଲି ମୋର ମନେହୁଏ ।

ରାତି ସେତେବେଳକୁ ପ୍ରାୟ ଦୁଇଟା । ଦୁଇ କଡ଼ର ନିଓନ୍ ଲାଇଟ୍ ଏକ ଅସୀମ ଶୂନ୍ୟତାକୁ ପଥ ଦେଖାଉଛନ୍ତି । କେବଳ ଗୋଟେ ଗୋଟେ ଟିଉବ୍ ଲାଇଟ୍ ଅବାଧ ପ୍ରେମିକ ପରି ଜଳୁଛି ଲିଭୁଛି । ଠିକ୍ ଆସି ପହଂଚିଲି ଗୀର୍ଜା ଆଗରେ ଏବଂ ଆଶ୍ଚର୍ଯ୍ୟର କଥା ଠିକ୍ ସେଇ ଗୀର୍ଜା ପାଖ ଛକରେ ମୋ ଗାଡ଼ି ଅଟକିଗଲା । ପିଲାଦିନେ ଶୁଣିଥିଲି ଏଇ ଅଂଚଳରେ ଭୂତ ଦେଖାଯାଏ । ପିଲାଦିନେ ଏତେ ରାତିରେ କେବେ ଏକା ଯାଇ ନଥିଲି । ସତ୍ୟାସତ୍ୟ କେମିତି ପରୀକ୍ଷା କରିବି ? ଆଜି ହୁଏତ ସମୟ ଆସିଛି ଭୂତ ସହିତ ସାମ୍ନାସାମ୍ନି ହେବାର ।

ଗାଡ଼ି ବନ୍ଦ୍ ହୋଇଯାଇଛି ମୋର ବେଖାତିର ଓ ବେହିସାବୀ ଅଭ୍ୟାସ ଲାଗି । ଗାଡିରେ ପେଟ୍ରୋଲ୍ ନାହିଁ । ଲୋକ ବି କେହି ସାଂଗରେ ନାହିଁ । କିଛି ସମୟ ଅପେକ୍ଷା କଲା ପରେ ଜଣେ ବସ୍ତିବାଲା ସାଇକେଲ୍‌ରେ ଘରକୁ ହୁଏତ ଫେରୁଥିଲା । ତାକୁ ଅନୁରୋଧ କରିବାରେ ସେ ମୋ ପାଇଁ ପେଟ୍ରୋଲ୍ ଆଣିଦେବାକୁ ରାଜି ହେଲା ଏବଂ ସଂଗେ ସଂଗେ ଟିଣଧରି ଚାଲିଗଲା । ବର୍ତ୍ତମାନ ଯିବାଆସିବାରେ ତାକୁ ପ୍ରାୟ କୋଡ଼ିଏ ମିନିଟ୍ ଲାଗିବ । ଅର୍ଥାତ୍ କୋଡ଼ିଏ ମିନିଟ୍ ପର୍ଯ୍ୟନ୍ତ ମୋର ଭୂତ ସହ ନାଟକ କରିବାର ଅଛି ।

ସ୍ପଷ୍ଟ ଦେଖାଯାଉଛି, ଗୀର୍ଜା କାନ୍ଥରେ ଲେଖା ହୋଇଥିବା ଆପ୍ତବାକ୍ୟ । 'ତୁମେ ତୁମ ପ୍ରତିବେଶୀକୁ ଆତ୍ମତୁଲ୍ୟ ପ୍ରେମକର ।' ବର୍ତ୍ତମାନ ପ୍ରତିବେଶୀ ହୁଏତ ଏକ ଅଶରୀରୀ ଆତ୍ମା । ଗୋଟେ ଭୂତ, ଗୋଟେ ବ୍ରହ୍ମ ରାକ୍ଷସ, ଗୋଟେ ମାଦଳ ।

ନା ନା, ବର୍ତ୍ତମାନର ପ୍ରତିବେଶିନୀ ହେଉଛି ସେଇ ବୁଢ଼ୀଟି । ସେଇ ଛତାତଳେ ବସିଛି । ମୋ ଶବ୍ଦ ଶୁଣି ଗୋଟେ ଡାକଛାଡ଼ିଲା ।

'ବାଉ, ଦିନସାରା ମତେ କିଛି ମିଳିନି ଖାଇବାକୁ । ଅଠଣା ପଇସା ଦେଲେ ଖାଇବି ।'

ମୋର ଇଶ୍ୱରଙ୍କ ସହିତ ସତରଂଜ ଖେଳ ଆରମ୍ଭ ହୋଇଗଲା ।

ଅଧୁଲିଟିଏ ଯଦି ଦିଏ ଏତେ ରାତିରେ ସେ କେଉଁ ଦୋକାନକୁ ଯାଇ ଖାଇବ ? କେଉଁ ଦୋକାନୀ ତା' ବାଟ ଚାହିଁ ବସିଥିବ ? ଇଶ୍ୱର ଏପରି ନିର୍ଦ୍ଦୟ କାହିଁକି ? ମତେ କାହିଁକି ପ୍ରାଚୁର୍ଯ୍ୟ ଭିତରେ ରଖି ତଥାପି ଅନୁଭବ କରାଯାଉଛି ମୋର ଆଉ କିଛି ଅଭାବ ରହିଯାଇଛି ! ଏଣେ ବୁଢ଼ୀଟାକୁ ଉପାସରେ ପକାଇଛନ୍ତି । କିନ୍ତୁ ବୁଢ଼ୀ ନିଶ୍ଚୟ ମିଛ କଥା କହୁଛି । ପ୍ରବୃତ୍ତିଗତ ହୋଇ ସେ ମାଗିଦେଇଛି । ସେ ଭଲଭାବରେ ଜାଣିଛି ଯେ ଏତେ ରାତିରେ କୌଣସି ଜଳଖିଆ ଦୋକାନ ଖୋଲା ନଥିବ । ତେଣୁ ବୁଢ଼ୀ ମିଛ କହୁଛି ଏବଂ ମିଛ କହିବା ମହାପାପ ବୋଲି ଆମେ ପିଲାଦିନେ ହସ୍ତାକ୍ଷର ଖାତାରେ ଲେଖିଥିଲୁ । ତେଣୁ ବର୍ତ୍ତମାନ ଗୀର୍ଜା କାନ୍ଥରେ

## ବନ୍ଦୀ ପ୍ରେମିକ

ଲେଖାଥିବା ଆପ୍ତବାକ୍ୟରେ ଏକ ମହାସତ୍ୟ ଲେଖାଅଛି 'କାରଣ ପାପର ବେତନ ମୃତ୍ୟୁ।'

ଲୋକଟି ମୋ ପାଇଁ ପେଟ୍ରୋଲ୍ ନେଇ ପହଂଚିଲା। ମୁଁ ତାକୁ ଧନ୍ୟବାଦ ଦେଇ ଗାଡ଼ିରେ ପେଟ୍ରୋଲ ପକେଇଲି ଓ ବୁଢ଼ୀକୁ କିଛି ନ ଦେଇ ଚାଲିଆସିଲି। ଏବଂ ପରଦିନ ସକାଳେ ପାପର ବେତନ ମୃତ୍ୟୁ ବୋଲି ପ୍ରମାଣିତ ହେଲା, କାରଣ ମ୍ୟୁନିସିପାଲଟି ଗାଡ଼ି ଆସି ବୁଢ଼ୀର ଶବକୁ ନେଇଯାଇଥିଲା।

ବୁଢ଼ୀର ମୃତ୍ୟୁ ଦିନ, ତାରିଖ ମନେ ରଖିବାର ଆବଶ୍ୟକତା ନଥିଲା। ତେଣୁ ଭୁଲିଯାଇଥିଲି ଅନେକ ଦିନ। ହଠାତ୍ ଦିନେ ସେଇ ଭୁବନେଶ୍ୱରରୁ ଫେରୁଫେରୁ ଠିକ୍ ସେଇ ଜାଗାରେ ରାତି ପ୍ରାୟ ସେତିକିବେଳେ ମୋ ଗାଡ଼ିଟା ଅଟକିଗଲା।

ଆଜି କିନ୍ତୁ ମୋର ବହୁତ ଅସୁବିଧା। ଆଜି ମୁଁ ଅନୁପସ୍ଥିତ ଅନୁଭବ କଲି। ସେଦିନ ଅନ୍ତତଃ ଗୋଟେ ଜୀବନ୍ତ ପନ୍‌କୁ ଧରି ଈଶ୍ୱରଙ୍କ ସହିତ ସତରଂଜ ଖେଳୁଥିଲି। ଆଜି କିନ୍ତୁ ଛକ ଜୀବନଶୂନ୍ୟ। କେବଳ ପ୍ରେତାତ୍ମାଙ୍କ ଗହଳି। ଆଜି ମୋତେ ଡରଲାଗିବାକୁ ଆରମ୍ଭକଲା।

ଗୀର୍ଜାର କାନ୍ଥକୁ ଅନେଇଲି। ଏତକ ହାଲ୍‌ରେ ଲେଖା ହେଇଥିବା ଆପ୍ତବାକ୍ୟ 'ସେ ଯେବେ ପୁନରୁତ୍‌ଥିତ ହେବେ...।' ସେ ଯେତେବେଳେ ପୁନରୁତ୍‌ଥିତ ହେବେ ସେତେବେଳେ ସମସ୍ତ ସମାଧିରୁ ସବୁ ଶବ ଜୀବନ୍ତ ହେବେ, ଏହା କ'ଣ ସତ୍ୟ?

ମିଶନ୍ ରୋଡ୍‌ରେ ଆସୁଛି ଏକ ଶୋଭାଯାତ୍ରା। ଗୋଟିଏ ଧାଡ଼ିରେ ଅନେକ ଲୋକ। ସହରର ସମସ୍ତ ଆଲୋକ ନିର୍ବାପିତ। କେବଳ ମେଘଘୋଡ଼ା ଜହ୍ନରାତିରେ ଯାହା ଈଷତ୍ ଦେଖାଯାଉଛି – ଏ କିଏ?

ଚତୁର୍ଥ ଶ୍ରେଣୀରେ ପଢୁଥିଲାବେଳେ ଯେଉଁ ମାଷ୍ଟ୍ରାଣୀକୁ ମୁଁ ସବୁବେଳେ ଚାହିଁବସୁଥିଲି ଏବଂ ସମ୍ଭବତଃ ଟିକେ ଟିକେ ଭଲପାଉଥିଲି, ସେ ଏଇ ଶୋଭାଯାତ୍ରା ଆଗରେ। ସେ କହିଲେ, 'ମୁଁ ଜାଣେ ଏ ତୋର ମୋ ପ୍ରତି ଗୋଟେ ଅଯଥା ଦୁର୍ବଳତା ଥିଲା।' କିନ୍ତୁ ତାହା କ'ଣ ସତ୍ୟ? ସେଗୁଡ଼ା ମିଛ। ଏହା କହି ସେ ଅଦୃଶ୍ୟହେଲେ।

ତା'ପରେ ଆସିଲା ମୋର ପ୍ରଥମ ପ୍ରେମିକା, ମୋର ପ୍ରଥମ କମ୍ପନ। ପ୍ରଥମ ସ୍ପନ୍ଦନ। ମୋର ପ୍ରାକ୍‌ଯୌବନକାଳର ସମବୟସୀ ବାଳିକା – ଯେ କି ଅସାଧାରଣ ଆଖିରେ ସୁନ୍ଦରୀ ନଥିଲେ ବି ମୋ ପାଇଁ ହେଲେନ୍ ଅଫ୍ ଟ୍ରୟ ଥିଲା। ଏବଂ ତା' ସହିତ ମୁଁ ଜୀବନରେ କେବେ କଥା ହୋଇପାରିନି। କେବଳ ନିରର୍ଥକ ପ୍ଲାଟୋନିକ୍।

ସେ କହିଲା – ପ୍ରଥମ ଯୌବନର ପ୍ରେମ ହୁଏ ସ୍ମୃତି ପାଇଁ ସମ୍ବଳ। କିନ୍ତୁ ଜୀବନର ପାଥେୟ ନୁହେଁ। ମୁଁ ବାହା ହୋଇ ସୁଖରେ ରହିଲି। ଏବେ ଲାଗୁଛି, ସେ ପ୍ରେମଟା ମିଛ।

ତା'ପରେ ଆସିଲା ମୋର ଭରା ଯୌବନ ପ୍ରେମିକା ଯାହାକୁ ରିକ୍‌ସାରେ ନେଇ ମୁଁ କଟକର ପ୍ରତ୍ୟେକ ଗଳିରେ ବୁଲୁଥିଲି ଏବଂ କଟକର ପ୍ରତ୍ୟେକ ମନ୍ଦିରରେ ବାହାହେବାର ପ୍ରତିଶ୍ରୁତି ଆଦାୟ କରିଥିଲି। ସେ କହିଲା

– 'ମୁଁ ସିନା ତୁମକୁ ଭଲ ପାଉଥିଲି, ପ୍ରକୃତରେ ବାହାହେବା କଥା ଚିନ୍ତା କରୁନଥିଲି । କାରଣ ଯେତେବେଳେ ଯୌବନର କ୍ଷୁଧା ପାଇଁ ମୁଁ ତୁମ ସ୍ପର୍ଶ ଟିକେ ପାଇବାକୁ ଆସୁଥିଲି, ତୁମେ ସେତେବେଳେ ତୁମ ଆଦର୍ଶକୁ କୁଣ୍ଢେଇ ଧରିବସିଥିଲ । ତେଣୁ ତୁମକୁ କେବଳ ଖୁସ୍ କରିବାକୁ ମୁଁ କିଛି କହୁଥିଲି । କାଳେ ସେଇ ମିଛର ଯୋର୍‌ରେ ତୁମ ପାଦଟିକେ ଖସିଯିବ ଏବଂ ତମେ ମତେ ତୃପ୍ତି ଦେଇପାରିବ ।'

ତା'ପରେ ଆସିଲା ନାଚସ୍କୁଲର ସେଇ ସୁନ୍ଦରୀ ନର୍ତ୍ତକୀ କଲ୍ୟାଣୀ ଯେ ମତେ ନପାଇଲେ ବିଷପିଇଦେବ ବୋଲି ଧମକ ଦେଇଥିଲା । ଏବଂ ପରେ ତାହା ମିଛ ବୋଲି ପ୍ରମାଣିତ ହେଲା ।

ତା'ପରେ ଆସିଲା ପଂଚତାରକା ହୋଟେଲର କ୍ୟାବାରେ ନର୍ତ୍ତକୀ ଲିଣ୍ଡା ଯେ ଅର୍ଦ୍ଧନଗ୍ନ ଅବସ୍ଥାରେ ମୋ କୋଳରେ ବସିଯାଇ କହିଲା – 'ଡାର୍ଲିଂ, ଆଇ ଲଭ୍ ଇଉ ।'

ତା' ପରେ ସେଇ ଗଣିକାମାନେ ତାଙ୍କର ସେଇ ନଗ୍ନତା ନେଇ ଏବଂ ଯେଉଁମାନେ ମୋ' ଆଗରେ ନାଟକ କରୁଥିଲେ ସେମାନେ ମୋ ଦ୍ୱାରା ସମ୍ପୂର୍ଣ୍ଣ ରୂପେ ତୃପ୍ତ ।

ତା'ପରେ...

ତା'ପରେ...

ତା'ପରେ...

ତା'ପରେ ସେଇ ବୁଢ଼ୀ – ସେ ମୋ ଆଗରେ ଛିଡ଼ାହୋଇ କେବଳ ଏତିକି କହିଲା –

'ମୁଁ କିନ୍ତୁ ସତ କହିଥିଲି ।'

ସହରର ବତିସବୁ ଦପ୍‌ଦପ୍ ଜଳିଉଠିଲା । ଶୋଭାଯାତ୍ରା ଅଦୃଶ୍ୟ ଥିଲା । ଆଜି ଈଶ୍ୱରଙ୍କ ସହିତ ସତରଂଜ ଖେଳିବାର ନିଶା ନଥିଲା । କେବଳ ସେଇ ଶୋଭାଯାତ୍ରାର ଶେଷରେ ଯଦି ଈଶ୍ୱର ଆସିଥାନ୍ତେ ତେବେ ମୋର ତାଙ୍କୁ ଏକ ପ୍ରଶ୍ନ ପଚାରିବାରେ ଇଚ୍ଛା ଥିଲା ।

'ହେ ଈଶ୍ୱର ! ଏସବୁ ଛୋଟଛୋଟ ଦୋଷ ଲାଗି ଜୀବନସାରା କ'ଣ ଏହିପରି ଶୋଭାଯାତ୍ରାର ସମ୍ମୁଖୀନ ହେବାକୁ ପଡ଼ିବ ? ଏପରିକି ଆଜି ଯେଉଁ ପ୍ରଜାପତିଟି ମୋ ଆଇନା ପାଖରେ ବସିଥିଲାବେଳେ ମୁଁ ତାକୁ ଧରୁ ଧରୁ ମରିଗଲା – ସେ କ'ଣ ଅନ୍ୟାନ୍ୟ ପତଙ୍ଗଙ୍କୁ ଧରି ଶୋଭାଯାତ୍ରାରେ ଆସିବ ?'

# ଲୋହିତ ଗନ୍ଧ

ଉପରେ ପଡ଼ି ଜହ୍ନ ଆକାଶକୁ ପଶିଲା । ସେତେବେଳେ ସହରରେ ବତିମାନେ ସନ୍ଧ୍ୟା ପ୍ରହରର ଉଷ୍ମ ଅନୁଭୂତି ସମ୍ପର୍କରେ ପରସ୍ପର ମଧ୍ୟରେ ଆଲୋଚନା କରୁଥିଲେ । ପ୍ରତ୍ୟେକ ଗଳିର ଟେଲିଫୋନ୍ ଖୁଣ୍ଟମାନେ ନିଜ ନିଜ ଭିତରେ ଭାବ ଆଦାନପ୍ରଦାନ କରୁଥିଲେ ଅସ୍ପଷ୍ଟ ଗୁଂଜନକରି । ଗଳିର କୁକୁରମାନେ ଭୁକିଉଠିଲେ । ସତେଅବା ସେମାନଙ୍କ ଆଗରେ ଗୋଟେ ଅଣଜଗତର ପ୍ରାଣୀ ଆସି ଠିଆହୋଇଗଲା । ହଁ, ଅଣଜଗତ ନହେଲେ ବି ସେ ଭୌତିକ। ଆଶ୍ଚର୍ଯ୍ୟ ଭୂତ ସେ । ଅବଶ୍ୟ ଭୂତ ସିଏ । କାରଣ ଜହ୍ନ ସେଦିନ ତା'ର ସମସ୍ତ ଜ୍ୟୋତ୍ସ୍ନାକୁ ଠୁଳକରି ଗଢ଼ିଥିଲା ଗୋଟେ ଜୀବନ୍ତ ପୁରୁଷ । ଅତି ଅଦ୍‌ଭୁତ ତାର ଗତି । ଆତି ଚମତ୍କାର ତା'ର ବ୍ୟାପ୍ତି । ଅତି ଆଶ୍ଚର୍ଯ୍ୟଜନକ ତା'ର ଶକ୍ତି । ତା'ର ଖୋଲା ହାତ ଦୁଇଟା ଏକ ସମୟରେ ମହାନଦୀ ଏବଂ କାଠଯୋଡ଼ି ବାଲିରେ ଗାରକାଟି ଛକିଶୂନ ଖେଳ ଖେଳିପାରୁଥିଲା । ଅଥଚ ବିକୃତ ଦୈତ୍ୟପରି ନୁହେଁ ତା'ର ସ୍ୱାସ୍ଥ୍ୟ । ତା'ର ସ୍ୱାସ୍ଥ୍ୟ ଏକ ଲୋଭନୀୟ ସ୍ୱପ୍ନ । ସେ ପୁଣି ଗତିକରିପାରୁଥିଲା ଏକସଂଗେ ସହରର ସମସ୍ତ ରାସ୍ତାରେ । ପ୍ରତି ଗଳିରେ ତା'ର ପାଦଶବ୍ଦ। ପ୍ରତି ଛକରେ ତା'ର ଦେହର ଗନ୍ଧ । ସେ ପୁଣି କଥା କହିପାରୁଥିଲା ଯେକୌଣସି ବ୍ୟକ୍ତି ସଂଗେ ତା'ର ବ୍ୟକ୍ତିଗତ ସ୍ୱପ୍ନରେ । ଅଥଚ ସେ ଥିଲା ଏକ ଜୀବନ୍ତ ପୁରୁଷ ।

ଏକ ଅସ୍ୱାଭାବିକ ଜିଜ୍ଞାସା ନେଇ ଜ୍ୟୋତ୍ସ୍ନାର ଆତ୍ୟାଶ୍ଚର୍ଯ୍ୟ ଜୀବନ୍ତ ପୁରୁଷ ଆଗେଇଲା ସହରର ପୂର୍ବପଟୁ । ସେତେବେଳେ ଗଳିର କୁକୁରମାନେ ଭୁକିଭୁକି ଥକିଗଲେଣି ।

କିନ୍ତୁ ସହରରେ ଏକ ନିଘଂଚ ବନର ନୀରବତା । ଏତେ ନୀରବତା ଯେ ମନେହେଉଥିଲା ଯେପରି ସମସ୍ତ ସହର ଏକ ମୃତନଦୀର ଶଯ୍ୟା । ଏକ ବିଚିତ୍ର ନିଦ ସେଦିନ ଘାରିଥିଲା ପ୍ରତ୍ୟେକ ଲୋକକୁ । ଜ୍ୟୋତ୍ସ୍ନା ତା'ର ଭୌତିକ ଅସ୍ତିତ୍ୱ ନେଇ ଛିଡ଼ାହେଲା ରେଳଷ୍ଟେସନ୍ ପାଖରେ ଏକ ଅନଭିଜ୍ଞ ପର୍ଯ୍ୟଟକ ପରି । ସେତେବେଳେ ଯାତ୍ରୀମାନେ ଶୋଇଛନ୍ତି, ସତେଯେମିତି ରେଳଟିକେଟ ପରିବର୍ତ୍ତେ କାଉଣ୍ଟର କ୍ଲର୍କ ତାଙ୍କୁ ଦେଇଥିଲା ଟିକେ ଟିକେ ଚନ୍ଦ୍ର । ଜ୍ୟୋତ୍ସ୍ନା ଯାତ୍ରୀମାନଙ୍କ ମୁହଁକୁ ଲକ୍ଷ୍ୟ କରି ଚିହ୍ନିବାକୁ ଚେଷ୍ଟାକଲା - କିଏ ଏମାନଙ୍କ ଭିତରୁ ଏ ସହରର ସ୍ଥାୟୀ ବାସିନ୍ଦା ହୋଇପାରେ । ଯାତ୍ରୀମହଲରୁ କାହାକୁ ନ ପାଇ ଜ୍ୟୋତ୍ସ୍ନା ପ୍ଲାଟଫର୍ମ ଭିତରେ ପ୍ରବେଶକଲା । ସେଦିନ ସମସ୍ତ ଟିକେଟ କଲେକ୍ଟର ନିଜ ନିଜ କଳାକୋଟ୍‌ଗୁଡ଼ିକୁ ପ୍ଲାଟଫର୍ମରେ କୁଢ଼େଇଦେଇଥିଲେ କ୍ୟାମ୍ପ ଫାୟାର ଆଉ ସେଇ ପାଉଁଶ ଚାରିପାଖରେ ସେମାନେ ଶୋଇପଡ଼ିଥିଲେ ନିଶ୍ଚିନ୍ତରେ କାରଣ ସେମାନେ ହୁଏତ ଜାଣିଥିଲେ ଯେ ଆଜି ରାତିରେ କୌଣସି ଟ୍ରେନ୍ କଟକ ଭିତରକୁ ଆସିପାରୁନି, ଯେହେତୁ ମହାନଦୀ ଓ କାଠଯୋଡ଼ି ପୋଲ ଉପରେ ହଠାତ୍ ତୁଷାର ବୃଷ୍ଟି ହେବା ଫଳରେ ସେଗୁଡ଼ିକ ଗୋଟିଏ ଗୋଟିଏ ସଫେଦ ପାଚେରି ହୋଇ ଛିଡ଼ା ହୋଇଛନ୍ତି ନଦୀ ବକ୍ଷରେ । ସେମାନଙ୍କ ଅଳ୍ପଦୂରରେ ଶୋଇଥିବା ଗୋଟେ କୁଲିକୁ ଜ୍ୟୋତ୍ସ୍ନା ପ୍ରଶ୍ନକଲେ । ଅବଶ୍ୟ ସ୍ୱପ୍ନରେ ।

ଜ୍ୟୋତ୍ସ୍ନା - 'ବଡ଼ ଆଶ୍ଚର୍ଯ୍ୟ କଥା ! ଏ ସହରରେ କ'ଣ ଆଜି ତେବେ ସମସ୍ତେ ସ୍ୱପ୍ନବିଭୋର ! ସମସ୍ତେ ତନ୍ଦ୍ରାଚ୍ଛନ୍ନ !'

କୁଲି - 'ନାଇଁ ଆଜ୍ଞା, ଜଣେ ମାତ୍ର ଉଜାଗରରେ ସ୍ୱପ୍ନ ଦେଖୁଥିବ ।'

ଜ୍ୟୋତ୍ସ୍ନା - 'କିଏ ସେ ?'

କୁଲି - 'ଅକ୍ଷୟ ମହାନ୍ତି ।'

(ଜ୍ୟୋତ୍ସ୍ନାର କୌତୂହଳ ସବୁ ସିମିଳିତୁଳା ପରି ଆକାଶରେ ଉଡ଼ିବାକୁ ଲାଗିଲେ । ତଥାପି ସେ ଜିଜ୍ଞାସାକୁ ତା'ର ପଂଜରାହୀନ ଛାତି ଭିତରେ ଚାପିଧରି ଆଗେଇ ଆସିଲା କଲେଜଛକ ଆଡ଼କୁ । ସହରରେ ପ୍ରଥମ ପ୍ରବେଶର ଜଣେ ଗଣ୍ୟମାନ୍ୟ ବ୍ୟକ୍ତିକୁ ପ୍ରଶ୍ନକରିବା ପରିବର୍ତ୍ତେ ଇତର ବ୍ୟକ୍ତି ସହିତ ବାକ୍ୟାଳାପ କରିଥିବା ହେତୁ ସେ ତା'ର କୁହୁଡ଼ି ଆଚ୍ଛନ୍ନ ମନରେ ଲଜ୍ଜିତ ହେଉଥିଲା ।)

ଆଖିଆଗରେ କଲେଜ ସଡ଼କ । ଜ୍ୟୋତ୍ସ୍ନା ପ୍ରଖର ସ୍ରୋତପରି ଏହି ରାସ୍ତା ପୋଲଉପରକୁ ଉଠିଯାଇଛି । ଜ୍ୟୋତ୍ସ୍ନା ଚିନ୍ତାକଲା । ମୁଖରେ ତା'ର ସ୍ନାତକୋତ୍ତର ଛାତ୍ରର କୃତ୍ରିମ ଗାମ୍ଭୀର୍ଯ୍ୟ । ଆପାତତଃ କେଉଁ ବ୍ୟକ୍ତିକୁ ପ୍ରଶ୍ନକଲେ ପ୍ରଶ୍ନକର୍ତ୍ତାର ସମ୍ମାନ ଅକ୍ଷୁଣ୍ଣ ରହିବ ଏବଂ ସହର ସମ୍ପର୍କରେ ପ୍ରକୃତ ସମ୍ବାଦ ମିଳିପାରିବ ? ପୂର୍ବଛାତ୍ରାବାସର ସବୁ ଝରକାରେ ଜ୍ୟୋତ୍ସ୍ନା ହାତମାରିଗଲା । ସବୁ ଝରକା ଫାଙ୍କ ଦେଇ ଭିତରକୁ ଉଙ୍କିମାରିଲା । ଏକ ଅଖଣ୍ଡ ନୀରବତା

ଏବଂ କଦାଚିତ ଦୀର୍ଘଶ୍ୱାସର ଝଡ଼ ମଶାରିକୁ ଦୋହଲାଇଦେଉଛି । କେବଳ ଗୋଟିଏ ରୁମ୍‌ରେ ଜଣେ ଛାତ୍ର ଆଲୋକ ଜଳୁଥିବା ଅବସ୍ଥାରେ ଶୋଇପଡ଼ିଛି ଏବଂ ତା'ର ଖୋଲାଦେହ ଉପରେ ଜ୍ୟୋତ୍ସ୍ନା ତା'ର ତୁଳାପରି ଅଙ୍ଗୁଳି ଚଳାଇ ପ୍ରଶ୍ନକଲା -

- 'ତମେ ବୁଦ୍ଧିମାନ ନିଶ୍ଚୟ ଏବଂ ମନେହେଉଛି, ତୁମେ ଜଣେ ମେଧାବୀ ଛାତ୍ର ।

- 'ହଁ, ଠିକ୍ ଚିହ୍ନିଚନ୍ତି । କିନ୍ତୁ ଆପଣ କାହାକୁ ଖୋଜୁଛନ୍ତି ?'

- 'ମୁଁ ଖୋଜୁଛି - ଏ ସହରର ସର୍ବଶ୍ରେଷ୍ଠ ଜ୍ଞାନୀ ତଥା ଦାର୍ଶନିକଙ୍କୁ ।'

ଛାତ୍ରଟି ତା'ର ସମସ୍ତ ଗର୍ବକୁ ତା' ବହି ଫାଙ୍କରେ ଚାପିଦେଇ ଉତ୍ତରଦେଲା, 'ଆପଣ ତାହାହେଲେ ଅକ୍ଷୟ ମହାନ୍ତିଙ୍କୁ ଖୋଜୁଛନ୍ତି ?'

ଜ୍ୟୋତ୍ସ୍ନାର ଭୌତିକ ଅସ୍ତିତ୍ୱ ଝଲକାଏ ପବନରେ ଦୀର୍ଘଶ୍ୱାସ ଛାଡ଼ି ଆଶ୍ୱସ୍ତହେଲା - ତାହାହେଲେ ସେଇ ଇତର ଶ୍ରେଣୀର ସଭ୍ୟ କୁଲିଠାରୁ ପାଇଥିବା ସ୍ୱାଦ ମିଥ୍ୟା ନୁହେଁ ।

ବାମଦିଗରୁ ଭାସିଆସୁଥିଲା ନାରୀ ଛାତ୍ରାବାସରୁ ଏକ ଅଚିହ୍ନା ଗନ୍ଧ । ଯେହେତୁ କୌଣସି ଅବାସ୍ତବ ଅଥବା କାଳ୍ପନିକ ଜଗତର ପରିଚିତ ଜ୍ୟୋତ୍ସ୍ନା ସହିତ ଏ ଗନ୍ଧର କୌଣସି ମେଳ ନାହିଁ, ଯେହେତୁ ଜ୍ୟୋତ୍ସ୍ନାକୁ ଗନ୍ଧରୁ ନାରୀ ଛାତ୍ରାବାସକୁ ଚିହ୍ନିବାକୁ ବେଶ୍ ଅସୁବିଧା ହେଲା । ପରେ ସେ ଯେତେବେଳେ ଉପର ବାରଣ୍ଡାରେ ଶୁଖୁଥିବା କେତୋଟି ରଂଗୀନ୍ ଲୁଗା ଦେହରେ ନିଜ ମୁହଁ ପୋଛିଲା, ଏବଂ ଲକ୍ଷ୍ୟକରି ଦେଖିଲା ଯେ ସମସ୍ତ ଝରକା ଓ କବାଟ ଖୁବ୍ ସତର୍କତାର ସହିତ ବନ୍ଦ କରାଯାଇଛି, ସେତେବେଳେ ଜାଣିପାରିଲା ଯେ ଏହା ଏକ ମହିଳାମହଲ । କୌଣସି ଅବସ୍ଥାରେ ଶୋଇଥିବା ଜଣେ ଯୁବତୀକୁ । ଉପର ସ୍କାଇଲାଇଟ୍ ବାଟେ ଉଙ୍କିମାରି ଦେଖିଲା କାନ୍ଥରେ ଟଙ୍ଗାହୋଇଥିଲା ଏକ ଯୁବକର ଫଟୋ । ମନେହେଉଥିଲା ଯେପରି କୌଣସି ସାମୟିକ ପତ୍ରିକାରୁ ଛିଣ୍ଡାହୋଇ ଅତି ଯତ୍ନ ସହକାରେ ବନ୍ଧାହୋଇଛି ଚିତ୍ରଟି । ଜ୍ୟୋତ୍ସ୍ନା ଝରକାର ଛିଦ୍ର ଦେଇ ପ୍ରଶ୍ନକଲା ।

- 'ହେ ସୁନ୍ଦରୀ, ଏ ପ୍ରକୋଷ୍ଠରେ ଜଣେ ଯୁବକର ଚିତ୍ରପଟ ?'

ଯୁବତୀ - 'ଆପଣ ହୁଏତ ଜାଣନ୍ତି ନାହିଁ, ଆମେମାନେ କଳାର ପୂଜା କରିଜାଣୁ । ଏବଂ ଏ ହେଉଛନ୍ତି ସର୍ବଶ୍ରେଷ୍ଠ ସାଂପ୍ରତିକ କବି ।'

- 'ନାମ ?'

- 'ଅକ୍ଷୟ ମହାନ୍ତି ।'

ଜ୍ୟୋତ୍ସ୍ନା ନିସ୍ତବ୍ଧ ପଦକ୍ଷେପରେ ଫେରଆସିଲା ରାଜପଥ ଉପରକୁ । ସହରର ପ୍ରଧାନ ରାସ୍ତାରେ ଥୁଆହୋଇଛି ଅସଂଖ୍ୟ ଟ୍ରକ୍ । କ୍ଲାନ୍ତ କ୍ଲିନରମାନେ ଶୋଇପଡ଼ିଛନ୍ତି ଟ୍ରକ୍‌ଡାଲାରେ । କେହି କେହି ଡାଲା ତଳେ । ସେମାନଙ୍କୁ ବ୍ୟତିବ୍ୟସ୍ତ ନ କରି ପ୍ରତି ଟ୍ରକ୍‌ରେ ଲେଖାହୋଇଥିବା

ଜ୍ୟୋସ୍ନା ପଢ଼ିବାକୁ ଚେଷ୍ଟାକଲା ଏବଂ ପ୍ରାୟ ପ୍ରତ୍ୟେକଟିରେ ଅକ୍ଷୟ ଟ୍ରକର ମାଲିକ ନାମ ମହାନ୍ତି ନାମ ପଢ଼ି ସେ ଆହୁରି ଆଶ୍ଚର୍ଯ୍ୟ ହୋଇଗଲା । କାରଣ ଜଣେ ଶିଳ୍ପୀ ସହିତ ବ୍ୟବସାୟର ଏତେ ନିକଟ ସମ୍ପର୍କ, ଏକ ନୂତନଦ୍ୱ ନିଶ୍ଚୟ । ଜଣେ କ୍ଲିନରର ଦେହରେ ଜ୍ୟୋସ୍ନା ତାର ହାତ ବୁଲାଇ ପ୍ରଶ୍ନକଲା -

- 'କ'ଣ ସେଇ ଲୋକ - ଯିଏ ଜଣେ ଜ୍ଞାନୀ - ଜଣେ କବି ।'

- 'ହଁ, ସେଇ ସେଇ...'

ରାଣୀହାଟ ପାଖ କେତୋଟି ହୋଟେଲରେ ଜ୍ୟୋସ୍ନା ଦେଖିଲା, ନିର୍ଜନତାର ରାଜତ୍ୱ । ମାଲିକମାନେ ଟେଲିଫୋନ୍ ତାରସବୁ କାଟିଦେଇ ଶୋଇପଡ଼ିଛନ୍ତି ଗହଳ ନିଦରେ । ବୟମାନେ ରିଫ୍ରିଜରେଟର ଖୋଲି ତା' ଭିତରେ ଆରାମରେ ବିଶ୍ରାମ ନେଇଛନ୍ତି । ଜ୍ୟୋସ୍ନାର ପାଦଶବ୍ଦ ଶୁଣି ଗୋଟିଏ ହୋଟେଲର ମାଲିକ କହିଲା, 'ଆପଣଙ୍କୁ ଯଦି କିଛି ଖାଦ୍ୟ ଦରକାର, ଆମ୍ଭେମାନେ ଅକ୍ଷମ ।'

- 'ତେବେ ଏ ସହର କ'ଣ ଅତିଥି ସତ୍କାର କରି ଜାଣେନା ?'

ମାଲିକ - 'ଆପଣ ଅକ୍ଷୟ ମହାନ୍ତିଙ୍କ ଘରକୁ ଯାଉନାହାନ୍ତି !'

ଜ୍ୟୋସ୍ନା ପ୍ରାୟ ବିରକ୍ତହୋଇ ଯାଇଥିଲା ସେତେବେଳକୁ । ରାଣୀହାଟପୋଲ ଉପରେ ଛିଡ଼ାହୋଇ ତଳେ ବହିଯାଉଥିବା କେନାଲପାଣି ସହିତ ଅନ୍ୟ ଦେଶର ଗନ୍ଧଗପିବା ପରେ ହିନ୍ଦ୍ ସିନେମାର ଉପର ବାରନ୍ଦାରେ ଜ୍ୟୋସ୍ନା ବୁଲିବାକୁ ଆରମ୍ଭ କଲା ।

ହିନ୍ଦ୍‌ସିନେମାର ପ୍ରାଙ୍ଗଣରେ ଶୋଇଥିବା କେତୋଟି ଇତର ଶ୍ରେଣୀର ବ୍ୟକ୍ତି ସ୍ୱପ୍ନ ଦେଖୁଥିଲେ ଗତରାତିରେ ଦେଖିଥିବା ଚଳଚ୍ଚିତ୍ରକୁ ଆଉଥରେ । ସେମାନଙ୍କ ଚଳଚ୍ଚିତ୍ରରେ ବାଧା ଆଣି ଜ୍ୟୋସ୍ନା ପ୍ରଶ୍ନକଲା, 'ସବୁଠୁ ସୁନ୍ଦର ଯୁବକ କିଏ ?'

- 'ଅକ୍ଷୟ ମହାନ୍ତି ।'

ଜ୍ୟୋସ୍ନାର ବିସ୍ମୟ ଓ ବିରକ୍ତି ମିଶି ଗୋଟାଏ ଆଶ୍ଚର୍ଯ୍ୟ ଧରଣର ଅଗ୍ନି ହୋଇ ଆକାଶକୁ ଭସ୍ମକରିଦେବାକୁ ବସିଲା । ତେଣୁ 'ସୃଷ୍ଟିର ନିୟମ' ହଠାତ୍ ଝଲକାଏ କଳାମେଘ ପଠାଇ ସେ ଜ୍ୱଳନକୁ ଶାନ୍ତକରିଦେଲା । ଏବଂ ଅଳ୍ପ ସମୟ ପରେ ଦେଖାଗଲା ଯେ ପ୍ରାୟ ଏକ ଆଶ୍ୱସ୍ତ ପୁରୁଷ ହୋଇ ଜ୍ୟୋସ୍ନା ଛିଡ଼ାହୋଇଛି ମଙ୍ଗଳାବାଗ ଛକରେ । କେତୋଟି ମାତାଲ ନିଶାଚର ବ୍ୟକ୍ତି ଥାନା କାନ୍ଥରେ ଆଉଜି ଶୋଇପଡ଼ିଥିଲେ । ସେମାନଙ୍କୁ ଧରି ହାଜତରେ ଭର୍ତ୍ତି କରିବାକୁ ଆସୁଥିଲାବେଳେ କେତୋଟି ପୁଲିସ୍ କନେଷ୍ଟବଳ ମଧ୍ୟ ସେଇ ଗେଟ୍ ପାଖରେ ହଠାତ୍ ଶୋଇପଡ଼ିଥିଲେ । ଜ୍ୟୋସ୍ନା ସେମାନଙ୍କ ନିଦରେ ଆଘାତ ନ ଘଟାଇ ରାସ୍ତାର ଅନ୍ୟପଟକୁ ଚାଲିଆସିଲା, ଯେଉଁଠି ଠାକୁରାଣୀ ଘର ଚାରିଜଣ ମଙ୍ଗଳାବାଗ ସାହିର ମୁଖିଆ

ପଶା ଖେଳୁଖେଳୁ ଶୋଇପଡ଼ିଥିଲେ ନିଘୋଡ ନିଦରେ । ସେମାନଙ୍କ ପାଶାକାଠି ଓ ଗୋଟିମାନେ ନିଜ ନିଜ ଭିତରେ ବୋହୂଚୋରି ଖେଳୁଥିଲେ ।

ଜ୍ୟୋତ୍ସ୍ନା ଦେବୀଘରେ ଟଙ୍ଗାହୋଇଥିବା ଗତ କେତେବର୍ଷର ଦୁର୍ଗାମୂର୍ତ୍ତିର ଫଟୋ ଦେଖିବାକୁ ଲାଗିଲା ।

ଜ୍ୟୋତ୍ସ୍ନା – 'ବାଃ ! ଚମତ୍କାର କଳା । ଏ ସହରରେ ଏତେ ଭଲ ଶିଳ୍ପୀ ଅଛନ୍ତି ?'

ମୁଖିଆମାନେ – 'ଏଗୁଡାକ କିଛି ନୁହେଁ । ଆପଣ ଅକ୍ଷୟ ମହାନ୍ତିର ଶିଳ୍ପ ଯଦି ଦେଖିବେ...'

ଜ୍ୟୋତ୍ସ୍ନା ଏଥର କିନ୍ତୁ ଉତ୍ତ୍ୟକ୍ତ ହୋଇ ଦଉଡ଼ିବାକୁ ଆରମ୍ଭ କଲା । କିଛି ସମୟ ଦୌଡ଼ିବାପରେ ରାସ୍ତାରେ ଦେଖାଗଲା ଶୁଖିଲା ଦେବଦାରୁ ପତ୍ରର କେତୋଟି ତୋରଣ । ଜ୍ୟୋତ୍ସ୍ନା ଆଶ୍ଚର୍ଯ୍ୟ ହୋଇ ଚାହିଁଲା ତୋରଣକୁ । କେଉଁ ସମ୍ମାନାସ୍ପଦ ବ୍ୟକ୍ତି ଉଦ୍ଦେଶ୍ୟରେ ଏଗୁଡ଼ିକ ନିର୍ମିତ ! ତୋରଣସବୁ ଜ୍ୟୋତ୍ସ୍ନାକୁ ବାଟବତେଇ ନେଇଆସିଲା ଷ୍ଟାଡିଅମ୍ ଦିଗକୁ । ଆଗରେ ଦେଖାଯାଉଛି, ତୁଷାର ବର୍ଣ୍ଣର ଜାହାଜ ଗୋଟିଏ ସବୁଜ ରଙ୍ଗ ସାଗରରେ ଭାସିଲା ପରି । ଏଇଟା ଷ୍ଟାଡ଼ିଅମ୍ । ଗ୍ୟାଲେରୀ ସାରା ସହର ତମାମ ମଣିଷର ଦେହର ଗନ୍ଧ । କି ଖେଳ ଚାଲିଥିଲା ଏଠି ? ଅଥବା କାହାକୁ ସ୍ୱାଗତ କରାଯାଇଥିଲା ? ଜ୍ୟୋତ୍ସ୍ନା ଏଣେତେଣେ ଦେଖିବାକୁ ଚେଷ୍ଟାକଲା – ନୀରବତାସବୁ ଘାସ ହୋଇ ଷ୍ଟାଡ଼ିଅମ୍ ପଡ଼ିଆରେ ଛାଇହେଇଛନ୍ତି – ଜ୍ୟୋତ୍ସ୍ନା ବାହାରକୁ ଆସିଲା । ଗୁର୍ଖା ସିପେହିର ମୁହଁରେ ଚକ୍‌ଚକ୍ ଦର୍ପଣ । ଜ୍ୟୋତ୍ସ୍ନା ନିଜ ମୁହଁ ଦେଖିବାକୁ ଚେଷ୍ଟାକଲା ଓ ପ୍ରଶ୍ନକଲା ।'

– 'ଏ, କାହାକୁ ସ୍ୱାଗତ ଜଣାଉଥିଲ ବାହାଦୁର ?'

ବାହାଦୁର – 'ପୃଥିବୀ ଅଲମ୍ପିକ୍‌ରେ ଭାରତର ଗୌରବ ଅକ୍ଷୁଣ୍ଣ ରଖିଥିବା ଖେଳାଳିଙ୍କୁ ।'

ଜ୍ୟୋତ୍ସ୍ନା – 'କିଏ ସେ ?'

ବାହାଦୁର – 'ଅକ୍ଷୟ ମହାନ୍ତି ।'

ଜ୍ୟୋତ୍ସ୍ନା ଫେରିଆସିଲା ରେଡ଼ିଓ ଷ୍ଟେସନ୍ ପାଖକୁ । ସେତେବେଳେ ରେଡ଼ିଓ ଷ୍ଟେସନ୍ ଫାଟକ ପାଖ ଖଜୁରିଗଛରେ ଜଣେ ଦୁଃସ୍ଥ କଳାକାରର ପ୍ରେତ ଗାଉଥିଲା ବସି 'କ୍ଷ' ଚମ୍ପୂ । ଜ୍ୟୋତ୍ସ୍ନା ପ୍ରେତକୁ ପ୍ରଶ୍ନକଲା, 'ଶ୍ରେଷ୍ଠ ଗାୟକ କିଏ ?' ପ୍ରେତ ଉତ୍ତରଦେଲା – 'ଅକ୍ଷୟ ମହାନ୍ତି ।'

ଜ୍ୟୋତ୍ସ୍ନା ଏଥର ବିଧିବଦ୍ଧ ବିରକ୍ତି ନେଇ ଛିଡ଼ାହେଲା ଚଣ୍ଡୀଛକ ଉପରେ । ନିକଟରେ ଗୋଟିଏ ବିରାଟ ବହିଥାକ ପରି ମହିଳା କଲେଜର ବିଜ୍ଞାନ ବିଭାଗ । ସବୁଜ ବଗିଚାର କେଉଁଏକ କୋଣରେ ବିରାଟ ଛାତ୍ରାବାସ – ଯେହେତୁ ଏହି ହଷ୍ଟେଲର ଝରକାସବୁ ଉତ୍ତର-ଦକ୍ଷିଣ ଦିଗକୁ ଉନ୍ମୁକ୍ତ – ସେହେତୁ ଜ୍ୟୋତ୍ସ୍ନା ତା' ଭିତରକୁ ପ୍ରବେଶ କରିବାକୁ ଇଚ୍ଛାପ୍ରକାଶ କଲା ନାହିଁ ।

## ଲୋହିତ ଗଙ୍ଗା

ଚଣ୍ଡୀମନ୍ଦିର ମୁଖଶାଳାରେ ଥିବା ପଥର ସିଂହ ସେତେବେଳେ ରାତ୍ରିର ସଂଜିବନୀ ପାଇ ଜୀବନ୍ତ ହୋଇଉଠିଛି ଏବଂ ସେ ସେତେବେଳେ ନିଜକୁ ସଜାଉଥିଲା ଦେବୀଙ୍କୁ ବହନକରି ସହର ପରିକ୍ରମାରେ ଯିବାପାଇଁ ।

- 'ତୁମ ଦେହରେ ବହୁ ନରନାରୀ ମଥାଛୁଇଁ ଯାଇଛନ୍ତି । କୁହ ଦେଖି ସବୁଠୁ ସୁନ୍ଦରୀ କିଏ ଏହି ସହରରେ ?' ଜ୍ୟୋସ୍ନା ପ୍ରଶ୍ନକଲା ।

ଜ୍ୟୋସ୍ନା ଏ ପ୍ରଶ୍ନ କରିଥିଲା, କାରଣ ଜଣେ ପୁରୁଷ ସମ୍ପର୍କରେ ସେ ବହୁତ ବେଶି ଶୁଣି ସାରିଥିଲା - ଏବଂ ସେ ପୁରୁଷର ନାମ ପୁଣିଥରେ ଶୁଣିବାପାଇଁ ସେ ଆଦୌ ପ୍ରସ୍ତୁତ ନଥିଲା । ଜୀବନ୍ତ ସିଂହ କିନ୍ତୁ ଅପ୍ରସ୍ତୁତ ପରି ଉତ୍ତରଦେଲା, 'ମୁଁ ତାହାର ନାମ କହିପାରିବି ନାହିଁ । କିନ୍ତୁ ସେ ଝିଅଟି ଅକ୍ଷୟ ମହାନ୍ତିର ପ୍ରେମିକା ।'

ତା'ପରେ ଜ୍ୟୋସ୍ନା ମୋ ଘର ଆଡ଼କୁ ଧୀର ପଦକ୍ଷେପରେ ଆସିଲା । ମୋ ଝରକାଦେଇ ଉଙ୍କିମାରିଲା । ମୋ ଶେଯରେ ତା'ର ନରମ ନିସ୍ତବ୍ଧ ହାତ । ଆଉ ଧୀରେ ଧୀରେ ସେ ହାତ ମୋ ବିଛଣାରେ ମିଳେଇଗଲା । କାରଣ ସେତେବେଳକୁ ସକାଳ ହୋଇଯାଇଥିଲା ।

ଏ ଘଟଣା ଆପଣମାନଙ୍କୁ ଅବାସ୍ତବ ଲାଗିପାରେ । ଆପଣ ହୁଏତ ମୋତେ ସମ୍ପୂର୍ଣ୍ଣ ଅବିଶ୍ୱାସ କରୁଥିବେ, କିନ୍ତୁ ଏ ଘଟଣା ଘଟିଥିଲା ଏବଂ ନିଶ୍ଚିତରେ ଘଟିଥିଲା । ଅବଶ୍ୟ ସେତେବେଳେ ମୋର ବୟସ ଉଣିଶ ଏବଂ ମୋର ପ୍ରେମିକାର ବୟସ ମାତ୍ର ତେର ।

# ରଫିକ୍ ମିଆଁ

ରଫିକ୍ ମିଆଁ ରିକ୍ସା ଚଲାଏ । ତା'ର ନିଜର ବୋଲି କେହି ନାହାନ୍ତି । ଆଗରୁ ସ୍ତ୍ରୀପିଲା ସବୁ ଥିଲେ । କିନ୍ତୁ ତା' ସ୍ତ୍ରୀ ତାକୁ ଛାଡ଼ି ଚାଲିଯାଇଛି । ଆଉ ପିଲାଗୁଡା ଖାଇବାପିଇବାକୁ ନପାଇ ସବୁ ମରିଗଲେ । ରଫିକ୍ ତା' ରିକ୍ସା ଉପରେ ବସି ବସି ଭାବେ, ଏମିତି ଲୋକ କାହିଁକି ଭଲ ପାଆନ୍ତି ଆଉ ଛାଡ଼ି ଚାଲିଯାଆନ୍ତି ! ସେ ତ ତା' ସ୍ତ୍ରୀ ପ୍ରତି କେବେ ଅନ୍ୟାୟ କରିନି । ସବୁ ପର୍ବରେ ସେ ତା' ସ୍ତ୍ରୀକୁ ଲୁଗା ଦେଇଛି । କିନ୍ତୁ ତା' ସ୍ତ୍ରୀ ଥିଲା ଅତି କଳିହୁଡୀ । ସେ କଥାକଥାକେ କଳି ଲଗାଏ ରଫିକ୍ ସହିତ କିନ୍ତୁ ରଫିକ୍ ବଡ଼ ଥଣ୍ଡାମିଂଜାସ୍‌ର ଲୋକ । ସେ ବକ୍‌ବକ୍ କରିବାକୁ ଭଲପାଏନା । ତା' ସ୍ତ୍ରୀ ପାଟିତୁଣ୍ଡକଲେ ସେ ଚୁପ୍‌ଚାପ୍ ରହିଯାଏ । ବାହାର ବାରଣ୍ଡାରେ ଦୁଇଦମ୍ ଗଂଜେଇ ଟାଣିଦେଇ ବସିଯାଏ ।

ରଫିକ୍ ମିଆଁ ଜୀବନ ସଂପର୍କରେ କେହି ଗବେଷଣା କରି ନାହାନ୍ତି କିମ୍ବା ଚେଷ୍ଟା କରିନାହାନ୍ତି । ଯେମିତି ସେ ସମାଜର ଗୋଟେ ଅଯୋଗ୍ୟ ବ୍ୟକ୍ତି । ରଫିକ୍ ମିଆଁ ବି ଜାଣେ ଯେ ଏଇ ପାଠପଢୁଆ ଲୋକମାନଙ୍କର ଗୋଟେ ଅଲଗା ରକ୍ତ ।

ତା' ସ୍ତ୍ରୀ ତାକୁ ଛାଡ଼ି ଚାଲିଗଲା ଅଥଚ ସେ ତାକୁ ତଲାକ୍ ବୋଲି ତିନିଥର କହିନି । ସାହିରେ କହିଲେ ଯେ ରଫିକ୍ ମିଆଁ ଅତ୍ୟଧିକ ଗଂଜେଇ ଟାଣିବାରୁ ତା' ସ୍ତ୍ରୀ ତାକୁ ଛାଡ଼ି ଚାଲିଗଲା । ସ୍ତ୍ରୀ ଛାଡ଼ି ଚାଲିଗଲା ସତ, କିନ୍ତୁ ରଫିକ୍ ମିଆଁ ପାଖରେ ପୁଅଝିଅଙ୍କୁ ଛାଡ଼ିଦେଇ ଚାଲିଗଲା ।

ରଫିକ୍ ମିଆଁର ଇଚ୍ଛା ଥିଲା, ପୁଅଝିଅଙ୍କୁ ପାଠପାଢ଼େଇବ କିନ୍ତୁ ସମ୍ବଳ ଅଭାବରୁ ସେଇଟା ସମ୍ଭବ ହେଲା ନାହିଁ । ପୁଅକୁ ନେଇ ଗୋଟେ ସାଇକେଲ ମରାମତି ଦୋକାନରେ ରଖେଇଦେଲା । ସେ ଦୁଇ ପଇସା ରୋଜଗାର କରେ । ଝିଅଟି ଚାରିପାଂଚଟି କୁକୁଡ଼ା ପାଳିଥିଲା । ସେମାନେ ଅଣ୍ଡାଦେବା ଆରମ୍ଭ କଲେ । ଝିଅ ଗୋଟିଏ ବ୍ୟାଗରେ ଅଣ୍ଡା ନେଇ ଘର ଘର ବୁଲେ, ଆଉ ବେଶ୍ ଦୁଇପଇସା ପାଏ । ଆଜିକାଲି ରଫିକ୍ ମିଆଁ ରିକ୍ସା ନେଇ ନ ଗଲେ ମଧ୍ୟ ଘରେ କିଛି ଅସୁବିଧା ହୁଏନା ।

କିନ୍ତୁ ଅସୁବିଧା ଆରମ୍ଭ ହୋଇଗଲା ଯେତେବେଳେ ଘୁମାରୋଗରେ ସବୁ କୁକୁଡ଼ା ମରିଗଲେ । ତା'ର କିଛିଦିନ ପରେ ପୁଅର ଚାକିରି ଚାଲିଗଲା । ଦୁଇପିଲା କିଛିଦିନ ଖାଇବାକୁ ପାଇଲେନି । ଦୁହିଁଙ୍କୁ ଏକାସାଂଗେ ଜ୍ୱର ହେଲା । ରଫିକ୍ ମିଆଁ ପାଖରେ ପଇସା କାଇଁ ଯେ ସେ ଡାକ୍ତରଙ୍କୁ ଡାକିବ । ସେ ଆକାଶକୁ ଅନେଇ ବସିଥାଏ, କିନ୍ତୁ ଆକାଶରୁ ତ ଡାକ୍ତର, ଔଷଧ ଖସିଆସିବେନି । ରୋଗଶଯ୍ୟାରେ ପଡ଼ି ପଡ଼ି ତା' ପିଲାମାନେ ମରିଗଲେ । ରଫିକ୍ ମିଆଁ ସେମାନଙ୍କୁ ନେଇ କବରସ୍ଥାନରେ ଦଫନେଇ ଆସିଲା । ତା'ପରେ ରଫିକ୍ ମିଆଁ ଏକା । ଏବେ ସେ କେବଳ ରିକ୍‌ସା ଗଦି ଉପରେ ବସି ବସି ଭାବେ ଯେ ତା' ଉପରେ ଏମିତି ଅନ୍ୟାୟ କାହିଁକି କରାଗଲା !

ଯେଉଁ ଗଳିମୁଣ୍ଡରେ ସେ ରିକ୍‌ସା ନେଇ ସବୁଦିନେ ବସେ, ସେଇ ଗଳିରେ ଥାଆନ୍ତି ଜଣେ ଡାକ୍ତର । ଏବେ ଏବେ ଡାକ୍ତରୀ ପାସ୍ କରିଛନ୍ତି । ବାହାଘର ହୋଇନି ବୋଧହୁଏ । ଡାକ୍ତରବାବୁ ପ୍ରତ୍ୟେକ ଦିନ ନଅଟାବେଳକୁ ଗଳି ଭିତରୁ ଚାଲିଚାଲି ବାହାରନ୍ତି ଆଉ ରଫିକ୍ ମିଆଁ ରିକ୍‌ସାରେ ବସି ଡାକ୍ତରଖାନା ଯାଆନ୍ତି । ଅନେକଦିନ ପର୍ଯ୍ୟନ୍ତ ଦୁହିଁଙ୍କ ସଂପର୍କ କେବଳ ବ୍ୟାବସାୟିକ ହୋଇ ରହିଲା । ଡାକ୍ତରବାବୁ ଗମ୍ଭୀର । ରଫିକ୍ ମଧ୍ୟ ସାହସ କରି ତାଙ୍କୁ କିଛି ପଚାରିପାରେନା ।

କିନ୍ତୁ ଏକଥା ନିଶ୍ଚିତ ଯେ ଡାକ୍ତରବାବୁ ରଫିକ୍ ରିକ୍‌ସାରେ ଡାକ୍ତରଖାନାକୁ ଯିବେ । ସେ ସମୟରେ ଆଉ କୌଣସି ଲୋକ ଯଦି ରଫିକ୍ ମିଆଁକୁ ଡାକେ ତେବେ ସେ କହିଦିଏ – 'ନାହିଁ ସବାର ଅଛି' । ସ୍ଥାନୀୟ ଲୋକଙ୍କର ଏମିତି ଅଭ୍ୟାସ ହୋଇଗଲା ଯେ ସେଇ ନିର୍ଦ୍ଦିଷ୍ଟ ସମୟ, ମାନେ ନଅଟାରୁ ଦଶଟା, ଭିତରେ କେହି ରଫିକ୍‌କୁ ଡାକନ୍ତି ନାହିଁ ।

ଏଣିକି ରଫିକ୍ ମିଆଁ ପ୍ରତିଦିନ ତା' ରିକ୍ସା ଆଣି ଡାକ୍ତରବାବୁଙ୍କ ଘର ଦୁଆରମୁହଁରେ ଲଗେଇ ରଖିଥାଏ । ମଝିରେ ରଫିକ୍‌ର ଦେହ ଖରାପ ହେଲା । ସେ ଗୋଟେ ସପ୍ତାହ ପର୍ଯ୍ୟନ୍ତ ଆସିପାରିଲାନି । ଡାକ୍ତରବାବୁ ଅନ୍ୟ ରିକ୍‌ସାରେ ଗଲେ ସିନା କିନ୍ତୁ ତାଙ୍କ ମନ ଖୋଜୁଥାଏ ରଫିକ୍ ମିଆଁକୁ ।

ନୂଆ ରିକ୍‌ସାବାଲା ରିକ୍‌ସାରେ ଯାଉ ଯାଉ ସେ ପଚାରିଲେ –

– 'ଆରେ, ତୁ ରଫିକ୍‌କୁ ଚିହ୍ନିଚୁ ?'

– 'ଚିହ୍ନିଛି ଆଜ୍ଞା, ସେତ ମତେ କହିଲା ବାବୁଙ୍କର ଅସୁବିଧା ହେବ । ମୁଁ ସେଇଥିଲାଗି ଗଳିମୁଣ୍ଡରେ ଆସି ତା'ରି ଜାଗାରେ ବସେ । ଆଉ ମତେ ବି ସେ କହିଛି ଆପଣ ଙ୍କିଦିନ କେତେ ଭଡା ଦିଅନ୍ତି ।'

– 'ରଫିକ୍ ମିଆଁର କ'ଣ ଦେହ ଖରାପ ?'

– 'ଆଜ୍ଞା, ତାକୁ ଚାରିପାଂଚଦିନ ହେବ ଭାରି ଜର । କିଛି ଖାଉନି । ମୁଁ ରିକ୍ସା ସବାରି

କରିସାରିଲା ପରେ ତା' ପାଖକୁ ଯାଇ କ'ଣ ଟିକେ ଖାଇବାକୁ ନେଇଯାଏ, ତା' ବି ଖାଇଦେଲେ ତା'ର ବାନ୍ତି ହୁଏ ।

- 'ତା' ଘର କୋଉଠି ?'

- 'ଆପଣଙ୍କ ଗଳିରେ ଆଜ୍ଞା । ସେ ମୁଣ୍ଡକୁ ଯୋଉ ଚାଳଘରଟା ଅଛି, ସେଇଟା ତା' ନିଜ ଘର ।'

ଡାକ୍ତରବାବୁ ଆଉ ପ୍ରଶ୍ନ କଲେନି । ଦିନ ଦୁଇଟାବେଳକୁ ଡାକ୍ତରବାବୁ ଫେରିଲେ ମେଡ଼ିକାଲରୁ । ହାତରେ ଷ୍ଟେଥୋ । ସେ ସିଧା ଚାଲିଲେ ରଫିକ୍ ମିଆଁ ଘରକୁ । ବିଚରା ଶୋଇଛି । ନ ଖାଇ ନ ପିଇ କେବଳ କଂକାଳସାର ହୋଇଯାଇଛି । ଡାକ୍ତରବାବୁଙ୍କୁ ନମସ୍କାର କଲା । ଡାକ୍ତରବାବୁ ଭଲଭାବରେ ପରୀକ୍ଷା କରି କହିଲେ -

'ତୋର ତ କେହି ନାହାନ୍ତି ଔଷଧ ଆଣିଦେବାକୁ, ମୋ ପାଖରେ କିଛି ସାମ୍ପଲ୍ ଅଛି ମୁଁ ଦେଖେ । ଚାକରଟୋକା ହାତରେ ପଠେଇଦଉଛି । କିନ୍ତୁ ଔଷଧ ଖାଇବା ପୂର୍ବରୁ ତତେ ଟିକେ ଖାଇବାକୁ ପଡ଼ିବ ।'

ଠିକ୍ ପନ୍ଦର ମିନିଟ୍ ପରେ ଚାକରଟୋକା ଗୋଟେ ପ୍ୟାକେଟ୍ ବିସ୍କୁଟ୍ ଓ ଔଷଧ ଧରି ପହଂଚିଲା । ଚାକରଟୋକା ମାଠିଆଏ ପାଣି ଆଣି ମଧ୍ୟ ଦେଲା । ରଫିକ୍ ବିସ୍କୁଟ୍ ଖାଇସାରି ଔଷଧ ଖାଇଲା ।

ଅଳ୍ପଦିନ ଭିତରେ ରଫିକ୍ ପୂରା ସୁସ୍ଥ ହୋଇଗଲା । ସେଦିନ ସେ ଡାକ୍ତରବାବୁଙ୍କ ଘରକୁ ଯାଇ ଡାକ୍ତରବାବୁଙ୍କୁ ଧନ୍ୟବାଦ ଜଣାଇଲା । ଡାକ୍ତରବାବୁ କହିଲେ - 'ଆରେ, ତତେ ଟାଇଫଏଡ୍ ହୋଇଯାଇଥିଲା । ଯା'ହେଉ, ଖୁବ୍ ଶୀଘ୍ର ଭଲହୋଇଗଲା । ଏବେ ତତେ ଖାଲି ବିଶ୍ରାମ ଦରକାର ।'

'ଚଳିବି କେମିତି ବାବୁ ?'

- 'ଆରେ ଗଣ୍ଡେ ଖାଇବା କଥା ତ ? ମୋ ଚାକରଟୋକା ପ୍ରତି ଓଳି ନେଇ ଖାଇବାକୁ ଦେଇଆସିବ ।'

ବର୍ତ୍ତମାନ ରଫିକ୍ ଆଗରେ ଡାକ୍ତରବାବୁ ଜଣେ ଫରିସ୍ତା ଦେବତା । ରଫିକ୍ ଚାରିପାଂଚଦିନ ପରେ ଚାଙ୍ଗାହୋଇଉଠିଲା । ସେ ରିକ୍ସା ଧରି ଗଳି ମୁଣ୍ଡରେ ପୁଣି ବସିବାକୁ ଆରମ୍ଭକଲା । ପୁଣି ସେଇ ନଅଟାବେଳେ ଡାକ୍ତରବାବୁଙ୍କୁ ନେଇ ମେଡ଼ିକାଲ ଯିବା ଆଉ ପୁଣି ଦୁଇଟାବେଳେ ମେଡ଼ିକାଲ୍‌ରୁ ଫେରିବା ।

ଦିନେ ଡାକ୍ତରବାବୁ ବାଟରେ ଯାଉ ଯାଉ ରଫିକ୍‌କୁ ପଚାରିଲେ -

- 'ଆରେ, ଧର୍ମରେ ତ ତୁମେ ବାରମ୍ବାର ବିବାହ କରିପାରିବ ? ତୁ କାହିଁକି ଆଉଥରେ ବାହାହୋଇଯାଉନୁ ?'

'ଆଜ୍ଞା ଆଉ ଦରକାର ନାହିଁ । ଆମ ଧର୍ମରେ ଥିଲେ ବି ମୁଁ ଆଉ ବାହା ହେବିନି ।'

– 'କାହିଁକି ତୋ'ର କ'ଣ ଅସୁବିଧା ?'

– 'ବାବୁ, ଅସୁବିଧା କିଛି ନାହିଁ । ପୁରୁଷର ଘରବାଡ଼ି ଅଛି । ଯାହା ରୋଜଗାର କରୁଛି, ସେଥିରେ ଦୁଇପ୍ରାଣୀ ଆମେ ଚଳିଯିବୁ, କିନ୍ତୁ କ'ଣ ଦରକାର ? ସ୍ନେହ, ପ୍ରେମ, ମୁହବତ୍ ଯାହା କୁହନ୍ତୁ ଜଣକ ଜୀବନରେ ଗୋଟିଏ ସାହାରା ଦରକାର । ଆପଣଙ୍କର ମେହେରବାନିରେ ମୁଁ ବଂଚିଛି । ମତେ ଆଉଥରେ ଘରଦ୍ୱାର କରିବାକୁ ଇଚ୍ଛା ନାହିଁ । ଆଉଥରେ ପିଲାପିଲି ହେବେ । ଆଉଥରେ ଖାଇବାକୁ ନ ପାଇ ମରିବେ । କାହିଁକି ? ମୁଁ ଠିକ୍ ଅଛି ।'

କଥା କହୁକହୁ ମେଡ଼ିକାଲ୍‌ରେ ଆସି ପହଂଚିଗଲା । ଡାକ୍ତରବାବୁ ରିକ୍‌ସାରୁ ଓହ୍ଲେଇ ତାକୁ ପଇସା ଦେଲେ । ଡାକ୍ତରବାବୁ ଦୁଇଟାବେଳକୁ ବାହାରିବେ । ରଫିକ୍ କେବଳ ରୋଜଗାର କରେ ଦଶଟାରୁ ଦୁଇଟା ଭିତରେ । କୁଆଡ଼େ ସବାରି ନେଇ ଯାଇଥାଉନା କାହିଁକି ସେ ଠିକ୍ ଦୁଇଟାବେଳେ ମେଡ଼ିକାଲ୍ ବଉଳଗଛ ମୂଳେ ପହଂଚିଯିବ । ତା'ପରେ ଡାକ୍ତରବାବୁଙ୍କୁ ନେଇ ଘରକୁ ଫେରିବ । ଡାକ୍ତରବାବୁ ରିକ୍‌ସାରୁ ଓହ୍ଲାଇ ଗଲାପରେ ଗଳିମୁଣ୍ଡରେ ଥିବା ବରାପିଆଜି ଦୋକାନରୁ ପେଟେ ଖାଇ ତା' ଘରେ ଯାଇ ଶୋଇପଡ଼ିବ ।

ଘର କହିଲେ ବଖରାଏ । ଆଉ ଗୋଟେ ବଖରା ଥିଲା ଗତବର୍ଷ ତା'ବି ଭାଂଗି ଯାଇଛି । ରଫିକ୍‌ର ସେ ଘରକୁ ପୁଣିଥରେ ମରାମତି କରିବାକୁ ଇଚ୍ଛା ନାହିଁ କି ସମ୍ବଳ ମଧ୍ୟ ନାହିଁ ।

ଦିନେ ଡାକ୍ତରବାବୁ ରଫିକ୍‌କୁ ଗୋଟେ ନୂଆଖବର ଦେଲେ । ଡାକ୍ତରବାବୁ ବାହା ହେଉଛନ୍ତି, ସେ ବି ବେଶି ଦୂର ସହରରେ ନୁହେଁ । ଏଇ ସହରର ନୂଆ ବଜାରରେ । ରଫିକ୍ ମିଆଁ ଖୁସି ଅସମ୍ଭାଳ । ସେ ତା'ର ସବୁ ରିକ୍‌ସା ସାଥୀଙ୍କୁ ଜଣେଇଦେଲା ଯେ ତା' ଡାକ୍ତରବାବୁ ବାହା ହେଉଛନ୍ତି ।

ଡାକ୍ତରବାବୁଙ୍କ ବାହାଘରରେ ରଫିକ୍‌ର କେତେ କାମ । କୋଉଠୁ ଡେକ୍‌ଚି, ହଣ୍ଡା ନେଇ ଆସୁଛି ତ ପୁଣି କୋଉ ଡେକୋରେଟର ପାଖରୁ ଚାନ୍ଦୁଆ ଇତ୍ୟାଦି ନେଇ ଆସୁଛି । ଖାଇବା ପାଇଁ ଟେବୁଲ ଚେୟାର ଏଇ ରିକ୍‌ସାରେ ଆଣିବାକୁ ଅସୁବିଧା ହେବ ବୋଲି ରଫିକ୍ ଗୋଟେ ଟ୍ରଲି ରିକ୍‌ସା ଭଡାରେ ଆଣିଛି । ଡାକ୍ତରବାବୁଙ୍କର ମୁଣ୍ଡ ଘୂରେଇବାର କିଛି ନାହିଁ । ତିନିଦିନ ହେଲା କେବଳ ଡାକ୍ତରବାବୁଙ୍କୁ ଡାକ୍ତରଖାନା ନବାଆଣିବା ସମୟ ଛଡ଼ା ଅନ୍ୟ ସମୟ ଡାକ୍ତରବାବୁଙ୍କ ବାହାଘର କାମରେ ରଫିକ୍ ବ୍ୟସ୍ତ । ଡାକ୍ତରବାବୁ ପଇସା ଯାଚିଲେ ସେ ନଉନି । କେବଳ କହୁଚି –

'ଆଜ୍ଞା, ବାହାଘର ସରିଯାଉ । ପରେ ହିସାବ କରି ଦେବେନି ?'

ରଫିକ୍ ଯେ ଡାକ୍ତରବାବୁଙ୍କୁ ଖୁବ୍ ଭଲପାଏ ଓ ଖାତିର କରେ ସେ ବିଷୟରେ

ଡାକ୍ତରବାବୁ ନିଃସନ୍ଦେହ । ରଫିକ୍ ତ ତା' ପରିଶ୍ରମ ପାଇଁ ପଇସା ନଉନି । ତେଣୁ ଡାକ୍ତରବାବୁ ଠିକ୍‌କଲେ, ତା' ପାଇଁ ଗୋଟେ ଭଲ ଡ୍ରେସ୍ ବନେଇଦେବେ । ଡ୍ରେସ୍ ମଧ୍ୟ ଆଣିଲେ କିନ୍ତୁ ରଫିକ୍ ସେ ପୋଷାକ ଦେଖି ହସି କହିଲା –

'ଆଜ୍ଞା, ଏ ଡ୍ରେସ୍ ପିନ୍ଧି ମୁଁ ରିକ୍‌ସା ଚଳେଇବି ? ମତେ ସବାରି ମିଳିବେ ନାହିଁ । ଠିକ୍ ଅଛି, କେବଳ ବାହାଘରବେଳେ ପିନ୍ଧିବି ।'

ବାହାଘର ଖୁବ୍ ଧୁମ୍‌ଧାମରେ ହୋଇଗଲା । ପ୍ରସେସନ୍‌ରେ ବ୍ୟାଣ୍ଡପାର୍ଟି ଓ ଆଲୋକ ସଜାର ଭାର ସବୁ ରଫିକ୍ ଉପରେ । ଜଣାଯାଉଥିଲା, ଆଗରୁ ଏତେ ଦାୟିତ୍ୱ ତାକୁ କେହି ଦେଇ ନଥିଲେ ।

ବାହାଘର ସରିଲା । ରଫିକ୍ ଖୁବ୍ କ୍ଲାନ୍ତ ହୋଇ ପୂରା ଗୋଟେ ଦିନ ଶୋଇପଡ଼ିଲା । ଦୁଇଚାରିଦିନ ପରେ ଡାକ୍ତରବାବୁଙ୍କ ଚାକର ଆସି ଖବରଦେଲା ଯେ ତାଙ୍କୁ ଡାକ୍ତରବାବୁ ଖୋଜୁଛନ୍ତି ଓ ସେ ତା' ରିକ୍‌ସା ନେଇ ଆସିବ । ରିକ୍‌ସାଟା ଅସନା ହୋଇ ପଡ଼ିଛି । ରଫିକ୍ ତା'ଘର ପାଖ ପାଣିଟ୍ୟାପ୍ ପାଖରେ ରିକ୍‌ସା ନେଇ ଭଲକରି ଧୋଇଦେଇ ତାକୁ ଚକ୍‌ଚକ୍ କରିଦେଲା । ଡାକ୍ତରବାବୁ କହିଛନ୍ତି ଚାରିଟାବେଳେ ଯିବାକୁ । ଚାରିଟାବେଳେ ତ ସେ ଡାକ୍ତରଖାନାକୁ ଯିବେନି । ତେବେ ଯିବେ କେଉଁଠିକି ?

ଠିକ୍ ଚାରିଟାବେଳେ ରଫିକ୍ ରିକ୍‌ସା ନେଇ ଡାକ୍ତରବାବୁଙ୍କ ଘର ଆଗରେ ଲଗେଇଲା । ଡାକ୍ତରବାବୁ ତାଙ୍କ ସ୍ତ୍ରୀଙ୍କ ସହ ବସି କହିଲେ –

'ଚାଲ, ନୂଆବଜାର । ମୋ ଶଶୁରଘରକୁ ।'

'ଅଭିକା ଚାଲିଲି ଆଜ୍ଞା ।'

ରଫିକ୍‌ର ସେଦିନ ଅଧିକା ଆନନ୍ଦ । ଡାକ୍ତରବାବୁ ବାହାହୋଇ ପ୍ରଥମେ ତାଙ୍କ ସ୍ତ୍ରୀକୁ ନେଇ ଯାଉଛନ୍ତି, ତା' ପୁଣି ତା'ରି ରିକ୍‌ସାରେ । ବାଟରେ ଯାଉ ଯାଉ ଅନ୍ୟ ରିକ୍‌ସାବାଲାଙ୍କୁ ଅନେଇ ହସି ହସି ଯାଉଥାଏ ରଫିକ୍ । ତା'ର ହସର ଅର୍ଥ ହେଉଛି ସେ ଡାକ୍ତରବାବୁ ଆଉ ତାଙ୍କ ସ୍ତ୍ରୀଙ୍କୁ ନେଇଯାଉଛି ।

ଡାକ୍ତରବାବୁ ଶଶୁରଘରେ ପହଂଚିଲେ । ଫାଟକ ପାଖରେ ତାଙ୍କ ଶଳାଶାଳୀମାନେ ପାଛୋଟି ନେବାକୁ ଛିଡ଼ା ହୋଇଥିଲେ । ଡାକ୍ତରବାବୁ ଓ ତାଙ୍କ ସ୍ତ୍ରୀ ଘର ଭିତରକୁ ଚାଲିଗଲେ । ରଫିକ୍ ମିଆଁ ଫାଟକ ପାଖରେ ରିକ୍‌ସା ଉପରେ ବସି ଆକାଶକୁ ଅନେଇ କେତେ କ'ଣ ସ୍ୱପ୍ନ ଦେଖିଯାଉଥାଏ । ଡାକ୍ତରବାବୁଙ୍କର ସ୍ତ୍ରୀଙ୍କର ଯେତେବେଳେ ପିଲା ହେବ ସେତେବେଳେ ସେ ହିଁ ରିକ୍‌ସାରେ ନେଇ ତାଙ୍କୁ ପ୍ରସୂତି ଭବନକୁ ନେଇଯିବ । ଡାକ୍ତରବାବୁଙ୍କର ପିଲାମାନେ ଯେତେବେଳେ ବଡ଼ ହେଇ ସ୍କୁଲକୁ ଯିବେ ସେତେବେଳେ ସେ ହିଁ ରିକ୍‌ସାରେ ପିଲାଙ୍କୁ

ନବାଆଣିବା କରିବ । ଏମିତି କେତେ କ'ଣ ଭାବିଯାଉଥାଏ ।

ଭାବନାରେ ବାଧାଦେଇ ଡାକ୍ତରବାବୁଙ୍କ ଶାଳୀ ଗୋଟେ ପ୍ଲେଟ୍‌ରେ କିଛି ମିଠା ନେଇଆସିଲା ରଫିକ୍ ପାଇଁ । ପ୍ରକୃତରେ ଡାକ୍ତରବାବୁ ତାକୁ କେତେ ନିଜର ବୋଲି ଭାବୁଛନ୍ତି ! ତାଙ୍କ ଶଶୁରଘରେ ବି ତା'ର ସମ୍ମାନ ଅକ୍ଷୁଣ୍ଣ ।

ସେଇଦିନଠୁ ସେ ଡାକ୍ତରବାବୁଙ୍କ ଘର ସହିତ ଆହୁରି ବେଶି ଜଡ଼ିତ ହୋଇଗଲା । ପରିବାପତ୍ର କିଣିବା, ମାସିକିଆ ସଉଦା ଆଣିବା, ସବୁ କାମରେ ରଫିକ୍ ହିଁ ଲୋଡ଼ା ।

କିନ୍ତୁ ଦଶବାର ଦିନ ପରେ ଦିନେ ରଫିକ୍ ଗଳିମୁଣ୍ଡରେ ବସିଥିଲାବେଳେ ଦେଖିଲା, ଡାକ୍ତରବାବୁ ସ୍କୁଟରରେ ଯାଉଛନ୍ତି । ତା' ଆଡ଼କୁ ଚାହିଁଲେନି ମଧ୍ୟ । ବୋଧହୁଏ ଏଇଟା ତାଙ୍କ ଯୌତୁକ ସ୍କୁଟର । ଚଲାନ୍ତୁ ଚଲାନ୍ତୁ, କିଛି ପରୱା ନାହିଁ । ତା' ରିକ୍‌ସାର ଆରାମ କ'ଣ ସ୍କୁଟରରେ ମିଳିବ । ବାବୁ ଆସିବେ, ଆସିବେ । ଯୌତୁକ ସ୍କୁଟର ଟିକେ ନୂଆ ନୂଆ ଚଢ଼ନ୍ତୁ । ବଳେ ଆସିବେନି କି ରଫିକ୍‌ର ରିକ୍‌ସା ପାଖକୁ ।

କିନ୍ତୁ ମାସ ପରେ ମାସ ବିତିଗଲା, ଡାକ୍ତରବାବୁ କେବଳ ସ୍କୁଟରରେ ଯାଉଛନ୍ତି । ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ ନେଇ ଯାଉଛନ୍ତି ସେଇ ସ୍କୁଟରରେ । କିନ୍ତୁ ରଫିକ୍ ତେବେ ବି ଆଶା ହରେଇନି । ଦିନେ ନା ଦିନେ ସ୍କୁଟର ଖରାପ ହେବ ଆଉ ଏଇ ଡାକ୍ତରବାବୁ ତା' ରିକ୍‌ସାରେ ବସିବେ, ଏଇ ଆଶାରେ ସେ ଗଳିମୁଣ୍ଡରେ ବସିଥାଏ ଆକାଶକୁ ଅନେଇ । ଡାକ୍ତରବାବୁଙ୍କ ସ୍କୁଟର ଠିକ୍ ଚାଲିଛି । ସେ ଯା ଭିତରେ ରଫିକ୍ ରିକ୍‌ସାରେ ବସିନାହାନ୍ତି ।

ରଫିକ୍ ମିଆଁ ଟିକେ ଚିଡ଼ିଚିଡ଼ା ଧରିଗଲା । କେହି ଲୋକ ତାକୁ ରିକ୍ସା ନେଇ ଆସିବାକୁ କହିଲେ ସେ ଆଜିକାଲି ଭଡା ଛିଣ୍ଡାଉଛି । ଆଗେ ତା' କରୁନଥିଲା । ଯିଏ ଯାହା ଦେଉଥିଲା, ତାକୁ ହସି ହସି ନେଉଥିଲା । କିନ୍ତୁ ଆଜିକାଲି ଚଢ଼ାଦରରେ ସେ ସବାରି ନଉଛି ।

ଦିନେ ଚାରିଟା ପାଂଚଟାବେଳେ ଡାକ୍ତରବାବୁଙ୍କ ଚାକରଟୋକା ଆସି ତାକୁ ଡାକିଲା । ପାଂଚମିନିଟ୍ ଭିତରେ ସେ ଯାଇ ଡାକ୍ତରବାବୁଙ୍କ ଦୁଆରମୁହଁରେ । ଡାକ୍ତରବାବୁ ନାହାନ୍ତି । ଅଛନ୍ତି ତାଙ୍କ ସ୍ତ୍ରୀ । ସେ ଗୋଟେ ପୁରୁଣା ସିଲ୍‌ଭର ଗିଲାସରେ ଚା' ଆଣିଦେଲେ । ତା'ପରେ କଥା ଆରମ୍ଭ କଲେ –

'ସେ ତମକୁ ଡାକି ନାହାନ୍ତି; ପ୍ରକୃତରେ ମୁଁ ତମକୁ ଡାକିଛି ।'

'କାହିଁକି, ମା' କୋଉଠିକି ଯିବାର ଅଛି ?'

'ଯିବାର ନାହିଁ, କିନ୍ତୁ ଗୋଟେ କଥା ଅଛି ।'

'କୁହନ୍ତୁ ।'

'ତମର ତ ପିଲାପିଲି କେହି ନାହାନ୍ତି ।

'ନା, ମୋର ଦୁଇଟା ପିଲା ଅନେକଦିନରୁ ମରିଯାଇଛନ୍ତି । କାହିଁ କ'ଣ ହେଲା ?'

'ନା, କିଛି ନୁହେଁ । ମୁଁ ଯାଙ୍କୁ କହିଲି, ତୁମକୁ କହିବାକୁ, କିନ୍ତୁ ଇଏ କହିଲେ ତୁମେ ନିଜେ କୁହ ।'

'କ'ଣ ଏମିତି କଥା ଯୋଉଟା ଡାକ୍ତରବାବୁ ନିଜେ କହି ପାରିବେନି ?'

ଡାକ୍ତରବାବୁଙ୍କ ସ୍ତ୍ରୀ ସହିତ ରଫିକ୍ ମିଆଁ ପ୍ରଥମଥର ପାଇଁ କଥାବାର୍ତ୍ତା କରୁଛି । ସେ ପୁଣି ଏମିତି ଗୁରୁତର କଥା ଯେ ଯାହାକୁ ଡାକ୍ତରବାବୁ ତାକୁ କହି ନପାରିବାରୁ ତାଙ୍କ ସ୍ତ୍ରୀ ଦ୍ୱାରା କୁହାଉଛନ୍ତି । ଡାକ୍ତରବାବୁଙ୍କ ସ୍ତ୍ରୀ କହିଲେ –

'ଦେଖ, ଆଜି ତୁମ ଡାକ୍ତରବାବୁ ଗୋଟିଏ କାର୍ କିଣିବାକୁ ଯାଇଛନ୍ତି । ମୁଁ କହିଲି, ସ୍କୁଟର ତ ଅଛି, ଆଉ ମିଛରେ କାର୍ କାହିଁ କିଣିବ ? ସେ ଶୁଣିଲେନି ।'

'ସେଇଠୁ ?'

'ସେ ଶୁଣିଲେନି । ମୁଁ ତାଙ୍କ ସହିତ ଅନେକ କଳିକଜିଆ କଲି । ବାହାଘର ହେବାର ପାଂଚବର୍ଷ ହୋଇଗଲା । ତମେ କାର୍ କିଣି ଯାଉଛ ହେଲେ ଆମେ ଏବେବି ଭଡାଘରେ ରହୁଛୁ । ଖଣ୍ଡେ ଜାଗା କିଣି ଘର କଲେ ହୁଅନ୍ତାନି ?'

'ନିଶ୍ଚୟ ନିଶ୍ଚୟ, ଠିକ୍ କହିଛନ୍ତି । ମୁଁ ଏ ସାହିରେ ରହିବି ଜାଣି ନଥିଲି ଏଇଟା ଭଡାଘର । ମୁଁ ଭାବିଥିଲି, ଏଇଟା ଡାକ୍ତରବାବୁଙ୍କ ନିଜ ଘର । ତେବେ କୋଉଠି ଜାଗା ବାଡ଼ି ଦେଖିବି ?'

'ଆମେ ଆଉ ଦୂରକୁ ଯିବୁନି । ଏଇ ସାହିରେ ତାଙ୍କ ପ୍ରାକ୍‌ଟିସ୍ ଭଲ ହେଉଛି । ତେଣୁ ତୁମକୁ ଡାକିଲି ଏଇଥିପାଇଁ ଯେ ତମର ତ ଏତେବଡ଼ ଜାଗା ପଡ଼ିଛି, ରହିବାକୁ ତମର ତ ବଖରାଏ ଘର ଦରକାର । ବାକି ଯେଉଁ ଗୁଣ୍ଠେ ଦେଢ଼ଗୁଣ୍ଠ ଅଛି ସେଇଟା ଆମକୁ ବିକିଦେଲେ ହୁଅନ୍ତାନି ? ଆମେ ବଜାର ଭାଉରେ ନବୁ । ଏଥିପାଇଁ ସେ ପଇସା ଖର୍ଚ୍ଚ କରିବେନି । ସେ କାର୍ କିଣିବେ ମୁଁ ଠିକ୍ କରିଛି, ତୁମେ ଯଦି ରାଜିହୁଅ ତେବେ ମୁଁ ମୋର ଗହଣାସବୁ ବିକ୍ରିକରି ତୁମ ଜମିଖଣ୍ଡକ କିଣିନେବି ।'

ରଫିକ୍‌ର ମୁଣ୍ଡ ଘୂରିଗଲା । ସେ ରହିବ କୋଉଠି ? ଡାକ୍ତରବାବୁ କୋଠା ବନେଇବେ ଆଉ ସେ ତା' ପାଖରେ ଖଣ୍ଡେ ଛୋଟିଆ ଚାଳଘର କରି ରହିବ ? ରଫିକ୍ ମିଆଁ ବୁଝିଲା, କାହିଁକି ଏକଥା ଡାକ୍ତରବାବୁ ତାକୁ କହିଲେନି । ଡାକ୍ତରବାବୁଙ୍କ ସହ ତା'ର ସଂପର୍କ ବର୍ଷ ବର୍ଷ ଧରି । ସେ ଡାକ୍ତରବାବୁଙ୍କ ଦୟାରେ ବଂଚିଛି । ତାଙ୍କରି ଔଷଧ, ତାଙ୍କରି ଭାତ ଖାଉଛି । ଡାକ୍ତରବାବୁ କହିଥିଲେ ହୁଏତ ସେ ଚଟ୍‌କରି ମନାକରି ପାରିନଥାନ୍ତା । କିନ୍ତୁ ଏବେ ଡାକ୍ତରବାବୁଙ୍କ ସ୍ତ୍ରୀଙ୍କୁ ସେ କ'ଣ କହିବ ?

କିଛି ସମୟ ଚୁପ୍‌ହୋଇ ବସିଗଲା ରଫିକ୍ । ତା'ପରେ କହିଲା -

'ଦେଖିବା ମା' ମୁଁ ଟିକେ ଭାବିଚିନ୍ତି କହିବି ।'

'ତୁମେ ଯାହା କହିବ ମତେ କହିବ । ଆଉ ମୁଁ ତୁମକୁ ଏ ବିଷୟରେ କହିଥିଲି ବୋଲି ଯାଙ୍କ ଆଗରେ କିଛି କହିବନି ।'

ରଫିକ୍ ଫେରିଆସିଲା ସେଦିନ ଡାକ୍ତରବାବୁଙ୍କ ଘରୁ । ମନଟା ତା'ର ଭଲ ନାହିଁ । ଡାକ୍ତରବାବୁ କାର୍ କିଣିବାକୁ ଯାଇଛନ୍ତି ଅଥଚ ତାଙ୍କର ଖଣ୍ଡେ ଘର ନାହିଁ! କାହିଁ ସେଇ ପଇସାରେ ସେ କ'ଣ ଗୋଟେ ଘର କିଣି ପାରିନଥାନ୍ତେ ? କିନ୍ତୁ ରଫିକ୍ ମିଆଁର ଡାକ୍ତରବାବୁ ସେ । ସେ କେବେ ଭୁଲ୍ କରିବେନି । କାର୍ କିଣିବା ହୁଏତ ତାଙ୍କର ଦରକାର ଥିବ ।

ଗଳିମୁଣ୍ଡରେ ବସି ଭାବୁଛି, ଏଇ ସମୟରେ ଦେଖିଲା ଡାକ୍ତରବାବୁଙ୍କ ସ୍କୁଟର ଆଉଜଣେ ନେଇ ଯାଉଛି । ସେ ସ୍କୁଟର ଆଗରେ ଛିଡାହୋଇଥିଲା । ପଚାରିଲା -

'ଡାକ୍ତରବାବୁଙ୍କ ସ୍କୁଟର ନବାକୁ ତମେ କିଏ ?'

'ମୁଁ କିଣିଲି ।' ସେ ଲୋକଟା କହିଲା ।

ରଫିକ୍ ଚୁପ୍‌ହୋଇଗଲା । ସଂଧ୍ୟାବେଳକୁ ଡାକ୍ତରବାବୁ ଗୋଟେ କାର୍ ନେଇ ଗଳି ଭିତରେ ପଶିଲେ ।

ମାସେ ଦୁଇମାସ ରଫିକ୍ ମିଆଁର ଦେଖା ମିଳିଲାନି । ସେ ନିଜ ରିକ୍‌ସାକୁ ଅନ୍ୟ ରିକ୍‌ସାବାଲାକୁ ଭଡାଦେଇ ସେଇ ତିନି ଟଙ୍କାରେ ଚଳୁଛି । ଡାକ୍ତରବାବୁ ଭାବିଲେ, ରଫିକ୍ ମିଆଁର ଦେହ ଖରାପ । ସେ ଦିନେ ସଂଧ୍ୟାବେଳେ ରଫିକ୍ ମିଆଁକୁ ଦେଖିବାକୁ ଗଲେ କିନ୍ତୁ ରଫିକ୍ ମିଆଁ ନଥିଲା ।

କିଛିଦିନ ପରେ ସେଇ ଗଳିରେ ଥିବା ମୁସଲମାନ ଓକିଲ ଶେଖ୍ ଅଲୀବାବୁ ଡାକ୍ତରବାବୁଙ୍କ ଘରେ ପହଂଚିଲେ । ଡାକ୍ତରବାବୁ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଅନେଇରହିଲେ । ଅଲୀବାବୁ କହିଲେ -

'ଆପଣ ଆଶ୍ଚର୍ଯ୍ୟ ହେଉଛନ୍ତି ମତେ ଦେଖି, କିନ୍ତୁ ବର୍ତ୍ତମାନ ମୁଁ ଯେଉଁ ଖବର କହିବି ତା' ଶୁଣି ଆପଣ ଆହୁରି ଆଶ୍ଚର୍ଯ୍ୟ ହେଇଯିବେ ।'

'କ'ଣ ଘଟଣା ?'

'ରଫିକ୍ ମିଆଁ କୁଷ୍ଠାଶ୍ରମରେ ।'

'ଆରେ, ମତେ ତ ସେ କେବେହେଲେ କହିନି ଯେ ତାକୁ କୁଷ୍ଠରୋଗ ହୋଇଛି ବୋଲି ?'

ଏଇ କଥାବାର୍ତ୍ତା ଡାକ୍ତରବାବୁଙ୍କ ସ୍ତ୍ରୀ ବୋଧହୁଏ ଶୁଣିପାରିଲେ । ସେ ଚଟ୍‌କରି ଯେଉଁ

ସିଲଭର ଗ୍ଲାସରେ ରଫିକ୍ କୁ ଚା'ପିଇବାକୁ ଦେଇଥିଲେ ସେଇଟାକୁ ବାରିଆଡ଼ ପାଚିରି ସେପାଖକୁ ଫୋପାଡ଼ିଦେଲେ । ଓକିଲବାବୁ କହିଲେ -

'କିନ୍ତୁ ତାକୁ କୁଷ୍ଠରୋଗ ହୋଇଛି ବୋଲି ଜଣାଯିବା ଆଗରୁ ସେ ତା' ଜମିବାଡ଼ିସବୁ ଆପଣଙ୍କ ନାଁରେ ଦତ୍ତପତ୍ର କରିଦେଇଯାଇଛି । କୁଷ୍ଠରୋଗୀ ହେଲେ ସବ୍‌ରେଜିଷ୍ଟାର ତା'ର ଦସ୍ତଖତ କି ଟିପଚିହ୍ନକୁ ସ୍ୱୀକାର କରିବେନି ।'

'କାହିଁକି ଏମିତି କଲା ?' ଡାକ୍ତରବାବୁ ପଚାରିଲେ ।

ଓକିଲବାବୁ ଉତ୍ତରଦେଲେ -

'ମୁଁ ଜାଣିନି । କିନ୍ତୁ କାଗଜପତ୍ର କଲାବେଳେ ମତେ ଏତିକି କହିଲା ଯେ ମୋ ଡାକ୍ତରବାବୁଙ୍କର ଘର ନାହିଁ । ସେ ଘରକରି ଆରାମ୍‌ରେ ରୁହନ୍ତୁ ।'

ଡାକ୍ତରବାବୁଙ୍କର ମୁଣ୍ଡ ନଇଁଆସିଥିଲା । ଓକିଲବାବୁ ତାଙ୍କୁ ତାଙ୍କ କାଗଜପତ୍ର ଦେଇ ଚାଲିଗଲେ ।

ଗଳିମୁଣ୍ଡରେ ଆଉ ରଫିକ୍ ମିଆଁ ନାହିଁ । ଡାକ୍ତରବାବୁ ପ୍ରତିଦିନ କାର୍ ନେଇ ଗଲାବେଳେ ରଫିକ୍‌ର ରିକ୍‌ସା ରଖିବା ଜାଗାକୁ ଅନେଇ ଅନେଇ ଯାଆନ୍ତି ।

ଛଅମାସ ଭିତରେ ରଫିକ୍‌ର ଚାଳଘର ଭଂଗାଯାଇ ସେଠି ଗୋଟେ ଦୋ'ମହଲା କୋଠା ତୋଳାଯାଇଛି । ସାମ୍‌ନାରେ ସୁନ୍ଦର ବଗିଚାଟିଏ । ବଗିଚା ଭିତରେ ଲନ୍‌ଟିଏ । ଡାକ୍ତରବାବୁଙ୍କର ଏବେ ତିନିଟା ଚାକର । ତାଙ୍କୁ ଘରୁ ବାହାରିବାକୁ ପଡ଼େନା । ବଜାର କରିବାକୁ ହେଲେ ତାଙ୍କ ସ୍ତ୍ରୀ ଚାକରମାନଙ୍କ ହାତରେ ସବୁ ମଗେଇନିଅନ୍ତି ।

ସେଦିନ ରବିବାର । ଶନିବାର ଭିକାରିମାନେ ଆସନ୍ତି ହିନ୍ଦୁମାନଙ୍କ ଘରକୁ ଭିକ ମାଗିବାକୁ । ଅନେକ କୁଷ୍ଠରୋଗୀ ଠେଲାଗାଡ଼ିରେ ଆସନ୍ତି । ତାଙ୍କୁ ଠେଲିଠେଲି ଆଣନ୍ତି ଅନ୍ୟମାନେ ।

ରଫିକ୍ ମିଆଁ ଗୋଟେ ଠେଲାଗାଡ଼ିରେ ବସିଛି । ସେ ଗାଡ଼ିକୁ ଠେଲୁଛି ଆଉ ଗୋଟେ ସ୍ତ୍ରୀ ଲୋକ, ଯାହାର କୁଷ୍ଠରୋଗଟା ପ୍ରବଳ ହୋଇନି ।

ଡାକ୍ତରବାବୁଙ୍କ ଘର ଆଗରେ ଠେଲାଗାଡ଼ିଟା ରହିଗଲା । ତା' ଗାଡ଼ିକୁ ଠେଲୁଥିବା ସ୍ତ୍ରୀ ଲୋକଟି ରଡ଼ିଛାଡ଼ିଲା ।

'ମା' ଗଣ୍ଡେ ଭିକ ଦିଅ ।'

ରଫିକ୍ ମିଆଁ କହିଲା -

'ଚୁପ୍ - ଏ ଘରୁ ଭିକ ନବାର ନାହିଁ ।'

ଚାକରଟୋକା ପାଚିଆରେ ଚାଉଳ ନେଇଆସିଲା ଭିକଦବାକୁ । ସ୍ତ୍ରୀଲୋକଟି ଚୁପ୍‌କରି ଛିଡ଼ା ହୋଇଛି । କାରଣ ରଫିକ୍ ତାକୁ ମନାକରିଛି ।

ଚାକରଟୋକ କହୁଛି -

'କିରେ ଭିକ ନବ ପରା ? ନଉନ କାହିଁକି ?'

ରଫିକ୍ ମିଆଁ ଦେଖୁଛି ଦୋ'ମହଲା କୋଠା । ବାହାରେ କେତେ ଫୁଲଗଛ । ତା' ଜୀବନସାରା ପରିଶ୍ରମ କରିଥିଲେ ସେ ଏମିତି ଘର ବନେଇ ପାରିନଥାନ୍ତା । ଚାକରଟୋକା ଛିଡାହୋଇ ବିରକ୍ତ ହୋଇଗଲାଣି ।

- 'ଆବେ କ'ଣ ଏମିତି ଘରକୁ ଅନେଇ ରହିଛୁ ? ଭିକ ମାଗିବାକୁ ଆସିଛୁ ନା ଘର କିଣିବାକୁ ଆସିଛୁ ?'

ରଫିକ୍ ମିଆଁ ଅଳ୍ପ ହସି କହିଲାଳ -

'ଯାହାକୁ ଭିକ ଦିଆହୁଏ ତା'ଠୁ ଭିକ ନିଆ ହୁଏନା । ତୁ ସେସବୁ କଥା ବୁଝିପାରିବୁନି । ଚାଲ୍ ଲୋ ଗଉରୀ, ଗାଡ଼ି ଠେଲ୍ । ଦେଖିବାକୁ ଆସିଥିଲି ଡାକ୍ତରବାବୁ ସୁଖରେ ଅଛନ୍ତି ନା ନାହିଁ । ଆଉ ଗଉରୀ ଜାଣିରଖ, ଏଇଟା ମୋ ଘର ।'

# ବତିଘର

ବତିଘର ଦିଗନ୍ତକୁ ଚାହିଁ ଦିହୁଡ଼ି ଜାଳୁଛି ।

ତଳେ ତା'ର ଛିଡ଼ା ହୋଇଚି ସନାତନ ।

ଦୂରରେ ନୀଳ ସାଗରରେ ଧଳା ଧଳା ଗାର । ଦିଗ୍‌ବଳୟ ଚୁଇଁଛି କେତୁଟା ମାଛଧରା ଡଙ୍ଗାର ପାଲ । ଆକାଶରେ ଖଣ୍ଡେ ଧଳାବାଦଲ । କଦବା ମାଛରଙ୍କାଙ୍କର ଚିତ୍କାର ଓ ସମୁଦ୍ରର ଗୁରୁଗମ୍ଭୀର ନିନାଦ । ସମୁଦ୍ରକୂଳକୁ ଲାଗି ଗୋଟେ ଛୋଟ ଟାପୁ । ଟାପୁରେ ସବୁଜ ବନସ୍ପତି । ଚେନାଏ ସବୁଜ ଆକାଶରେ ମୁଠାଏ ବିଂଚାହୋଇଥିବା ତାରାଙ୍କ ପରି ଧଳା ଧଳା ଗାଈଙ୍କର ଦାଗ । ବତିଘର ପାଖରେ ଆଗରୁ ସମୁଦ୍ର ଘୁଂଚିଯାଇଛି । ବତିଘର ଆଉ ଟାପୁ ଭିତରେ ଅଳ୍ପ କେତେ ବାଟ । ଜୁଆରବେଳେ ସେ ଗହିରରେ ପାଣି ପଶିଯାଏ । ଜୁଆର ଛାଡ଼ିଲେ ସନ୍ତସନ୍ତିଆ ହୋଇଯାଏ । ପାଖ ଗାଁରୁ ଗାଈପଲ ଚରିବାକୁ ଯାଆନ୍ତି ଟାପୁ ଭିତରକୁ ।

ଟାପୁ ଭିତରେ ଗୋଟିଏ ଶିବ ମନ୍ଦିର । ମନ୍ଦିର ଉପରେ ତ୍ରିଶୂଳରେ ବନ୍ଧା ହୋଇଛି ପତାକା । ତା'ର ଡାହାଣ ପାଖକୁ ଗୋଟେ ଗୀର୍ଜା । ଗୀର୍ଜାରେ ଲାଗିଛି କୃଶ । ତା' ତଳକୁ ଗୋଟିଏ ଘଣ୍ଟା । ଆଉ ଅଳ୍ପ ଦୂରରେ ଗୋଟେ ବଡ଼ ଓସ୍ତଗଛରେ ଲାଗିଛି ଗୋଟିଏ ଶାଗୁଆ ପତାକା । ପତାକାରେ ଚନ୍ଦ୍ରବିନ୍ଦୁ ।

ବତିଘରଟି ଗୋଟେ ଟାପୁ ଉପରେ । ଚାରିଆଡ଼େ ପଥର ଜାମ ହୋଇଛି । ଜୁଆରିଆ ସମୁଦ୍ରର ଢେଉ ମୁଣ୍ଡପିଟେ ପଥରରେ । ପୁଣି ଭଙ୍ଗା ପଡ଼ିଲେ ଶୁନ୍‌ଶାନ୍ ।

ବାଁପାଖରେ ଲମ୍ବିଯାଇଛି ଧୂସର ରଂଗର ଝାଉଁବଣ । ବେଳେବେଳେ ଝାଉଁବଣ ଭିତରେ ବାଲିହରିଣ ନାଚନ୍ତି । ପଂପୁସ ମାସରେ ସେମାନେ ବୋବେଇଉଠନ୍ତି । କିଏ ଯେମିତି ତା' ସାଥୀକୁ ଖୋଜୁଛି ।

ବତିଘର ପଛପଟେ ଗୋଟେ ଗାଁ । ଗାଁକୁ ଲାଗି ବଡ଼ ନଈଟା ଶିଉଳିହୋଇ ବେଢ଼ି ରହିଛି ବୁଢ଼ିଆଣୀ ଜାଲପରି । ଛୋଟ ଛୋଟ ନଈର ପାଣି ଶିଉଳି ପରି ସାଗୁଆ ।

ସେଇ ସାଗୁଆ ପାଣିରେ ଅସଂଖ୍ୟ ଅଣ୍ଡିଆକୁମ୍ଭୀର । ନଈ ପାରିହେବାକୁ ହୁଏ ହୁଲିଡଙ୍ଗାରେ । ହୁଲିଡଙ୍ଗା ତଳଟା ବଡ଼ ନଈର ଡଙ୍ଗାପରି ନୁହେଁ । ତଳଟା ଦ୍ୱିତୀୟା ଜହ୍ନ ପରି ବଙ୍କା ।

କୋଉ ଅମଳରେ ପୂର୍ବବଙ୍ଗରୁ ଦଳେ ଜାଲୁଆ-କେଉଟ ଝଡ଼ରେ ପଡ଼ି ଭାସିଆସି ଏଇ କୂଳରେ ଲାଗିଥିଲେ । ସେମାନେ ହେଲେ ଜାତିରେ 'ଜେଲେ', ସେମାନେ ବାଙ୍ଗାଲ୍ (ତାଙ୍କ ଭାଷା) ଭୁଲିଗଲେଣି, ଅଧାଓଡ଼ିଆ ଅଧାବଙ୍ଗାଳ ମିଶି ଗୋଟେ ଅଦ୍ଭୁତ ଭାଷାରେ କଥାବାର୍ତ୍ତା କରନ୍ତି ।

ବତିଘର ନୀଳ ଆକାଶକୁ ଚାହିଁରହିଛି ।

ବତିଘରକୁ ଆଉଜି ଛିଡ଼ା ହୋଇଚି ସନାତନ ।

ରାତି ପାହାପାହା ଭୂତଭୂତି ଅନ୍ଧାରରେ ହୁଲି ଧରି ସନାତନ ଗାଁକୁ ଫେରେ । ବାଟରେ ରାମନଗର ହାଟ । ହାଟରେ ଜେଲେମାନେ ମାଛ, ପରିବା ବିକ୍ରି କରନ୍ତି । ସନାତନ ଦୁଇତିନି ଦିନ ପାଇଁ ବଜାର ନେଇ ଘରକୁ ଯାଏ । ଦୁଆରମୁହଁରେ ଜଗିବସିଥାଏ ସେବି । ଖୁବ୍ କାମିକା ଘରଣୀ । ଘର ଦୁଆର ଲିପିପୋଛି ଚକ୍‌ଚକ୍ କରି ରଖିଥାଏ । ଘର ଦାଣ୍ଡ ପ୍ରଶସ୍ତ ଦୁଆର । ସେବି ଗୋବରପାଣିରେ ଲିପାପୋଛା ହୋଇ ରହିଯାଏ । ବେଳେବେଳେ ଧାନ – କେତେବେଳେ ମୁଗ ଶୁଖାଯାଏ ।

ସୁଖୀ ପରିବାରଟିଏ । କେହି କାହାକୁ କଥାବାର୍ତ୍ତା କରିବାକୁ ସମୟ ପାଆନ୍ତି ନାହିଁ । ସନାତନ ସଉଦା ରଖି ବାରିଆଡ଼ କୂଅକୁ ଗାଧୋଇବାକୁ ଯାଏ । ମାଇକୁଆଟିଏ ତା' ମୁହଁକୁ ଚାହିଁ କା କା କରେ । ସନାତନ ତାକୁ ଅନେଇ ଭାବେ – ଆଜି କ'ଣ ସେବି କୁଆକୁ ଆହାର ଦେଇନି ? କୁଆ କ'ଣ ଆଜି ଯମକୁ ଖବର ଦେଇନି ? ସେବିର ମନେପଡ଼ିଯାଏ । ସେ ଜିଭକାମୁଡ଼ି ମନେ ମନେ କହେ – ହେ ଠାକୁରେ, କ୍ଷମାକର, ଆଜି କାଉ ଆଗରେ ଆହାରମୁଠେ ପକେଇବାକୁ ଭୁଲିଯାଇଛି । ଏମିତି ମନେ ମନେ କିଛି କହି କହି ସେ ମୁଠିଏ ଚୁଡ଼ା କି ହୁଡୁମ ଆଣି କୁଆ ଆଗରେ କୁଢ଼େଇଦିଏ । କୁଆ କା କା କରି ଆଉ କୁଆଙ୍କୁ ଡାକେ । ସେମାନେ ଘେରିଯାଇ ମଉଛବ କରନ୍ତି ।

କୁଆଙ୍କ ଆଡ଼କୁ ଚାହିଁ ଚାହିଁ ସନାତନ ଟିକିଏ ଖୁସି ହୋଇଯାଏ । ପୋଛାପୋଛି ହୋଇ କୂଅରୁ ପାଣିଢାଳେ କାଢ଼ି ଦାଣ୍ଡକବାଟ ପାଖକୁ ଆସେ । ଡାହାଣ ପାଖରେ ଚଉରା । ମାଟିର ମଣ୍ଡପ ଉପରେ ବୃନ୍ଦାବତୀଙ୍କ ଆସ୍ଥାନ । ତୁଳସୀ ମୂଳେ ପାଣିଦେଇ ସୂର୍ଯ୍ୟଙ୍କୁ ଅନେଇ ଜୁହାର କରି ଢାଳରୁ ପାଣି କାଢ଼େ । ସନାତନ କିଛି ମନ୍ତ୍ର ପଢ଼େନା, ତାକୁ ମନ୍ତ୍ର ଆସେନା । ଆଉ ପଢ଼ିବ କ'ଣ ? ତା' ଡାକ କେହି ଶୁଣେ କି ନ ଶୁଣେ ଜାଣେନା ।

ଓଦାଲୁଗା ବଦାଳି ଭିତରେ ବାରଣ୍ଡା ଉପରେ ଛିଡ଼ାହେଲାବେଳକୁ ଚଟଖଣ୍ଡିଏ ପରାହୋଇଥାଏ । ଚଟ ଆଗରେ ବଢ଼ାହୋଇଚି ବେଲାରେ ବେଲାଏ ପଖାଳ । ଥାଳିଆଟିଏ ଶୁଖୁଆ ଭଜା, ବଡ଼ିଚୂରା, ଆମ୍ବୁଲ ଟିକେ ଆଉ କଂଚାଲଙ୍କା । ଗ୍ରାସେ ଭୋଜନ ସାରି ଏଉଡ଼ିମାରି ଉଠେ । ହାତଧୋଇ ଗାମୁଛାରେ ମୁହଁହାତ ପୋଛି ପୋଛି ଶୋଇବାଘରକୁ ଯାଏ । ସଉପ ଉପରେ ଚିତ୍‌ହୋଇ ପଡ଼େ । ରାତିସାରା ଅନିଦ୍ରା । ସମୁଦ୍ରର ଘୁଘୁ ଗର୍ଜନ ସାଂଗକୁ ଝାଉଁବଣରେ ସୁସୁ ପବନ, ବାଲିହରିଣର ଡାକ । ଆଉ କେହିହେଲେ ଭୂତ ବୋଲି ଭାବିବ । ସନାତନ ଭୂତକୁ ଡରେନା । ମୋଟ ଉପରେ ଭୂତ ବୋଲି ଗୋଟିଏ କେହି ଅଛି ଜାଣେନା । ସେ ଜାଣେ ବତିଘର, ସମୁଦ୍ର, ଝାଉଁବଣ, ଗୀର୍ଜା, ଶିବମନ୍ଦିର, ପୀରବାବା, ପାଦ୍ରୀବାବା, ଦେଉଳ ନନା, ତା' ଡଙ୍ଗା, ତା' ଘର, ତା 'ସେବି ।

ବତିଘର ଆଲୁଅ ଲିଭିଯାଇଛି ।

ସନାତନ ତା' ଘରେ ସଉପ ଉପରେ ଶୋଇଛି ।

ସନାତନ ଜାଣିପାରେନା, କେତେବେଳେ ସେବି ତା'ର ଖିଆପିଆ ସାରି ବାସନ ଧୋଇ ଆସି ତା' ଗୋଡ଼ ଆଉଁଶୁଛି । ଆଉଁଶୁ ଆଉଁଶୁ ଢୁଳ ଲାଗିଲେ ସେବି କାନିପାରି ତଳେ ଶୋଇପଡ଼େ ।

ହଠାତ୍ ସନାତନର ନିଦ ଭାଂଗିଯାଏ । ସେ ତ କେବେ ସ୍ୱପ୍ନ ଦେଖେନା, କିନ୍ତୁ ଠିକ୍ ଏଇବେଳରେ ତା' ନିଦ କେଜାଣି କାହିଁକି ହଠାତ୍ ଭାଂଗିଯାଏ । ପାଖରେ ସେବି ଶୋଇଛି। ସନାତନ ଉଠି ଘର ଅଗଣାକୁ ଆସେ । ଅଳ୍ପ ସମୟ ପରେ ହମ୍ବା ହମ୍ବା କରି ଶୁକି ଆଉ ବେଲ ଘାସଚରି ଫେରିବେ । ତା' ଦେଖାଶୁଣା ସେ କରେ ନାହିଁ, କରେ ସେବି । ସନାତନ ପିଢ଼ା ଉପରକୁ ଅନେଇ ବାରଣ୍ଡାରେ ବସେ । କୋଉ ବର୍ଷ କଖାରୁ ତ କୋଉ ବର୍ଷ ପାଣିକଖାରୁ ।

ସେବିକୁ ନିଦରୁ ଉଠେଇବାକୁ ପଡ଼େନା । ସେ ଠିକ୍ ବେଲବୁଡ଼କୁ ଉଠି ଗାଈମାନଙ୍କୁ ବାଂଧେ । ସନାତନ ଉଠିପଡି ଗାଈଙ୍କୁ ଟିକେ ଆଉଁଶିଦେଇ ଯାଏ ଘାଟରେ ବନ୍ଧାହୋଇଥିବା ହୁଲିଡଙ୍ଗା ପାଖକୁ । ଦଉଡି ଖୋଲି ବସିପଡ଼େ ଆହୁଲା ଧରି । ନଈ ସେମିତି ଓସାର ନୁହେଁ, ପନ୍ଦରହାତ ହେବ । ପାଣିରେ ନଜର ପଡ଼େ, କୋଉଠି କୁମ୍ଭୀର ଅଛିକି ନାହିଁ ଦେଖିବାକୁ। କେବେକେବେ ଦେଖେ, ହେଲେ ସେମାନେ ଡଙ୍ଗା ପାଖକୁ ଆସନ୍ତି ନାହିଁ । ସନାତନ ପାରିହୋଇ ଡଙ୍ଗାଟା ଖୁଣ୍ଟରେ ବାନ୍ଧି, ଉଠେ ପଥର ଚଟାଣ ଦେଇ ବତିଘର ମୁଣ୍ଡିଆ ଉପରକୁ ।

ବତିଘର କିଏ କରିଥିଲା କେଜାଣି ! ଓଡ଼ିଆମାନେ କରିଥିବେ । ନହେଲେ ଫାଟୁଆ ଗାଈ (ପର୍ତ୍ତୁଗୀଜ୍ ଜଳଦସ୍ୟୁ) ମାନେ, ଅଥବା ଗୋରାସାହେବ ମାନେ ଗଢ଼ିଥିବେ । ତା' ହେତୁ ପାଇଲା ଦିନୁ ସେ ତା' ବାପା ସାଂଗରେ ଏଇଠିକୁ ଆସୁଛି । ତା' ବାପା ସେ କି ଆଉ କେହି ଜାଣେନା । ବାପା ସାଙ୍ଗରେ କଥାବାର୍ତ୍ତା କରିବା କ'ଣ ଦରକାର ? କାହିଁକି ପଚାରିବ

- ତମେ କ'ଣ ମୋର ବାପା ? - ଦୁନିଆ ଲୋକ ତାଙ୍କ ବାପାମାନଙ୍କୁ ପଚାରନ୍ତି - କିଏ ତାଙ୍କ ବାପ ବୋଲି ?

ବାପା ତା'ର କିରାସିନି ତେଲଟିଣ ଧରି ବତିଘର ଉପରକୁ ଉଠେ । ବତିଘରର ବିରାଟ ବତି ପେଟରେ ଢାଳେ । ସେଇ ଆଲୁଅକୁ ଲାଗି ଗୋଟେ ପଂଖା । ସମୁଦ୍ରପବନରେ ପଂଖା ବୁଲେ ଆଉ ତା' ସହିତ ବତିଘର ଆଲୁଅଟା ବି । ରାମନଗରର ହାଟରେ ଲୋକେ କୁହାକୁହି ହୁଅନ୍ତି ଯେ ବତିଘର ବତିଟାକୁ କିଏ ବୁଲଉଛି ? ବତିଆଲୁଅ ବହୁତ ଦୂର ଦେଖାଯାଏ । ଏମିତିକି ପାଗ ଭଲ ରହିଲେ ପାରାଦୀପ, କୁଜଙ୍ଗ ପର୍ଯ୍ୟନ୍ତ ।

କିନ୍ତୁ ସନାତନ ଜାଣେ, ବତିଘର ଆଲୁଅ କେତେ ଦୂରକୁ ଲମ୍ବିଯାଇଛି ।

ବତିଘର ଆଲୁଅ ଜଳେ ।

ସନାତନ...

ସନାତନ ବାପ ମରିବାର କିଛିଦିନ ଆଗରୁ ଗୋଟେ ତାରଟଣା ହୋଇ ବତିଘର ପର୍ଯ୍ୟନ୍ତ ଅଣାଗଲା । ଅଭିକା ପବନ ପଂଖା ଆଉ ଦରକାର ନାହିଁ । ସେଇଟାବି କେତେଥର ଝଡ଼ର ଅତ୍ୟାଚାରରେ ଭାଂଗିଗଲାଣି । ଏବେ ଖାଲି ସୁଇଚ୍ ଟିପିଲେ ଆଲୁଅ ଜଳିଲା ଓ ମନକୁମନ ବୁଲିଲା ।

ବତିଘର ଆଗର ଟାପୁ ନାଁ କ'ଣ, କେହି ଜାଣନ୍ତି ନାହିଁ । ସରକାରୀ ବନ୍ଦୋବସ୍ତ କାଗଜପତ୍ରରେ ସେ ଟାପୁ ଅଛିକି ନାହିଁ କେହି ଜାଣନ୍ତି ନାହିଁ । କିନ୍ତୁ ବତିଘର ପରି ସେଇ ଗୀର୍ଜାଟା ବହୁତ ପୁରୁଣା । କୋଉ ପର୍ତ୍ତୁଗୀଜ ଅମଳର ଗୀର୍ଜା । ଜଣେ ପାଦ୍ରୀବାବା ଥାଆନ୍ତି । ସେ ଗୀର୍ଜାକୁ ଝାଡୁଦେଇ ସଫାକରୁଥିଲା ସନାତନର ବାପା । ସନାତନ ଏବେ ସେଇ କାମ କରୁଛି । ଗୀର୍ଜା ଉପର ଘଣ୍ଟାକୁ ଟାଣୁଥିଲା ସନାତନର ବାପା । ଏବେ ସନାତନ ଟାଣୁଛି । ରବିବାରଦିନ ସକାଳେ ସନାତନ ଘଣ୍ଟା ବଜାଏ । ବହୁତ ପୁରୁଷ ଆଉ ସ୍ତ୍ରୀଲୋକ ଆସନ୍ତି । ଗୀର୍ଜାର ସେମୁଣ୍ଡରେ ବାବା ଛିଡ଼ା ହୋଇ କ'ଣସବୁ କୁହନ୍ତି । ସନାତନ ବୁଝେନା କି ବୁଝିବାକୁ ଚେଷ୍ଟା କରେନା ।

ପ୍ରତିମାସରେ ଗୋଟେ ଲୋକ ଆସେ । ସେଇଟା ବୋଧେ ମାସର ପହିଲା । ସେ ସନାତନକୁ ପଚାଶ ଟଙ୍କା ଦେଇ ଚାଲିଯାଏ । ସନାତନ ତାରିଖ, ବାର, ମାସ ବର୍ଷ କିଛି ବୁଝେନା । ଖାଲି ଟଙ୍କା ଗଣ୍ଡାକ ସେବି ହାତକୁ ବଢ଼େଇଦିଏ । ସେବି ଈଶାଣକୋଣରେ ଥିବା ଛୋଟ ଘୁମଟା ଭିତରେ ତାକୁ ଗଳେଇଦିଏ । ହାଟପାଳିକୁ ଟଙ୍କା ଗଣି ସନାତନ ହାତକୁ ବଢ଼େଇଦିଏ ।

ସନାତନ ବାହାହୋଇଥିଲା ତା' ବାପା ବଂଚିଥିଲାବେଳେ । ବାପଠୁ ଦି'ଅକ୍ଷର ପଢ଼ିଥିଲା । ତା'ପରେ ଆଉ ପଢ଼ିନି କି ପଢ଼ିବାକୁ ଇଚ୍ଛା କରିନି । ବାପା ମରିଗଲା । ବୁଢ଼ା ହୋଇଥିଲା । କିନ୍ତୁ ରୋଗ କିଛି ହେଇ ନଥିଲା । ଲୋକେ ସେବିର କାନ୍ଦଣା ଶୁଣି ସନାତନ

ଘର ଆଗରେ ରୁଣ୍ଡ ହୋଇଗଲେ । କୋକେଇବାନ୍ଧି ନେଇଗଲେ ମଶାଣିକୁ । ସନାତନ ତା' ବାପାର ଶବ ମୁହଁରେ ନିଆଁଦେଲା । ସାଇଭାଇ ଯେମିତି କହିଲେ ସେମିତି ଶୁଦ୍ଧିହେଲା । ପୁଣି ହୁଲିଡଙ୍ଗା ଧରି ଚାଲିଲା ବତିଘରକୁ ।

କାନ୍ଦିବା କ'ଣ ସେ ଜାଣିନି କି ହସିବା ବି ଜାଣିନି । ତା' ବୋଲି ସେ ଘୁଂଗା ନୁହେଁ, ମାଛରଙ୍କାକୁ ସେ ଖଡେଇହୁଏ - କେଁ କେଁ - ।

ବତିଘର, ଥକିପଡ଼ିଥିବା ଚଢ଼େଇମାନଙ୍କୁ ଆଶ୍ରୟ ଦିଏ । ବତିଘରକୁ ଆଉଜି, ଜମ୍ମା ଥକା ନହୋଇ ଛିଡାହୋଇ ରହେ ସନାତନ ।

ସନାତନର ବାପା ସବୁବେଳେ କହୁଥିଲେ - ବାପାରେ, ବତିଘରକୁ ଭୁଲିବୁନି । ସେଇ ଆମ ଜୀବନ । ତୋ ମା' ମଲା ସେଇ ବତିଘରକୁ ଚାହିଁ ଚାହିଁ । ମୁଁ ତାକୁ ପଚାରିଥିଲି - କାହିଁକି ବତିଘରକୁ ଚାହିଁରହୁଛୁ? ସେ ଉତ୍ତର ଦେଇଥିଲା - ବତିଘରକୁ ଅନେଇଲେ ମୁଁ ଜାଣିପାରେ ଯେ ତମେ ସେଠି ଅଛ ।

କେତେ ବଡ଼ କଥାଟା ! ସାନତନ ଭାବେ, ସେବି ମଧ୍ୟ ବତିଘରକୁ ଚାହିଁ ତା' ମୁହଁ ଦେଖୁଥିବ । ବତିଘରଟା ପଥରରେ ତିଆରି । ସେଠି ତା'ର କେହି ନାହାନ୍ତି । ପାପର ଝଡ଼ ତାକୁ ଭାଂଗିପାରେନା କି ପୁଣ୍ୟର ସୁନୀଳ ଆକାଶ ତାକୁ ଉଲ୍ଲସିତ କରିପାରେନା ।

ସନାତନ ଅମଳରେ ଗୋଟାଏ ମନ୍ଦିର ତୋଳାଚାଲିଲା । ମନ୍ଦିର ଗଢ଼ିବା ପାଇଁ ଅନେକ ମିସ୍ତ୍ରୀ ଆସିଲେ । ମନ୍ଦିର ଗଢ଼ାହେଲା । ଠାକୁର ପ୍ରତିଷ୍ଠା ହେଲେ । ଖୋଳ କରତାଳ ଧରି ଲୋକମାନେ ଗୀତ ଗାଇଲେ । ସମୁଦ୍ର ଲହଡ଼ି ଭାଂଗିଲେ ବି ତା' ଶବ୍ଦ ଟିକିଏ ବି ଦେଉଳ ଭିତରୁ ଶୁଣାଗଲା ନାହିଁ । କେତେ ମଣିଷ ମାଇପେ ଆସିଲେ । କେତେ ନଡ଼ିଆ ଭଂଗାହେଲା । କେତେ ଦୀପ ଜଳିଲା । କେତେ ଦୁଦୁରାଫୁଲ, ଅରଖଫୁଲ, ଗଇସଫୁଲ, ବେଲପତ୍ର ଦିଅଁଙ୍କ ଉପରେ ଚଢ଼ାହେଲା । କଦଳୀ ଆଉ କ୍ଷିର ଦେଇ ଠାକୁରେ ଗାଧୋଇଲେ । ସେଥିରୁ ହେଲା ପାଦୁକ । କେତେ କିଏ ପିଇଲେ । ସନାତନକୁ ଭାରି ସୁଆଦ ଲାଗିଲା ସେଇ ପାଦୁକ । ସବୁଦିନ ଆସି ସେ ପାଦୁକ ପିଇବାକୁ ଆରମ୍ଭ କଲା । ମଙ୍ଗଳଠୁ ରବିବାର ପର୍ଯ୍ୟନ୍ତ କେହି ନ ଥାଆନ୍ତି ଦେଉଳରେ । ଦେଖି ଦେଖି ସନାତନକୁ ରାଗ ଲାଗେ । ସେ ତା' ଘରପାଖ ମଶାଣିପଦାରୁ ଅରଖଫୁଲ ତୋଳେ । ଗାଆଁର ବିଶି ସାଆନ୍ତଙ୍କ ବାଡ଼ିରୁ ବେଲପତ୍ର ଆଉ ଦୁଦୁରାଫୁଲ ନେଇ ଠାକୁରଙ୍କ ଉପରେ ଅର୍ପଣକରେ । ପୁଣି ସୋମବାର ଦିନ ଅନେକ ଯାତ୍ରୀ ଆସନ୍ତି । ସେମାନେ ସଳିତା ଆଣି ନଥାନ୍ତି । ଦୀପ ଜାଳିପାରନ୍ତି ନାହିଁ ।

ସନାତନ ପାଖରେଥିବା ଜମ୍ମୁ ଗାଁକୁ ଯାଇ ତୁଳା ଆଣି ସେବିକୁ ଦିଏ । ସେବି ତୁଳା ଧରି ନଖବଳିତା କରିଦିଏ । ରାମନଗର ହାଟରୁ ଘିଅ କିଣି ସନାତନ, ସେବି ହାତରୁ ବଳିତା ନେଇଚାଲେ ଫି' ସ'ବାର ମନ୍ଦିରକୁ ।

ଏଣିକି ପ୍ରାୟ ସବୁଦିନ ଭକ୍ତ ଆସନ୍ତି । ସନାତନ ହାତରୁ ଘିଅଦୀପ, ନଖବଳିତା ନେଇ ପୂଜା କରନ୍ତି । ମାନସିକ କରନ୍ତି । ବେଳେବେଳେ ମଉଛବ ହୁଏ । କିଏ ଶହେ ଆଠ ମାଠିଆ ପାଣିରେ ଶିବଲିଙ୍ଗଙ୍କୁ ଜଳଛାୟା କରନ୍ତି । ଅରୁଆଭାତ, ଡାଲମା, ଖଟା ବାସ୍ନାରେ ଦେଉଳଟା ସାରା ଚହଟିଉଠେ । ସନାତନ ବି ଗଣ୍ଡିଏ ଖାଇ ଦେଉଳବେଢ଼ାରେ ଶୋଇପଡ଼େ । ନିଦ ଭାଂଗିଲାବେଳକୁ ସଂଜ । ଆଉ ଘରକୁ କ'ଣ ଯିବ ? ସିଧା ଚାଲେ ବତିଘରକୁ ।

ସେଯାଏ ସେବି ଛଟପଟ ହେଉଥାଏ । ସନାତନ କାହିଁକି ଖରାବେଳେ ଖାଇବାକୁ ଆସିଲାନି ! ତା' ମୁଣ୍ଡରେ ବାରଚିନ୍ତା । କିନ୍ତୁ ସଂଜବେଳେ ଯେତେବେଳେ ବତିଘର ଆଲୁଅ ଜଳିଉଠେ ତା' ମୁହଁରେ ହସ ଉକୁଟେ ।

ବତିଘର ଆଲୁଅ ଜଳୁଛି ମାନେ ସନାତନ ଅଛି ।

ଅନ୍ଧାରରେ ସମସ୍ତେ ଯିଏ ଯେଉଁଠି ସିଏ ସେଇଠି । ବର୍ଷା ଟିକେ ହୋଇଗଲା । କିନ୍ତୁ କାହାର ସାହସ ନାହିଁ ଘରକୁ ଫେରିବାର । ଜୁଆର ମାଡ଼ିଆସିଲାଣି । ବତିଘରଠୁ ଟାପୁ ମଝିରେ ଯେଉଁ ସନ୍ତସନ୍ତିଆ ଜାଗାଟା ସେଥିରେ ବେଶି କହିଲେବି ଆଣ୍ଠୁଏ ପାଣି ହୋଇଗଲାଣି । ପୁଣି ଟାପୁ ଭିତରେ ସାପ ଅଛନ୍ତି । ନଈଆଡୁ ଯେ ଥଣ୍ଟିଆକୁମ୍ଭୀର ଆସୁନଥିବେ କିଏ କହିବ ? ସକାଳ ହେବାଯାଏ ସମସ୍ତେ ଅପେକ୍ଷାକରି ରହିଛନ୍ତି । ମହାଦୀପ ଉଠିନାହିଁ । ଦେଉଳ ପହଡ ପଡ଼ି ନାହିଁ କି ଖୋଲି ନାହିଁ ।

ସକାଳ ହେଲା ସେଇ ମେଘୁଆପାଗ ନେଇ । ପାଦ୍ରୀବାବା ଗୀର୍ଜାରୁ ବର୍ଷାରେ ତିନ୍ତି ତିନ୍ତି ଆସିଲେ ଲୋକମାନଙ୍କର ଦୁଃଖଦୁର୍ଦ୍ଦଶା ଦେଖିବାକୁ । ସେ ବଡ଼ ଧାର୍ମିକ ଆଉ ଦୟାଳୁ । ଖ୍ରୀଷ୍ଟିଆନ୍ ହେଉ, ହିନ୍ଦୁ ହେଉ, ମୁସଲମାନ ହେଉ ସମସ୍ତଙ୍କୁ ସେ ସାନ୍ତ୍ୱନା ଦେଲେ । ପ୍ରଭୁଙ୍କ ଉପରେ ବିଶ୍ୱାସ ରଖିବାକୁ ଉପଦେଶ ଦେଲେ । କେହିତ ଟିକିଏ ପାଟି କରୁନଥିଲେ । ଖାଲି ପାଦ୍ରୀବାବାଙ୍କ କଣ୍ଠ ଶୁଭୁଥିଲା ।

ବର୍ଷା ଟିକେ ଥମିଗଲା ପରେ ସମସ୍ତେ ଟିକେ ବାହାରକୁ ଆସିଲେ । ଝିପିଝିପି ବର୍ଷାହେଉଥିଲେବି କିଛି ଲୋକଙ୍କୁ ଓଦା ହେବାକୁ ଭଲ ଲାଗୁଥିଲା । କିନ୍ତୁ ହଠାତ୍ ଆରମ୍ଭ ହେଲା ଘଡ଼ଘଡ଼ି ଚଡ଼ଚଡ଼ି । ଏତେ ଯୋରରେ ଗର୍ଜନ ହେଲା, ସମସ୍ତେ ଡରିଯାଇ ଛାତିରେ ଛେପପକେଇ ମନ୍ଦିର ଭିତରକୁ ପଶିଗଲେ । କିଏ କହିଲା – ଅଗସ୍ତି ଅଗସ୍ତି – କିଏ କହିଲା ଯା ଆଲ୍ଲା – ପାଦ୍ରୀବାବା ଛାତିରେ କ୍ରୁଶ କାଟି କହିଉଠିଲେ – ଜିସସ୍ କ୍ରାଇଷ୍ଟ ଓ ହୋଲି ସ୍ପିରିଟ୍ । ସବୁ ଘଡ଼ଘଡ଼ି ଯେମିତି ଗୋଟିଏ ଚେତାବନୀ ଦେଇ ଯାଉଥିଲା ସେଇ ପୁରୁଣା କଥା । ସର୍ବେ ହୋଇବେ ଏକାକାର, ନଥିବା ଜାତିର ବିଚାର ... ।

ମନ୍ଦିର ଭିତରେ ଆରମ୍ଭ ହୋଇଗଲା ଗୋଟିଏ ନୀରବ ଝଡ଼ । ହୁଏତ କିଛି ଗୋଟାଏ ହବାକୁ ଯାଉଛି । ନିଶ୍ଚୟ ବଜ୍ରପାତ ହେବ । ଆଉ ସବୁଲୋକ ମରିଯିବେ । ପ୍ରଥମେ ମନ୍ଦିର ପୂଜାରୀ ଇଂଗିତଦେଲା ଯେ ପାଦ୍ରୀବାବା ମନ୍ଦିରକୁ ଆସିବା ଦ୍ୱାରା ବଜ୍ରପାତ ହେଉଛି । ତେଣୁ ପାଦ୍ରୀବାବାଙ୍କୁ ମନ୍ଦିରରୁ ତଡ଼ିବାକୁ ପଡ଼ିବ । ପୂଜାରୀ ଜନ୍ମାରୁ ଦି'ଆଖିରେ ପାଦ୍ରୀବାବାଙ୍କୁ ଦେଖିପାରନ୍ତି ନାହିଁ । ତେଣୁ ସବୁଲୋକଙ୍କ ଭିତରେ ଏ ବିଷ ମଂଜି ପୋତିଚାଲିଲେ । ହିନ୍ଦୁମାନଙ୍କ ଭିତରେ କିଛି କିଛି ଲୋକ ଅସ୍ୱୀକାର କଲେ ଏ ପ୍ରକାର ମତାମତକୁ । କାରଣ ପାଦ୍ରୀବାବା ବେଳେବେଳେ କିଛି ଔଷଧ ଦେଇ ଅନେକ ଲୋକଙ୍କୁ ରୋଗମୁକ୍ତ କରନ୍ତି । ତେବେ କ'ଣ ପରବର୍ତ୍ତୀ ଦୋଷୀ ଓ ପାପୀ ହେଲେ କାଜିବାବା ? ସେଥିରେ ମଧ୍ୟ କେତେ ଜଣ ହିନ୍ଦୁ ବିରୋଧ କଲେ, କାରଣ ଅଗରବତିରୁ ଝରୁଥିବା ବିଭୂତିଦେଇ କାଜିବାବା ଅନେକ ରୋଗୀଙ୍କୁ ଭଲ କରିଛନ୍ତି । ହିନ୍ଦୁମାନଙ୍କର ଇଏ ଗୋଟେ ଦୋଷ । ସେମାନେ ତାଙ୍କ ତେତିଶ କୋଟି ଦେବତା ପରେ ଅନ୍ୟ ସବୁ ଧର୍ମର ଦେବତାଙ୍କୁ ବିଶ୍ୱାସ କରନ୍ତି । ଶେଷରେ ଶିକାର ହେଲେ ମନ୍ଦିର ପୂଜାରୀ ।

ନିଜ ଶର ନିଜ ଆଡ଼କୁ ଫେରିଆସିଲା । ସମସ୍ତେ ଅନ୍ଧେ ବହୁତେ ପାଦ୍ରୀବାବା, ଫକୀରବାବା ଓ ପୂଜାରୀନନାଙ୍କ ବିରୋଧରେ ଆଲୋଚନା କରିବାକୁ ଆରମ୍ଭ କଲେ । ତାଙ୍କ ଭିତରୁ ଜଣେ ନିଜକୁନିଜେ ବିଚାରକ ହୋଇ ରାୟ ଦେଲା ଯେ – ଜଣଜଣକରି ଏଇ ତିନି ଜଣ ଚାଲିଚାଲି ବଡିଘରକୁ ଛୁଇଁ ପୁଣି ଫେରିଆସିବେ । ଯିଏ ପ୍ରକୃତରେ ପାପୀ ତା' ଉପରେ ଚଡ଼କ ପଡ଼ିବ ନିଶ୍ଚୟ ଆଉ ଏଇ ଚାରିଶହ ପାଂଚଶହ ନିରୀହ ପ୍ରାଣୀ ତ୍ରାହି ପାଇଯିବେ । କିନ୍ତୁ ପ୍ରଥମେ କିଏ ଯିବ ?

ବହୁ ଯୁକ୍ତିତର୍କ ପରେ ଠିକ୍‌ହେଲା, ଆଗେ ପାଦ୍ରୀବାବା ଯିବେ । ଏଇ ନିଷ୍ପତ୍ତି ନିଆଗଲା ପରେ ପାଦ୍ରୀବାବା ବିଚଳିତ ହୋଇପଡ଼ିଲେ । ଜନତାର ରାୟ ଆଗରେ ତାଙ୍କର ଯୁକ୍ତିବାଢ଼ିବାର କିଛି ନଥିଲା । ଏତେଦିନ ସେ ପବିତ୍ର ଜୀବନଯାପନ କରିଛନ୍ତି । ପ୍ରଭୁଙ୍କୁ ପ୍ରାର୍ଥନା କରିଛନ୍ତି । ଗୀର୍ଜାରେ ମହମବତି ଜଳେଇଛନ୍ତି । ଲୋକମାନଙ୍କୁ ସତ୍ୟବାନ ହେବାକୁ ଉପଦେଶ ଦେଇଛନ୍ତି । ନିଜ ନିଜ ପାପ ପାଇଁ ଅନୁତାପ କରିବାକୁ ଅନୁରୋଧ ଦେଇଛନ୍ତି । ଗୀର୍ଜା କାନ୍ଥରେ ଅଙ୍କାବଙ୍କା ଅକ୍ଷରରେ ଲେଖିଛନ୍ତି – ଆପଣ ପ୍ରତିବେଶୀଙ୍କୁ ଆତ୍ମତୁଲ୍ୟ ପ୍ରେମକର – ଯିଶୁ ଚିରକାଳର - ଯିଶୁ କହିଲେ ମୋ ଦେଇ ନ ଗଲେ ପରମପିତାଙ୍କ ପାଖରେ ପହୁଁଚି ପାରିବ ନାହିଁ – ଇତ୍ୟାଦି ଇତ୍ୟାଦି ଅନେକ ଆପ୍ତବଚନ । କିନ୍ତୁ କୌଣସି ପାପ କରିଛନ୍ତି ବୋଲି ତାଙ୍କର ତ ମନେପଡୁନି । ଅନେକ ଦିନ ତଳେ ସେ ଜାହାଜରେ କେରଳରୁ ଆସିଥିଲେ । କେରଳରୁ ସେ ଓଡ଼ିଆ ଶିଖି ଆସିଥିଲେ । ବଙ୍ଗୋପସାଗର ପରି ଅଶାନ୍ତ ସାଗର ବି ଗୋଟେ ସୁନାପିଲା ହୋଇଯାଇଥିଲା ।

ସେ ଯେମିତି ଗୋଟେ କାଚର ଚଟାଣ ଉପରେ ଖସି ଖସି ଆସୁଥିଲେ । ଏ ରକମର ବିପଦ ତ ସେ ସ୍ୱପ୍ନରେ ବି ଭାବିନଥିଲେ । ତା'ଛଡ଼ା ସେ ପାପ କରିବେ କାହିଁକି ? ତାଙ୍କର କ'ଣ ଅଭାବ ? ସ୍ଥଳପଥ ଦେଇ ତାଙ୍କ ପାଖକୁ ପାଁଓ (ପାଉଁରୁଟି) ତରକାରି ଟିଣରେ ଥିବା ମାଛ ମାଂସ ଆସୁଥିଲା । ସେ ପାପ କରିବେ କାହିଁକି ? ଆଜି ତାଙ୍କୁ ଲାଗୁଥିଲା, ସେ ଯେମିତି ଫାଦର ଗିଲିଗାନ୍ । ଲକ୍ଷଲକ୍ଷ ମୂଷା ତାଙ୍କୁ କାମୁଡ଼ି କାମୁଡ଼ି ମାରିବାକୁ ଆସୁଛନ୍ତି । ହଁ ଠିକ୍ ମନେପଡ଼ିଲା ତାଙ୍କର । ଥରେ ଗୀର୍ଜାରେ ଅନେକ ମୂଷା ହୋଇଯାଇଥିଲେ । ଯନ୍ତାବସେଇ ପାଦ୍ରୀବାବା ଅନେକ ମୂଷା ଧରି ସମୁଦ୍ରକୁ ଫିଙ୍ଗି ଦେଇଥିଲେ । କେତେଗୁଡ଼ା ମୂଷାଙ୍କୁ ଚିଲ, ଶାଗୁଣାଙ୍କ ଆଗରେ ପକେଇଦେଇଥିଲେ । ଏତିକି ମାତ୍ର ପାପ । ଏଇ କଥା ଭାବୁ ଭାବୁ ଗୋରା ସାହେବ ପାଦ୍ରୀବାବା ଅତି ମାତ୍ର ଶେତା ପଡ଼ିଯାଇଥିଲେ । ମନେ ମନେ କହିଲେ - ହଉ ଠିକ୍ ଅଛି, ମୁଁ ପ୍ରଥମେ ଯିବି - ମତେ ଯିବାକୁ ପଡ଼ିବ । ସେ ମନେ ମନେ କହିଚାଲିଲେ - ହେ ଈଶ୍ୱର, ତାଙ୍କୁ କ୍ଷମାକର, କାରଣ ସେମାନେ କ'ଣ କରୁଛନ୍ତି ସେମାନେ ନିଜେ ଜାଣନ୍ତି ନାହିଁ । ପାଦ୍ରୀବାବା ସନ୍ତସନ୍ତିଆ ବାଟଦେଇ ଚାଲିଲେ । ତାଙ୍କ ଧଳା ଖାଲଖାଲାକୁ ଟେକି ଟେକି କିଛି ବାଟ ଗଲାପରେ ଭାବିଲେ, ଯଦି ମରିବାକୁ ଥିବ ତେବେ ଖାଲଖାଲା ମଇଳା ହେଇଗଲେ କ୍ଷତି କ'ଣ ? ବଜ୍ର ଆବାଜ କମିଯାଇଛି । ମନ୍ଦିରରେ ସମସ୍ତେ ଉତ୍ସୁକହୋଇ ରହିଛନ୍ତି । କ'ଣ ହେବ ? ପାଦ୍ରୀବାବା କ'ଣ ସତରେ ବଂଚି କି ଆସିବେ ? ସବୁଠୁ ବ୍ୟଗ୍ର ପୂଜାରୀ । ଯଦି ସତରେ ପାଦ୍ରୀବାବା ଫେରିଆସି ନିଜକୁ ଏକ ପବିତ୍ର ପୁରୁଷ ବୋଲି ପ୍ରମାଣିତ କରିଦିଅନ୍ତି, ତେବେ ତାଙ୍କ ପାଳି ପଡ଼ିବ ।

ପାଦ୍ରୀବାବା ଚାଲିଛନ୍ତି । ହାତରେ ତାଙ୍କର ଗଳାରେ ଝୁଲୁଥିବା ହରର କ୍ରୁଶ । ନା, ଘଡ଼ଘଡ଼ି ଶବ୍ଦ ନାହିଁ । ସେ ବତିଘର ପାଖରେ ପହଁଚିଲେ । କ୍ରୁଶକୁ ଚୁମାଦେଲେ । ଆଖିରେ ଛୁଆଁଇଲେ ଓ ଧୀରେ ପଥର ଉପରୁ ଓହ୍ଲେଇ ସନ୍ତସନ୍ତିଆ କାଦୁଅ ଭିତରେ ଚାଲିବାକୁ ଆରମ୍ଭ କଲେ ଟାପୁ ଆଡ଼କୁ । ମଝିରେ ମଝିରେ ଆକାଶକୁ ଚାହୁଁଥାଆନ୍ତି । ପୁଣି ଟିକେ ଝିପିଝିପି ବର୍ଷା ଆରମ୍ଭହେଲା । ଝିପିଝିପି ବର୍ଷାରୁ ମୂଷଳ ଧାରାରେ ବର୍ଷା ହେବାକୁ ଲାଗିଲା । କିନ୍ତୁ ଘଡ଼ଘଡ଼ି ଚଡ଼ଚଡ଼ି ନାହିଁ । ପାଦ୍ରୀବାବା ଟାପୁରେ ଆସି ପହଂଚିଗଲେ । ଶହ ଶହ ଲୋକେ ତାଙ୍କୁ ପାଛୋଟି ଆଣିଲେ । ସମସ୍ତେ ତାଙ୍କ ପାଦ ଛୁଇଁ ପ୍ରଣାମ କଲେ । ପାଦ୍ରୀବାବାଙ୍କର ବିଶ୍ୱାସ ହେଲା ଯେ ସେ ମୂଷାମାନଙ୍କୁ ମାରି କିଛି ପାପ କରିନାହାନ୍ତି । ସେମାନେ ହୁଏତ ମଣିଷମାନଙ୍କର କ୍ଷତି କରିଥାଆନ୍ତେ ଆଉ ପାଦ୍ରୀବାବା ସେମାନଙ୍କୁ ହତ୍ୟାକରି ଅଶେଷ ପୁଣ୍ୟ ଅର୍ଜନ କରିଛନ୍ତି ।

ପାଦ୍ରୀବାବାଙ୍କୁ ସମସ୍ତେ ଟେକିନେଇ ମନ୍ଦିରବେଢ଼ା ଭିତରକୁ ପଶିଗଲେ । ପୂଜାରୀର ଆପତ୍ତି କରିବାର କୌଣସି ସୁଯୋଗ ନାହିଁ । । ଏକଥା ପ୍ରମାଣିତ ଯେ ପାଦ୍ରୀବାବା ଜଣେ

ପବିତ୍ର ଓ ସିଦ୍ଧପୁରୁଷ । ପୂଜାରି ଆପତ୍ତି କରିବେ କ'ଣ – ନିଜ ପାପର ହିସାବଖାତା ମନେମନେ ଖୋଲିଲେ । ଥରେ ଗୁହାଳରେ ତାଙ୍କ ଗାଈ ମରିଯାଇଥିଲା । ବେକରେ ତା'ର ପଘା ଲାଗିଥିଲା । ସେ ହେଲେ ଦୋଷକାରୀ । କେତେଦିନ ପାଳିବାକୁ ପଡ଼ିବ । ମୁହଁରେ ତିରଣ ଦେଇ ଦୁଆରଦୁଆର ବୁଲି ଭିକ୍ଷା ମାଗିବାକୁ ପଡ଼ିବ । ପୁଣି ପଇତା ବଦଳେଇବାକୁ ପଡ଼ିବ । ନଡ଼ା ଉପରେ ଶୋଇବାକୁ ପଡ଼ିବ । ହଜାରେ ମୁସ୍କିଲ । ପଘାଟା ଖୋଲିଦେଲେ ଗଲା । କିଏ ପଚାରୁଛି ? ପାଣଙ୍କୁ କହିଲେ ଉଠେଇନେବେ । ସେମିତି ଗୋଟାଏ ପାପ କରିଛନ୍ତି ପୂଜାରୀ । ତା'ଛଡ଼ା ଶବ ସାଂଗରେ ମଶାଣିକୁ ଗଲେ ପଥଶ୍ରାଦ୍ଧ ବେଳେ ବେଶି ପଇସା ପାଇବାକୁ ଦାବି କରିଛନ୍ତି । କେବେକେବେ ବିବାହଘର ବ୍ରତରେ ପଇସା ଠକେଇ ନେଇଛନ୍ତି । ମନେ ମନେ ତ୍ରାହି ମଧୁସୂଦନ ସ୍ମରଣକରି ପୂଜାରୀ ନିରୀହ ଶିଶୁଟି ପରି ଦେଉଳ କାନ୍ଥକୁ ଆଉଜି ଛିଡାହେଲେ । କିନ୍ତୁ ଲୋକଙ୍କ ନଜର ଖୋଜୁଥିଲା ପୂଜାରୀଙ୍କୁ । ପୂଜାରୀ ଧରାପଡ଼ିଲେ, ତାଙ୍କୁ ବତିଘର ପାଖକୁ ଯିବାକୁ ବାଧ୍ୟ କରାଗଲା । ନାହିଁ କରିବାକୁ ତାଙ୍କୁ ଚାରା ନଥିଲା । କାରଣ ଆଇନ୍‌ଟା ସେଇ ସୃଷ୍ଟି କରିଛନ୍ତି । ତେଣୁ ସେଇ ଆଇନ୍‌ର ଶିକାର ତାଙ୍କୁ ହିଁ ହେବାକୁ ପଡ଼ିବ ।

ଲୋକମାନଙ୍କର ଦାବିକୁ ମାନିନେଇ ପୂଜାରୀ ଚାଲିଲେ ବତିଘର ଆଡ଼େ । ବାଟ ମଝିରେ ଦୁଇଚାରି ଥର ଘଡ଼ଘଡ଼ି ମାରିଲା । ପୂଜାରୀ ମନେ ମନେ ଅଗସ୍ତି ଅଗସ୍ତ ସୁମରି ବତିଘର ପାଖରେ ପହଞ୍ଚିଗଲେ । ଦଣ୍ଡେ ନିଃଶ୍ୱାସ ଛାଡ଼ି ପୁଣି ଟାପୁଆଡ଼କୁ ପାଦ ବଢ଼େଇଲେ । ଆରାମରେ ଆସି ଟାପୁରେ ପହଞ୍ଚିଲେ । ଲୋକମାନେ ତାଙ୍କୁ ବି କାନ୍ଧରେ ବସେଇ ଦେଉଳ ଭିତରକୁ ପାଛୋଟିନେଲେ ।

ଏସବୁ ନାଟକ ଚାଲିଥିଲାବେଳେ ସନାତନ ଚୁପ୍‌ଚାପ୍ ଭାବୁଥାଏ ଆହା, ସେ ନାହିଁ ବୋଲି ବତିଘର ଆଲୁଅ ଜଳି ନାହିଁ । ବତିଘର କଥା କେହି ଚିନ୍ତାକରି ନାହାନ୍ତି । ବତିଘର ଆଲୁଅ ସମୁଦ୍ରରେ ବାଟ ଦେଖାଏ । ଏଇ ବତିଘରର ଆଲୁଅ ଦେଖି ପୂର୍ବବଙ୍ଗର ଜେଲେମାନେ ଆସି ଏଠି ରାମନଗରରେ ବାସ କରୁଛନ୍ତି । ଏ ବତିଘରଠୁ ଖଣ୍ଡେ ଦୂରରେ ଦିନେ ଗୋଟେ ଜାହାଜ ରୋକିଯାଇ ହୁଲି ଡଙ୍ଗାରେ ପାଦ୍ରୀବାବାଙ୍କୁ ଟାପୁରେ ପହଞ୍ଚାଇଥିଲା । ଏଇ ବତିଘର ସମସ୍ତଙ୍କୁ ଆସର ଦେଇଛି । ଜୀବନର ସନ୍ଧାନ ଦେଇଛି ଅଥଚ ଆଜି ବତିଘରର ଆଲୁଅ ଜଳିନି !

ତା'ପରେ ପଡ଼ିଲା ପୀରବାବାଙ୍କ ପାଖରେ ରହୁଥିବା କାଜିବାବାଙ୍କ ପାଳି । ସେ ଗୋଟେ କଳା ଆଲ୍‌ଖାଲା ପିନ୍ଧନ୍ତି । ମୁଣ୍ଡରେ ଗୋଟେ ଚାନ୍ଦୁଆ ପରି କ'ଣ ବାନ୍ଧିଥାଆନ୍ତି । ବିଡ଼ିବିଡ଼ି ହେଉଥାଆନ୍ତି । କାହାକୁ କଥା କହନ୍ତି, ସେ କ'ଣ ଖାଆନ୍ତି, କ'ଣ ପିଅନ୍ତି କେହି ଜାଣିନାହାନ୍ତି । ସେ କୁଆଡେ ଆସିଲେ କି କୋଉଠିକି ଯିବେ କେହି ଜାଣି ନାହାନ୍ତି । ସେ କେବଳ ଗଂଜେଇ ଟାଣନ୍ତି । ଯଦି କେବେ କେହି ତାଙ୍କୁ ଅଧୁଲିଟିଏ କି ଟଙ୍କାଟିଏ ଦିଏ ସେ ତାହାର ହାତରେ

ଲେବେନ୍‌ଚୁସ୍ କିଣି ଆଣନ୍ତି ଆଉ ଗାଁକୁ ଗଲେ ପିଲାମାନଙ୍କୁ ବାଣ୍ଟି ବାଣ୍ଟି ଯାଆନ୍ତି । ତାଙ୍କର ପାପ କରିବାର କୌଣସି ସୁଯୋଗ ନାହିଁ । କିନ୍ତୁ ଲୋକମାନେ ତାଙ୍କୁ ବାଧ୍ୟକଲେ । ସେ ରାଗିଯାଇ କହିଲେ – ତେରେ ନାକ୍‌ମେଁ ରସି, ଦୁମେଁ ଖଟ୍‌ଖଟ୍, ବାନ୍ଧକେ ମାରୁଁ – ଓ ଚାଲିଲେ ବତିଘର ଆଡ଼େ । ନିର୍ଭୟରେ ଗଲେ ଓ ହସି ହସି ଫେରିଆସିଲେ । ଲୋକମାନେ ଚିତ୍କାରକରି ତାଙ୍କୁ କାନ୍ଧରେ ବସାଇଆଣିଲେ ।

କିନ୍ତୁ ବତିଘର କଥା କେହି ଚିନ୍ତା କରୁନାହାନ୍ତି । କେତେ ନାଚାର, କେତେ କେଉଟ, କେତେ ଜେଲେ ଯେ କାହିଁ କୁଆଡ଼େ ଭାସିଯିବେ ସେ କଥା ତ କେହି ଭାବୁ ନାହାନ୍ତି । ସନାତନ ଏକା ଚିନ୍ତା କରୁଛି – ହେ ଭଗବାନ, ବତିଘର ଯେମିତି ଅଛି ସେମିତି ଥାଉ – ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ – କେତେବେଳେ ତା'ର ପାଳି ଆସିବ ?

ବର୍ତ୍ତମାନ ଲୋକମାନଙ୍କ ଭିତରେ ବିପୁଳ ସଂଘର୍ଷ । ଧାର୍ମିକ ଓ ପବିତ୍ରମାନେ ଅଛନ୍ତି – ଧନୀ, ଦରିଦ୍ର, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ – ଅଛବମାନେ ଅଛନ୍ତି । ଜମ୍ବୁ ଅଂଚଳର ସବୁଠୁ ଧନୀ କର୍ଣ୍ଣେଲିଆ ପାତ୍ର ଜଣେ ଜମିଦାର । ସେ ଅଂଚଳର ରାଜା, ଜମିଦାର ସବୁକିଛି । କିନ୍ତୁ ସେ ଜଣେ ଧାର୍ମିକ ଲୋକ, ତାଙ୍କର ଆତ୍ମା ପବିତ୍ର । ପ୍ରତ୍ୟେକ ରବିବାରରେ ସପରିବାରେ ଗୀର୍ଜାକୁ ଆସନ୍ତି । ଏ ପାଦ୍ରୀବାବା ତାଙ୍କୁ ଟାପୁ ଭିତରେ ଥିବା ଗୋଟେ ଟୁବ ପାତିଆରେ ବାପ୍ତିଜ୍ କରିଥିଲେ । ସେ ପ୍ରତିଦିନ ଆହାର ପୂର୍ବରୁ ପ୍ରାର୍ଥନା କରନ୍ତି । ସେ ପ୍ରତ୍ୟେକ ଦିନ ବାଇବେଲ୍ ପଢ଼ନ୍ତି । ବାଇବେଲ୍‌ର ଶେଷ ଅଧ୍ୟାୟ ଅର୍ଥାତ୍ – ପ୍ରକାଶିତ ବାକ୍ୟ ପଢ଼ି ଥରିଉଠନ୍ତି । ସପ୍ତଦୂତ ସପ୍ତତୂରୀ ନେଇ ସପ୍ତମ ମୁଦ୍ରା ଭାଂଗିବାର ଦୃଶ୍ୟ କଳ୍ପନା ଚକ୍ଷୁରେ ଦେଖନ୍ତି । ତାଙ୍କର ମୃତ୍ୟୁକୁ ଭୟ ନାହିଁ । କାରଣ ସେ ଜାଣନ୍ତି ଓ ଗଭୀର ଭାବରେ ବିଶ୍ୱାସ କରନ୍ତି ଯେ ପ୍ରଳୟଭେରୀ ଶୁଣିଲା ପରେ ସେ ମସାଧି ଭିତରୁ ପୁନଃରୁତ୍ଥିତ ହେବେ ଏବଂ ମନ୍ଦିର ବାହାରେ ତାଙ୍କୁ ଅପେକ୍ଷା କରିବାକୁ ପଡ଼ିବ ।

ତାଙ୍କୁ ଯେତେବେଳେ ବତିଘର ଛୁଇଁ ଆସିବାକୁ କୁହାଗଲା, ସେ ହାତଯୋଡ଼ି ପ୍ରାର୍ଥନା କଲେ – ହେ ପରମପିତା, ତୁମ୍ଭର ଦୟାରୁ ମୋର ଜନ୍ମ – ତମେ ଯେପରି ନିର୍ଦ୍ଦେଶ ଦେଇଛ ସେହିପରି ଭାବେ ମୁଁ କାର୍ଯ୍ୟନିର୍ବାହ କରିଛି । ଆଜି ଏଇ ଭୟାନକ ସମୟରେ ମୁଁ ମୋର ଜୀବନ୍ତ ଶରୀରକୁ ଅର୍ପଣ କରୁଛି ଏବଂ ଯଦି କିଛି ପାପ କରିଥାଏ, ତେବେ ସେଥିପାଇଁ ଅନୁତାପ କରୁଛି । ଏ ପ୍ରାର୍ଥନା କେବଳ ଈଶ୍ୱରପୁତ୍ର ଯିଶୁଙ୍କ ଉଦ୍ଦେଶ୍ୟରେ ଆମେନ୍ ।

ପାଦ୍ରୀବାବା ଛାତିରେ କ୍ରୁଶ କାଟି କହିଲେ – ଆମେନ୍, କର୍ଣ୍ଣେଲିଆ ପାତ୍ର ସନ୍ତସନ୍ତିଆ ଜାଗାରେ ପାଦ ଖୁବ୍ ସାବଧାନରେ ପକାଇ ଚାଲିଛନ୍ତି । ଆଗରେ ବତିଘର । ସତେଯେମିତି କ୍ରୁଶ । ଆଉ କ୍ରୁଶରେ କ୍ରୁଶବିଦ୍ଧ ଯିଶୁ ଏବଂ ଏଇ ଟାପୁଟା 'ନରକ ମାଳ' ନିର୍ବିଘ୍ନରେ ପହୁଁଚି

ଗଲେ ବତିଘରେ । ମନେମନେ ଈଶ୍ୱରଙ୍କୁ ଧନ୍ୟବାଦ ଦେଲେ । ଟାପୁ ଆଡ଼କୁ ଚାହିଁଲେ । ଲୋକମାନେ ସେମିତି ଅନେଇ ରହିଛନ୍ତି ତାଙ୍କୁ । ସେ ହାତହଲେଇ ସମସ୍ତଙ୍କୁ ଅନେଇ ଚାହିଁଲେ । ଗୋଟେ ଘଡ଼ଘଡ଼ି ମାରିଲା ପ୍ରଚଣ୍ଡ ଶବ୍ଦକରି । ଟାପୁରେ ଥିବା ଲୋକମାନେ ଆର୍ତ୍ତଚିତ୍କାର କରିଉଠିଲେ । କିନ୍ତୁ କର୍ଣ୍ଣେଲିଆ ପାତ୍ର ସେ ଶବ୍ଦକୁ ଭୂକ୍ଷେପ ନକରି ସନ୍ତସନ୍ତିଆ ଜାଗା ଭିତରେ ନିଜ କାଦୁଅଖେଳା ପାଦ ଦୁଇଟା ପକେଇଲେ । ଟାପୁରେ ଅପେକ୍ଷା କରିଥିବା ଲୋକମାନଙ୍କ ଭିତରେ ଗୁଂଜରଣ । ଏତେବଡ଼ ଲୋକ ! ସେ କ'ଣ ଅନ୍ୟାୟ କରିନଥିବେ ! ଜଣେ ଟିପ୍ପଣୀ ଦେଲା, ସବୁ ଦୋଷ, ସବୁ ଅନ୍ୟାୟ ଗରିବ କରନ୍ତି - ବଡ଼ଲୋକ ଦୋଷ କି ଅନ୍ୟାୟ କରନ୍ତିନି । କର୍ଣ୍ଣେଲିଆ ପାତ୍ର କୂଳରେ ପହଁଚିଲେ ।

ପାଦ୍ରୀବାବା ତାଙ୍କ ଛାତିରେ ଟଙ୍ଗା ହୋଇଥିବା ଗୋଲ୍ ଘଣ୍ଟା ଦେଖି ଘୋଷଣାକଲେ ଯେ ଦିନ ପ୍ରାୟ ବାରଟା ହେଲା । ସନ୍ଧ୍ୟା ପୂର୍ବରୁ ଏ ଅଗ୍ନିପରୀକ୍ଷା ଶେଷ ହୋଇଯିବା ଉଚିତ । ସମସ୍ତେ କିନ୍ତୁ ଯିଦ୍ ଧରି ବସିଲେ ଯେ ରାତି ହେଉ କି ଦିନ ହେଉ କୌଣସିମତେ ପାପୀକୁ ଧରିବାକୁ ପଡ଼ିବ ।

ସନାତନ ଭାବୁଛି, ତା' ପାଳି କେତେବେଳେ ପଡ଼ିବ । ଅନ୍ତତଃ ଯାଇ ବତିଘରରେ ସୁଇଚ ଟିପିଦେଇ ଆସିବ । ତା'ପରେ ଚାହିଁଲେ ସେ ଟାପୁକୁ ନ ଫେରି ବତିଘର ପଛପଟରେ ବନ୍ଧାହୋଇଥିବା ହୁଲିଡଙ୍ଗାରେ ଗାଁକୁ ଚାଲିଯିବ । ସେବି ଦିନରାତି ବତିଘରକୁ ଅନେଇଥିବ । ଛିଃ, କେତେ ପାପ କଥା ଭାବୁଛି ! ତାକୁ ବତିଘରକୁ ଛୁଇଁ ପୁଣି ଫେରିଆସିବାକୁ ପଡ଼ିବ ।

ଟାପୁ ଭିତରେ କନ୍ଦଳ । ପୁଣି କିଏ ଯିବ ! କେହି ଆଗେଇ ଆସୁନାହାନ୍ତି କହିବାକୁ ଯେ - ମୁଁ ଯିବି । ସମସ୍ତେ ଭୀତତ୍ରସ୍ତ ମୁହଁରେ ଚାହିଁ ରହିଛନ୍ତି ଜନତାର ରାୟକୁ । ଜନତା ଜନାର୍ଦ୍ଦନ ବର୍ତ୍ତମାନ ବେଶ୍ ଆତଙ୍କିତ, କାରଣ ଘଡ଼ଘଡ଼ି ପ୍ରବଳ, ତା' ସାଙ୍ଗକୁ ଖୁବ୍ ଯୋରରେ ବାତ୍ୟା ଓ ବର୍ଷା । ସମସ୍ତେ ତୃଷାର୍ତ୍ତ, ପାଣି ମଧ୍ୟ କାହା ପାଖରେ ନାହିଁ । ନାରୁ ପଣ୍ଡା ତା' ପୁଅକୁ ନେଇ ଆସିଥିଲା ଶିବ ମନ୍ଦିରରେ ବାଳ ପକାଇବା ପାଇଁ । ବାଳତ ପଡ଼ିପାରିଲା ନାହିଁ, ସେ ପିଲାଟା କାଲିଠୁ ଖାଇନି । ପାଂଚଛଅ ବର୍ଷର ପିଲା କାନ୍ଦୁଛି - ବାପା ପାଣି ପିଇବି - ବାପା ପାଣି ପିଇବି । ନାରୁ ପଣ୍ଡା ଆଖିରେ ଲୁହ । ଜନତାଙ୍କ ରାୟ, ବର୍ତ୍ତମାନ ନାରୁ ପଣ୍ଡା ତା' ପୁଅକୁ ନେଇଯିବ । ଯଦି ବଂଚିକରି ଆସେ, ତେବେ ପାର୍ବତୀ କୁଣ୍ଡର ପାଣିକୁ ଛାଣିକରି ତା' ପୁଅକୁ ପିଇବାକୁ ଦିଆଯିବ ।

ନାରୁ ପଣ୍ଡା ଆଖି ଛଳଛଳ କରି ବତିଘର ଆଡ଼କୁ ପାଦ ବଢ଼େଇଲା, ବର୍ତ୍ତମାନ ସବୁ ଏକାକାର । କେହି କହୁ ନାହାନ୍ତି - ଜୟ ପ୍ରଭୁ ଭୋଲେଶ୍ୱରଙ୍କର, ଜୟ ଆଲ୍ଲୋ କି ଜୟ ଯିଶୁଖ୍ରୀଷ୍ଟ । ସମସ୍ତେ କହୁଛନ୍ତି ଜୟ ଭଗବାନ କେବଳ ପାଦ୍ରୀବାବାଙ୍କୁ ଛାଡ଼ି । 'ବ୍ରହ୍ମବୈବର୍ତ୍ତ

ପୁରାଣ' । ପତି ହିନ୍ଦୁଧର୍ମ ସଂପର୍କରେ ସବୁ ଜାଣିଥିବା ପାଦ୍ରୀବାବା କେବଳ ମନେ ମନେ କହୁଛନ୍ତି - ଈଶ୍ୱରଙ୍କର ଜୟ ହେଉ - ଈଶ୍ୱରଙ୍କର ରାଜ୍ୟ ଆସୁ ।

ନାରୁ ପଣ୍ଡା ଫେରିଆସିଛି । ମୁହଁରେ ତା'ର ବିଜୟର ଚିହ୍ନ । ସେ ଯେମିତି ଗଡ଼ ଜିଣିକରିଆସିଛି । ତା' ପୁଅ ପାଇଁ ସମସ୍ତେ ପାଣିଧରି ଛିଡ଼ା ହୋଇଛନ୍ତି ।

ଯେଉଁମାନେ ବତିଘରକୁ ଛୁଇଁ ଫେରି ଆସୁଛନ୍ତି ଏବଂ ଯେଉଁମାନେ ସନ୍ଦେହଜନକ ଭାବେ ପାପୀ, ସେମାନେ ସନ୍ଧ୍ୟା ସୁଦ୍ଧା ଜଣଜଣ କରି ସମସ୍ତେ ଫେରିଆସିଲେ । ସେମାନେ ନିଜନିଜକୁ ପୁଣ୍ୟବାନ ବୋଲି ମନେକରି ଅଶେଷ ଗର୍ବରେ ବସିଛନ୍ତି ।

ସନ୍ଧ୍ୟାବେଳକୁ ପ୍ରାୟ ସମସ୍ତେ ଫେରି ଚାଲିଆସିଲେ । ବଳିଲା କେବଳ ସନାତନ । ତା' ଉପରେ ଆରମ୍ଭହେଲା ଅତ୍ୟାଚାର । କିଏ କହିଲା - ତୁ ଶଳା ଅସଲ ପାପୀ - ତୋରି ଲାଗି ଆମେମାନେ ଏତେ କଷ୍ଟ ଭୋଗକରୁଛୁ - ଶଳା ଏତେବେଳଯାଏ କରଛଡ଼ାଦେଇ ବସିଛୁ ? ଚାଲ ଶଳା ବତିଘରକୁ ଛୁଇଁଆସିବୁ ।

ସନାତନ ବଛିଆରି । ତାକୁ ଯିବାକୁ ହିଁ ପଡ଼ିବ । ତା' ଆଖି ଆଗରେ ପାପ କି ପୁଣ୍ୟ ଦେଖାଯାଉନଥିଲା । ସେ କେବଳ ସମସ୍ତଙ୍କ ମୁହଁକୁ ବଲବଲ କରି ଚାହୁଁଥିଲା - ଠିକ୍ ଯେମିତି ମହାଷ୍ଟମୀରେ ବୋଦା ବଳିପଡ଼ିବା ଆଗରୁ କରୁଣ ଦୃଷ୍ଟିରେ ଚାହୁଁଥାଏ । ବୋଦା ଜାଣିନି ସେ ବଂଚିଛି କି ନାହିଁ - ସେ ମରଣ ବି କ'ଣ ଜାଣିନି । ସେ କେବଳ ଜନ୍ମ ହେଲାପରଠୁ ମାଆ ପହ୍ନାରେ ମୁହଁଲଗେଇ କ୍ଷୀର ପିଇଚି । ମାଆ ଦେଖାଦେଖି ଡାଳ, ପତର ଘାସ ଖାଇ ଶିଖିଲା । ସେ ଜାଣିନି ଯେ ଏମିତି ଗୋଟାଏ ଦାଢୁଆ ଖଣ୍ଡା ଆସି ତା' ବେକଷଣ୍ଢାରେ ପଡ଼ିବ ଆଉ ତା' ମୁଣ୍ଡଗଣ୍ଡି ଦି'ଖଣ୍ଡ ହୋଇ ଦୂରରେ ପଡ଼ିବ । ମୋଟଉପରେ ସେ ଜାଣିନଥିଲା ଯେ ତା'ର ଗୋଟାଏ ମୁଣ୍ଡ ଅଛି କି ଗଣ୍ଡି ଅଛି ।

ସେମିତି ସନାତନ ଜାଣିନି, ସେ କେମିତି ଜନ୍ମ ହେଲା । ଆଉ ସେ କେମିତିକା ମରଣ କ'ଣ ଜାଣିବ ? ସବୁଦିନ ସେ ଫୁଲତୋଳେ । ଅରଖଫୁଲ, ଦୁଦୁରା, ଚମ୍ପା, ଗଇସ । ସେସବୁ ଫୁଲ ଯେମିତି ତାଙ୍କ ନୀରବ ଭାଷାରେ କହୁଛି - ମତେ ନିଅ, ମତେ ନିଅ, ଆମେ ତୁମ ଠାକୁରଙ୍କ ଦେହରେ ଲାଗିବା ପାଇଁ ଫୁଟିଛୁ । ସକାଳକୁ ସେସବୁ ଫୁଲ ମଉଳିଯାଆନ୍ତି, ସେମାନେ ହୁଅନ୍ତି ପବିତ୍ର ପାଦୁକ । ହଁ ସେ କ'ଣ ସେମିତି ଗୋଟିଏ ଫୁଲ, ହୁଏତ ଝାଉଁଳିଗଲା ପରେ ସେ ପବିତ୍ର ହେବ ! ପିଲାଦିନେ ତା' ବାପା କେବେ ତାକୁ କାହାଣୀ ଶୁଣେଇ ନାହାନ୍ତି - କାହାଣୀ ଶେଷରେ କହି ନାହାନ୍ତି - ମୋ ଗପଟି ସରିଲା, ଫୁଲ ଗଛଟି ମରିଲା । ଏବେ ଏସବୁ ଚିନ୍ତା କରିବାକୁ ସମୟ ନାହିଁ । ଟାପୁ ଭିତରେ ଲୋକମାନେ, ଶଳା ଅସଲ ପାପୀଙ୍କୁ ସନ୍ତସନ୍ତିଆ ଭୂଇଁକୁ ଓହ୍ଲେଇ ଦେଇଛନ୍ତି । ନଫେରିଲେ ଲୋକମାନେ ତାକୁ ପିଟି ପିଟି

ମାରିଦେବେ । ମଥା ଉପରେ ପ୍ରବଳ ଘଡ଼ଘଡ଼ି । ବତିଘର ଆଲୁଅ କାଲିଠୁ ଜଳିନି । ନିହାତି କର୍ତ୍ତବ୍ୟନିଷ୍ଠ ହୋଇ ସନାତନ ଆଗେଇ ଆସିଛି । ପାଦ୍ରୀବାବୁଙ୍କଠୁ ଆରମ୍ଭକରି ସମସ୍ତେ ଏଇ ବତିଘର ପାଖକୁ ଗଲାବେଳେ ପଛକୁ ଥରେଅଧେ ଅନେଇଛନ୍ତି । କିନ୍ତୁ ସନାତନ କେବଳ ଦେଖୁଛି ବତିଘରକୁ । ବତିଘର ସେପାଖରେ ଯେ ତା' ଗାଁ, ତା' ସେବି, ତା' ଗାଈ, ତା' ଜମି ସେସବୁ ତା'ର କିଛି ମନେପଡୁନି ।

ଝଲକାଏ ପବନ ତାକୁ ଧକ୍କା ଦେଇ କାଦୁଅ ଉପରେ ପକେଇଦେଲା । ସେ କାଦୁଅକୁ ବହୁକଷ୍ଟରେ ଉଠିଲା । ଟାପୁ ଭିତରେ ଥିଲା ଲୋକମାନେ ମଜା ଦେଖୁଛନ୍ତି । ସମସ୍ତେ ନିଶ୍ଚିତ ଯେ ସନାତନ ବତିଘର ପର୍ଯ୍ୟନ୍ତ ପହୁଁଚିପାରିବ ନାହିଁ । ହଠାତ୍ ଆଉ ଗୋଟେ ଘଡ଼ଘଡ଼ି । ଦୂରରେ ଥିବା ଝାଉଁବଣ ଭିତରେ ହଠାତ୍ ନିଆଁ ଲାଗିଗଲା । ଏଇ ଯେ କେମିତି ଗୋଟେ ବାରୁଦିଆ ଗନ୍ଧ । ସମସ୍ତେ ଦେଖୁଛନ୍ତି - ଅବଶ୍ୟ ସନାତନ ପାପୀ ଏବଂ ଅବଶ୍ୟ ସନାତନ ମରିବ । ଏତେ ପୁଣ୍ୟବାନ ଲୋକଙ୍କ ଜୀବନ ବିପନ୍ନ କରି ଲୋକଟା ଚୁପ୍‌ଚାପ୍ ହୋଇ ବସିଥିଲା ଅଥଚ କେହି ଜାଣିପାରି ନଥିଲେ । ଛିଃ, ଛିଃ, ଏମିତି ଜନ୍ମ ନେବା ଅପେକ୍ଷା ମା'ପେଟରୁ ତା'ର ମରିଯିବା ଉଚିତ ଥିଲା । ସନାତନ ମରିବ ଏବଂ ତା'ପରେ ଏଇ ପ୍ରଳୟଙ୍କରୀ ଝଡ଼, ବିଜୁଳି, ବର୍ଷା ବନ୍ଦ ହେବ ।

ଏଇ ଦେଖ, ବତିଘର ଉପରେ ଗୋଟେ ଶାଗୁଣା ବସିଛି ।

ଶାଗୁଣା ଜାଣିଛି, ମଣିଷ ମରିବା ଶବର ତାକୁ ଯେପରି ଶୂନ୍ୟଶବ୍ଦ ହୁଏ । ସନାତନ ମରିବ ଏବଂ ତା' ମଡ଼ାଟା ଶାଗୁଣାର ଆହାର ତିନି ଚାରି ଦିନ ପାଇଁ ହେବ ।

ସନାତନ କାଦୁଅ ଉପରୁ ଉଠି ଘୁଷୁଡ଼ି ଘୁଷୁଡ଼ି ଚାଲିଛି । ସମୁଦ୍ରପାଣି ବି ମାଡ଼ିଆସିଲାଣି ଆଣ୍ଠୁକ ପର୍ଯ୍ୟନ୍ତ । ଏହା ବି ହୋଇପାରେ ଯେ ଜୁଆରିଆ ସମୁଦ୍ର ତା'ର ମାଟିଆପାଣିରେ ସନାତନକୁ ନେଇ ଯାଇପାରେ ତା' କୋଳକୁ । ଟାପୁ ଭିତରର ଲୋକମାନେ ନିଶ୍ଚିତ ମୃତ୍ୟୁମୁଖରୁ ବଂଚିବାର ତ୍ରାହିତ୍ରାହି କହୁଛନ୍ତି ମନେମନେ ।

ସନାତନ ମରୁ । ପୃଥିବୀର ପାପ ଭାର କମିଯାଉ । ଏଇମିତି ପାପଭାରରୁ ଧରଣୀକୁ ଉଦ୍ଧାର କରିବା ପାଇଁ ଭଗବାନ୍ ବାରମ୍ବାର ରୂପ ଧରିଛନ୍ତି । ଆଜି ସେଇ ଭଗବାନ ଆସିଛନ୍ତି ଝଡ଼ ରୂପରେ । ସେ ହିଁ ବିଚାର କରିବେ । ଆଜି ତାଙ୍କର ପୁନଃରୁଥାନ । ଆଜି କୟାମତ୍, ଆଜି ମୁଦ୍ରା ଭଂଗ ହେବ ।

କିନ୍ତୁ ସନାତନ କାଦୁଅରେ ଚାଲିଛି । ଏବଂ ବତିଘର ପାଖରେ ପହଂଚୁ ପହଂଚୁ - ଫେରିବ ତ ସେଇ ଦୁର୍ଗମ ପଥ ଦେଇ ! କେତେ ତା'ର ପୁଣ୍ୟ ଅଛି ଯେ ସେ ଟାପୁପାଖକୁ ଫେରିଆସିବ ?

## ବତିଘର

ସନାତନ ବତିଘରକୁ ଛୁଇଁ ନମସ୍କାର କଲା । କିନ୍ତୁ ତା' ନମସ୍କାର କ'ଣ କୌଣସି ଭଗବାନ୍ ଗ୍ରହଣ କରୁଛନ୍ତି ? ଟାପୁ ଭିତରେ ବିସ୍ମୟର ଅନ୍ଧକାର ।

ସନାତନ ବତିଘର କବାଟରେ ଭିତରକୁ ପଶିଗଲା । ଆଉ ସୁଇଚ୍ ଟିପିଲା । ବତିଘର ଆଲୁଅଟା ଜଳିଉଠି ବୁଲିବାକୁ ଲାଗିଲା । ଟାପୁ ଭିତରର ଲୋକମାନେ ଆଲୋକ ଦେଖି ଆଶ୍ୱସ୍ତ ହୋଇଛନ୍ତି ।

ବର୍ତ୍ତମାନ ଅନ୍ଧାର । ମେଘ ଆକାଶ ଭିତରେ ପ୍ରଥମା କି ଦ୍ୱିତୀୟା ଜହ୍ନ ଦେଖାଯାଉନାହିଁ । ଟାପୁ ଭିତରେ ଭୀଷଣ ଯୁକ୍ତି, ସନାତନ ଫେରିବ ନା ନାହିଁ । କେତେ ଲୋକ କହିଲେ - ଶଳା ଯଦି ଫେରି ନ ଆସେ, ତେବେ ତା' ଘରେ ପଶି ଆମେ ବାଡ଼େଇବୁ - କେତେ ଲୋକ କହିଲେ - ବତିଘର ଆଲୁଅ ଚିରଦିନ ଲାଗି ଲିଭେଇଦେବୁ - ସନାତନର ଘର ପୋଡ଼ିଦେବୁ - ତା' ସ୍ତ୍ରୀକୁ ବିଧବା କରିଦେବୁ । କିନ୍ତୁ ଏତେସବୁ ସାଧୁକର୍ମ କରିବାକୁ ପଡ଼ିଲାନି ।

ଜୁଆର ମାଡ଼ିଆସିଲା । ଘଡ଼ଘଡ଼ି ଗୋଟେ ପ୍ରଚଣ୍ଡ ଗର୍ଜନ କରି ଟାପୁକୁ ଥରେଇଦେଲା । ସମସ୍ତଙ୍କ ଗୋଡ଼ତଳ ମାଟି ଯେମିତି ରସାତଳକୁ ଚାଲିଯାଇଛି । ଗୋଟାଏ କ୍ରନ୍ଦନରୋଳ । କେତେ ଗୁହାରି, କେତେ ରକ୍ଷାକର, କେତେ ଆଲ୍ଲାଲ୍ଲୋ, କେତେ ଗଡ୍ ସେଭ୍ ମି । ତା'ପରେ ଗୋଟେ ନୀରବତା ଏବଂ ଅସୀମ ନୀରବତା, ଯେଉଁ ନୀରବତା ସୃଷ୍ଟି ଆଗରୁ ଥିଲା ।

ସନାତନ ବତିଘରକୁ ଆଉଜି ଛିଡ଼ାହୋଇଛି । ବତିଘର ଆଲୁଅ ବୁଲିଯାଇଛି । ହୁଏତ ଅନେକ ଦୂରରେ ଥିବା ଜାହାଜମାନଙ୍କୁ ସତର୍କ କରି । ସନାତନ ଫେରିବ - କିନ୍ତୁ କୋଉଠିକି ଫେରିବ ? ଟାପୁଟା ଯେ ନିଶ୍ଚିହ୍ନ ।

ସନାତନକୁ ଶୁଭିଲା ବତିଘର ଡାକୁଛି -

'ସନାତନ, ସନାତନ, ସନାତନ !'

# ଭିକାରୁଣୀ

ସେ ଆସୁଥିଲା ମୋ ପାଖକୁ ଗୋଟେ ଭିକାରୁଣୀ ପରି । ସେତେବେଳେ ସେ ଖୁବ୍ ପିଲା - ମାନେ ଆଠ ଦଶ ବର୍ଷର ଝିଅ । ଦିନେ ମୁଁ ମୋ ଘର ଫାଟକ ପାଖରେ ଛିଡାହୋଇ ସକାଳର କଅଁଳିଆ ଖରାକୁ ସ୍ୱାଗତ କରୁଥିଲି । ସେ ସ୍କୁଲକୁ ଯାଉଥିଲା । କାହିଁକି କେଜାଣି ସେ ଘର ଆଗରେ ଗଲାବେଳେ ମତେ ଟିକେ ଦୂରରୁ ଗଭୀର ଭାବରେ ଚାହେଁ ଓ ଠିକ୍ ମୋ ଆଗଦେଇ ଗଲାବେଳେ ଅଳ୍ପ ଅଳ୍ପ ହସି ସ୍କୁଲକୁ ଚାଲିଯାଏ । ମୁଁ ଜାଣେନା, ସେ କିଏ, କାହାର ଝିଅ, କିନ୍ତୁ ଲାଗିଥିଲା, ସେ ବୋଧେ ମୋତେ ଭଲକରି ଜାଣେ । ଏ ସାହିର ସମସ୍ତେ ମତେ ଜାଣନ୍ତି, ତେଣୁ ସେ ହୁଏତ ଜାଣିଥିବ ।

ସକାଳୁ ଉଠି ମୁଁ ଗଳ୍ପ ଲେଖେ । ଗଳ୍ପ ଲେଖିବାରେ ମୋର ସବୁଠୁ ବଡ଼ ଆନନ୍ଦ । ମୋ ଗଳ୍ପ ଅନେକ ଲୋକ ବି ପଢ଼ନ୍ତି । ଅନେକ ଚିଠି ଆସେ । ଅନେକ ପ୍ରଶଂସା । ଅନେକ ଚରିତ୍ରଙ୍କ ଉପରେ ମୁଁ ଗଳ୍ପ ଲେଖିଛି ।

କିନ୍ତୁ ଏଇ ସାନଝିଅଟିର ଚରିତ୍ର ମୁଁ କିଛି ବୁଝିପାରୁ ନଥିଲି । ଏଣିକି ଲକ୍ଷ୍ୟକଲି, ସେ ଝିଅଟି କ'ଣ ଗୋଟେ କହିବାକୁ ଯାଇ କହିପାରୁନି । ତା'ର ସାହସ ବୋଧହୁଏ ହଉନି । ଦିନେ ମୁଁ ଆରମ୍ଭକଲି । ସେ ଦିନେ ଟିକେ ଡେରିରେ ସ୍କୁଲକୁ ଯାଉଥିଲା । ମୁଁ ପଚାରିଲି -

'କିରେ, ଆଜି ଏତେ ଡେରି ?'

'ସ୍କୁଲରେ ବଡ଼ପିଲାଙ୍କର ପରୀକ୍ଷା ହେଉଛି । ତେଣୁ ଆମର ଦୁଇ ପିରିୟଡ୍ ଛୁଟି ।

ଏତିକି କହି ସେ ଚାଲିଗଲା । ମୁଁ ଚାହିଁରହିଲି, ତା' ଯିବା ବାଟକୁ । ମନ ମୋର ହଉଥିଲା, ତା'ପରି ଗୋଟେ ଛୋଟପିଲା ହୋଇଯିବାକୁ, ପୁଣି ଏକ ନୂଆ କିଶୋର ହୋଇ ସେଇ ଝିଅଟାକୁ ଭଲ ପାଇବାକୁ । କିନ୍ତୁ ତାହା କ'ଣ ସମ୍ଭବ ! ଜୀବନର ସବୁଜିମା ଥରେ ଅସ୍ପଷ୍ଟ ହୋଇଗଲେ ପତ୍ରପଲିତ ହେବ ସିନା, ଆଉଥରେ ସବୁଜ ହେବ ନାହିଁ । କେବଳ ଜଣେ ଜଣେ ମନକୁ ସବୁଜ କରି ରଖିଥାଆନ୍ତି ।

ମୁଁ ସେମାନଙ୍କ ଭିତରୁ ଜଣେ । ମୁଁ ବି ଚିରସବୁଜ ହୋଇ ରହିବାକୁ ଚେଷ୍ଟାକରିଛି । ମୋର ଲେଖାରେ, କବିତାରେ ସମସ୍ତେ ଏହି ଉଷ୍ଣତାର ସ୍ୱାଦ ପାଇଛନ୍ତି । ତେଣୁ ଝିଅଟି ବିଷୟରେ ଅନୁସନ୍ଧାନ କଲେ କ୍ଷତି କ'ଣ ?

ମୁଁ ଧୀରେ ଧୀର ତା' ସହିତ ଅନ୍ତରଙ୍ଗ ହେବାକୁ ଚେଷ୍ଟାକଲି । ପ୍ରଥମେ ଅନୁଭବ କଲି, ଏ ଝିଅଟିର କୌଣସି ପ୍ରେମ ଅନୁଭବ ନାହିଁ । କେବଳ ପୁଅମାନଙ୍କ ଆଡ଼କୁ ଅନେଇବାରେ ଗୋଟେ ମାଦକତା ସେ ହୁଏତ ପାଏ ।

ଦିନେ ସେ ଝିଅଟି ଛିଡ଼ାହୋଇଥିଲା ମୋ ଫାଟକ ପାଖରେ । ମୋତେ ଖୁବ୍ ଆଶ୍ଚର୍ଯ୍ୟ ଲାଗିଲା । ଆଜି ସେ ହସୁନି । କାରଣ ସେ ହୁଏତ ନିଷ୍ପତ୍ତି କରି ଆସିଛି ଯେ ସେ ହସିବ ନାହିଁ, କେବଳ କିଛି କହିବ । ମୁଁ ପଚାରିଲି –

'କ'ଣ କହିବୁ ?'

'ହଁ, ଆପଣଙ୍କର ଗଳ୍ପ ଅନେକ ମାଗାଜିନ୍‌ରେ ବାହାରେ । ମୁଁ ପଢ଼େ, କିନ୍ତୁ ବୁଝିପାରେନି । ଆପଣ ଛୋଟପିଲାଙ୍କ ଲାଗି ଗଳ୍ପ ଲେଖନ୍ତିନି ?'

ଆରେ ସତେତ ! ମୁଁ ଶିଶୁସାହିତ୍ୟ ପାଇଁ କିଛି କରିନି । କେବଳ ରୋମାଣ୍ଟିକ୍ ଗଳ୍ପ ଲେଖିଚାଲିଛି । କଥା ଦେଲି –

'ଏଥରକ ତୋ ପାଇଁ ଗଳ୍ପ ଲେଖିବି । କିନ୍ତୁ ପ୍ରତି ସପ୍ତାହରେ ଗୋଟେ ।

ଆମର ଏଇ ମୌଖିକ ଚୁକ୍ତି ବଜାୟ ରହିଲା । ପ୍ରତି ସପ୍ତାହରେ ଗୋଟେ ଛୋଟପିଲାଙ୍କ ପାଇଁ ଗଳ୍ପ ଲେଖି ତାକୁ ଫାଟକ ପାଖରେ ଦିଏ ଓ ସେଇ ଗଳ୍ପଟିକୁ ନେଇ ସ୍କୁଲକୁ ସେ ଚାଲିଯାଏ । ସ୍କୁଲରେ ସାଂଗସାଥୀ ମେଳରେ ଗଳ୍ପ ହୁଏତ ପଢ଼ାହୁଏ ଆଉ ସ୍କୁଲରୁ ଫେରିବା ବାଟରେ ମତେ ଗପଟି ଫେରେଇଦେଇ ଯାଏ ।

ଏ ବି ଗୋଟେରକମ ଖୁସି । ଏମିତି ଏକ ଗଳ୍ପ ପଢ଼ିବାକୁ କାହାର ବେଳ ନାହିଁ । ଗାଳ୍ପିକମାନେ ନିଜ ନିଜ ଗଳ୍ପକୁ ବାରମ୍ବାର ପଢ଼ନ୍ତି ଓ ନିଜ ନିଜ ପତ୍ନୀମାନଙ୍କୁ ନିଜ ଗଳ୍ପ ପଢ଼ାନ୍ତି ଏବଂ ସେଇ ପତ୍ନୀମାନେ ଆଦୌ ସେଇ ଗପ ବୁଝିପାରନ୍ତି ନାହିଁ । ତେବେ ଯଦି ଗୋଟେ ଛୋଟଝିଅ କେବଳ ଗଳ୍ପ ପଢ଼ିବାପାଇଁ ଭିକ୍ଷା ମାଗିପାରେ, ତେବେ କ୍ଷତି କ'ଣ ? ମୋର ଗଳ୍ପ-ଲେଖକ ହେବାର ଏ ବି ଏକ ସଫଳତା । କିଏ ମୋତେ ଚିଠି ଲେଖୁଛି ଯେ, ତୁମର ଏଇ ଗଳ୍ପ ଅସାଧାରଣ ! ସମସ୍ତେ ବ୍ୟସ୍ତ ନିଜ ନିଜ ଗଳ୍ପ ପଢ଼ିବାକୁ ଏବଂ ନିଜ ନିଜ ଗଳ୍ପ ଲେଖିବାକୁ ।

ଏଇ ଅବସରରେ ଆଉ ଏକ ଘଟଣା କୁହେ । ମୋ ସ୍ତ୍ରୀ, ଯେ କି କେବେ ମୋର ଗଳ୍ପ ପଢ଼େନା, ସେ ମୋତେ ସନ୍ଦେହ କରିବା ଆରମ୍ଭ କଲାଣି । କାରଣ ଏଇ ଛୋଟଝିଅଟି ଧୀରେଧୀରେ ବଡ଼ ହୋଇଆସିଲାଣି । ଏବଂ ପୂର୍ଣ୍ଣଯୌବନା ହେବା ଆଗରୁ ହୁଏତ ତା'ର ପ୍ରେମ ମୋ ଦିଗକୁ ଗତିକରିବ ।

ସ୍ତ୍ରୀମାନେ ସବୁବେଳେ ସବୁକଥାରେ ଈର୍ଷାଳୁ । ମୁଁ କାହିଁକି ହସୁଛି, ମୁଁ କାହିଁକି ଖୁସି, ମୁଁ କାହିଁକି କାହା ସହିତ କଥାବାର୍ତ୍ତା କରୁଛି, ସବୁ ବିଷୟରେ ତାଙ୍କର ଅବିଶ୍ୱାସ । ତେଣୁ ମୋର ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ମୋର କେବଳ ଜିଦ୍ ବଢ଼ିଗଲା ଛୋଟପିଲାଙ୍କ ପାଇଁ ଗଳ୍ପ ଲେଖିବାକୁ । ସେଇ ଝିଅଟି ଆସେ, ପ୍ରତି ସପ୍ତାହରେ ଭିକାରୁଣୀ ପରି ମୋ ଗପ ନେବାକୁ ଏବଂ ମୁଁ ତା' ହାତକୁ ବଢ଼େଇଦିଏ ଗୋଟେ ଛୋଟ ଗପ । ସେ ସେହିଦିନ ତାକୁ ପଢ଼ି ପୁଣି ସନ୍ଧ୍ୟାବେଳକୁ ଫେରେଇ

ଦେଇଯାଏ । ଏମିତି ଏମିତି ହୋଇ ମୋର ଅନେକ ଗଳ୍ପ ଲେଖାହୋଇଗଲା । ଦୁଇ ଖଣ୍ଡ କ୍ଷୁଦ୍ରଗଳ୍ପ ବହି ମଧ୍ୟ ଛପାହେଲା ।

କିନ୍ତୁ ରାସ୍ତାରେ ଲୋକେ ଆମକୁ ଦେଖି ସନ୍ଦେହ କରୁଥିଲେ । ରାସ୍ତାର ଲୋକେ କାହିଁକି, ମୋ ସ୍ତ୍ରୀ ମଧ୍ୟ ସନ୍ଦେହ କରୁଥିଲା । ଝିଅଟି ମତେ ଗଳ୍ପ ଫେରେଇଦେଲା ପରେ ମୋ ସ୍ତ୍ରୀ ସେ ଗଳ୍ପଟିକୁ ଯାଂଚ୍‌କରେ । ତା'ର ସନ୍ଦେହ, ତା' ଭିତରେ ହୁଏତ ଖଣ୍ଡେ ପ୍ରେମପତ୍ର ଥିବ ।

ଏମିତି ଭାବିବା ସ୍ୱାଭାବିକ । କାରଣ ବର୍ତ୍ତମାନ ସେ ଝିଅଟି ଯୁବତୀ । ତା' ଦେହରେ ଢେଉ ଯେମିତି କୂଳ ଲଂଘି ବନ୍ୟାହେବାକୁ ଚାହୁଁଛି । ସେ ବି ଆଜିକାଲି ଶିଶୁସାହିତ୍ୟ ପଢ଼ିବାକୁ ଆଗ୍ରହୀ ନୁହେଁ । ସେ ଖୋଜୁଛି, କେବଳ ରୋମାଣ୍ଟିକ୍ ଗଳ୍ପ ଏବଂ ମୁଁ ଶିଶୁସାହିତ୍ୟରୁ ରୋମାଣ୍ଟିକ୍ ଗଳ୍ପ ଆଡ଼କୁ ଚାଲିଯାଉଛି ।

ଏଣେ ମୋ ସ୍ତ୍ରୀ ବ୍ୟତିବ୍ୟସ୍ତ ହେଇଉଠିଲାଣି । କାହିଁକି ଏତେ ଗଳ୍ପ ଲେଖାଚାଲିଛି? ଗଳ୍ପ ଲେଖି ଲାଭ କ'ଣ ? ତା' ଅପେକ୍ଷା ମୁଁ ଯେଉଁ ଚାକିରି କରୁଛି, ସେଠି ଟିକେ ବେଶି ନିଷ୍ଠାପର ହେଲେ ଗୋଟେ ପ୍ରମୋସନ୍ ମିଳିପାରେ । ଦୁଇପଇସା ଅଧିକ ହୋଇପାରେ । ଏ ବେକାର ବେକାର ଗଳ୍ପ ଲେଖାରୁ କ'ଣ ମିଳିବ ? ଯେଉଁ ପ୍ରକାଶକ ବହି ବାହାର କରୁଛନ୍ତି, ସେମାନେ ତ ରୟାଲିଟି ବାବଦରେ କିଛି ପଇସା ଦଉ ନାହାନ୍ତି । ଗଳ୍ପ କାହିଁକି ଲେଖିବ?

ମୋ ସ୍ତ୍ରୀର ଯୁକ୍ତି ଉପରେ ମୁଁ ବେଳେବେଳେ ଚିନ୍ତାକରେ ।

ସତରେ ତ, ମୁଁ ମିଛଟାରେ ସମୟ ନଷ୍ଟ କରୁଛି !

କିଛିଦିନ ପରେ ଗଳ୍ପ ଲେଖିବା ବନ୍ଦ୍ କରିଦେଲି । ସେ ଝିଅଟି ମଧ୍ୟ ମୋ ଫାଟକ ପାଖକୁ ଆସିବା ଛାଡ଼ିଦେଲା । ମୋ ସ୍ତ୍ରୀ ଆଶ୍ୱସ୍ତ ହେଲା ଯେ ଆଉ ସେ ଡାଆଣୀ ମୋ ଉପରେ ଖରାପ ନଜର ପକେଇବାକୁ ଆସୁନି ।

ହଠାତ୍ ଦିନେ ଖବର ପାଇଲି, ମୋ ବହି ଏକ ଜାତୀୟ ସ୍ତରରେ ପୁରସ୍କାର ପାଇଛି । ମୋ ସ୍ତ୍ରୀ ମୁହଁରେ ଉଛୁଳା ହସ । ଯେମିତି ସେ ଗୋଟେ ଗଡ଼ ଜିଣିଛି । ତା'ର ଆଉ ତିନି ଭଉଣୀ ମଧ୍ୟ ମୋ ପରି ଚାକିରିଆଙ୍କୁ ବାହାହୋଇଛନ୍ତି । କିନ୍ତୁ କେହି କେବେ ଗଳ୍ପ ଲେଖି ନାହାନ୍ତି । ଆଉ ଜାତୀୟ ସ୍ତରରେ ମୋର ପୁରସ୍କାର ପାଇବାଟା ତା'ର ଗର୍ବ ।

ମୁଁ କିନ୍ତୁ ମନେମନେ ଖୋଜୁଥିଲି ସେଇ ଝିଅଟିକୁ, ଯେ ମୋତେ ଜିଦ୍ କରି ଗଳ୍ପ ଲେଖାଉଥିଲା । ଏତେ ଦିନ ସମ୍ପର୍କ ଭିତରେ ମୁଁ ଜାଣିପାରି ନଥିଲି, ତା' ଘର କୋଉଠି ଓ ସେ କାହାର ଝିଅ । ପ୍ରେରଣାର ମାନେ ବୋଧହୁଏ ଏଇଆ ଯେ, କୋଉଠୁ ପ୍ରେରଣା ତୁମେ ପାଇଲ, ସେଇଟା ତୁମେ ହିଁ ଜାଣିପାରନି ।

ମୁଁ ଦିଲ୍ଲୀ ଯିବି ଜାତୀୟ ସ୍ତରରେ ପୁରସ୍କାର ଆଣିବାକୁ । ମୋ ସ୍ତ୍ରୀ ଗତ ତିନିଦିନ ଧରି ଜିନିଷପତ୍ର ଯୋଗାଡ଼ କରିବାରେ ବ୍ୟସ୍ତ । ମୁଁ ମଧ୍ୟ ଅଫିସ୍‌ରୁ ଛୁଟି ଆଣିବା ଓ ଦିଲ୍ଲୀରେ ଥିବା

ମୋର ବନ୍ଧୁମାନଙ୍କୁ ଖବରଦେବାରେ ବ୍ୟସ୍ତ । ଏଇ ବ୍ୟସ୍ତତା ଭିତରେ ମୁଁ ଭୁଲିଯାଇଛି, ସେଇ ଝିଅଟିକୁ ।

ଯେଉଁଦିନ ଖରାବେଳେ ମୁଁ ନୀଳାଚଳ ଟ୍ରେନ୍ ଯୋଗେ ଯିବି, ସେଇଦିନ ସକାଳୁ ମୁଁ ଫାଟକ ପାଖରେ ଛିଡ଼ାହୋଇଥାଏ, କାଳେ ସେ ଝିଅଟି ଆସିବ । ଅନ୍ତତଃ ତାକୁ ଏ ସୁଖବରଟା ଦେଇଯିବି । ମୋ' ସ୍ତ୍ରୀ ବାରମ୍ବାର ମନେପକାଉଛି - ଟ୍ରେନ୍ ଟାଇମ୍ ହୋଇଗଲା । ରିକ୍ସା ଡାକ ।

ରିକ୍ସା ଆସିଲା । ମୁଁ ଏବଂ ମୋ ସ୍ତ୍ରୀ ରିକ୍ସାରେ ବସିଲୁ । ଗୋଡ଼ ପାଖରେ ସୁଟ୍‌କେସ୍ । ମୋ ସ୍ତ୍ରୀ ଓଠରେ ବିଜୟିନୀର ହସ । ପଡ଼ାର ସ୍ତ୍ରୀଲୋକମାନେ ଅନେଇ ରହିଛନ୍ତି ଆମକୁ । ମୋ ସ୍ତ୍ରୀ ଗର୍ବରେ ଫାଟିପଡୁଛି । ମୁଁ କିନ୍ତୁ ଖୋଜୁଛି ସେଇ ଝିଅଟିକୁ, ଯେ ଗୋଟେ ଭିକାରୁଣୀ ପରି ମୋତେ ଗଳ୍ପ ମାଗିବାକୁ ଆସୁଥିଲା । ସେ ଆସିଲାନି । ଆଜି ମୁଁ ଦିଲ୍ଲୀ ଯାଉଛି । ତେଣୁ ହୁଏତ ଗଳ୍ପ ଲେଖୁନଥିବି - ଏଇ କଥା ଚିନ୍ତାକରି ସେ ବୋଧହୁଏ ଆସିନି । ଟ୍ରେନ୍ ଟାଇମ୍ ହୋଇଯାଉଛି । ରିକ୍ସା ଛୁଟିଛି ।

ଅଳ୍ପ ଦୂରରେ ସେଇ ଝିଅଟିର ସ୍କୁଲ୍ ପଡ଼ିଲା । ଫାଟକ ପାଖରେ ଆସି ହସ ହସ ମୁହଁରେ ଝିଅଟି ଛିଡାହୋଇଛି । ମୋ ସ୍ତ୍ରୀ ମୋ ପାଖରେ ବସିଛି । ସେଇ ଝିଅଟିର ହସର ପ୍ରତ୍ୟୁତ୍ତରରେ ମୁଁ ଟିକେ ବି ହସ ଦେଇପାରିଲିନି । କେବଳ ରିକ୍ସା ତା' କଡ଼ଦେଇ ଆଗେଇ ଯିବାବେଳେ ଶୁଣିଲି, ଛୋଟ ଗୋଟେ ଅଭିବାଦନ ।

ମୋ ସ୍ତ୍ରୀ ବୁଲିପଡ଼ି ଅନେଇଲା ଓ ମୋତେ ପଚାରିଲା - ସେ ଝିଅଟା କ'ଣ କହିଲାକି ?

- ନା, କିଛି ନୁହେଁ ।

ଦିଲ୍ଲୀରୁ ଫେରିଲି ଅଜସ୍ର ସମ୍ମାନ ଓ ପ୍ରଶଂସା ନେଇ । ମୋ ସ୍ତ୍ରୀ ଦିଲ୍ଲୀ ବୁଲିବା ଭିତରେ ସବୁବେଳେ ଗୋଟେ ଅହେତୁକ ଅହମିକା ନେଇ ବ୍ୟସ୍ତ । ସେ ଯେମିତି ଚାହୁଁଥିଲେ ସମସ୍ତେ ତାଙ୍କୁ ଚିହ୍ନନ୍ତୁ, କାରଣ ସେ ମୋ ସ୍ତ୍ରୀ । କିନ୍ତୁ ମୋ ମନ ସବୁବେଳେ ଉଦାସ ଥିଲା । ଗୋଟେ ଭିକାରୁଣୀକୁ ଟିକେ ହସ ମଧ୍ୟ ଦେଇପାରିଲିନି - ଏଇ କଥା ଚିନ୍ତା କରି କରି କଟକକୁ ଫେରିଲି ।

ଷ୍ଟେସନ୍ ଆସିବା ଆଗରୁ ମୋ ଆଖି ଛଳଛଳ ହୋଇଉଠିଥିଲା । ଭାବିଥିଲି, ଷ୍ଟେସନ୍‌ରେ ନିଶ୍ଚୟ ସେ ଝିଅଟି ମୋତେ ଅଭିବାଦନ ଦବାକୁ ଛିଡ଼ାହୋଇଥିବ ।

କିନ୍ତୁ ଆଶ୍ଚର୍ଯ୍ୟ ! ଷ୍ଟେସନ୍‌ରେ ସେ ଝିଅ ନାହିଁ । ଅଥଚ ଶହ ଶହ ଭିକାରୁଣୀ ଛିଡାହୋଇଛନ୍ତି । ମୁଁ ଟ୍ରେନ୍‌ରୁ ଓହ୍ଲେଇପଡ଼ିବାମାତ୍ରେ ସମସ୍ତେ ମତେ ଭିକଦେବାକୁ ଆଗେଇ ଆସିଲେ । ମୁଁ ମାଗେ କି ନ ମାଗେ, ସମସ୍ତେ ମୋ ଆଗରେ ପଇସା ପକେଇଦେଇଗଲେ ।

କେବଳ ଥରେ ଭିକ ଦେଇପାରିଲିନି ବୋଲି ଏଇ ଭିକାରୁଣୀମାନେ ମୋତେ ଅପମାନ ଦେଇଗଲେ !

# ଓ ହେନେରୀ

ମୋର ଅଲଗା ନାଁ ଥିଲା । ବେଆଇନ୍ କାମ କରିବାକୁ ବାରମ୍ବାର ନାଁ ବଦଳେଇବାକୁ ପଡ଼େ । ତେଣୁ ମୋ ନାଁ ବାରମ୍ବାର ବଦଳେଇ ବଦଳେଇ କେବଳ ଲେଖାଲେଖି କରିବା ଦିଗରେ ମୋ ନାଁଟା 'ଓ ହେନେରୀ' ରଖିଛି । ମୁଁ ପରିତ୍ୟକ୍ତ କୂଅ ନୁହେଁ, ମୁଁ ପଥଶ୍ରାନ୍ତ ପଥିକ ନୁହେଁ, କିନ୍ତୁ ବର୍ତ୍ତମାନ କଟକ ସହରର ଡଗରପଡ଼ାରେ ଗୋଟେ ଘର କିଣିଛି ।

ଘର କାହିଁକି କିଣିଛି ? ମୁଁ କଲିକତାରେ, ବମ୍ବେରେ, ୱାସିଂଟନ୍ ଡିସିରେ କିମ୍ବା ଲସ୍‌ଅଂଜେଲସ୍‌ରେ ବି କିଣିପାରିଥାଆନ୍ତି । କିନ୍ତୁ ନାଇଁ, ମୁଁ କିଣିଲି କଟକ ଡଗରପଡ଼ାରେ । କାରଣ, ମୁଁ ସ୍ୱପ୍ନରେ ଦେଖେ ଗୋଟେ ଘର, ଯେଉଁ ଘରେ ମୁଁ ହାଫ୍‌ପ୍ୟାଣ୍ଟ ପିନ୍ଧି ବୁଲୁଛି ଓ ସେ ଘରଟିରେ ମୁଁ ମୋର ତେରବର୍ଷରୁ ଊଣେଇଶି ବର୍ଷ ପର୍ଯ୍ୟନ୍ତ ରହିଥିଲି, ଇଂରାଜୀରେ ଯାହାକୁ କହନ୍ତି ଟିନ୍ ଏଜ୍ - ଏଇ ସମୟଟା ଏଠି କଟିଛି ।

ଏ ସାହିର ନାଁ କାହିଁକି ଡଗରପଡ଼ା ମୁଁ ଜାଣିନି । କିନ୍ତୁ ଜାଣିବାକୁ ବହୁବାର ଇଚ୍ଛା କରି ବହୁବାର ଅସଫଳ ହୋଇଛି ।

ବୋଧହୁଏ ଏଠି ଡଗରମାନେ ରହୁଥିଲେ, ଯେତେବେଳେ କଟକ ଅଥବା ବାରଣାସୀ କଟକ (ଯାହା ବର୍ତ୍ତମାନର ବିଡ଼ାନାସୀ କଟକ)ରେ ରାଜାଙ୍କର ଆଜ୍ଞା ଘୋଷଣା କରିବା ପାଇଁ ଅନେକ ଲୋକ ଦରକାର ଥିଲେ ଏବଂ ସେମାନେ ଗୋଟେ ଗୋଟେ ଧେଣ୍ଡୁରା ଧରି ପିଟୁଥିଲେ ଓ ଘୋଷଣା କରୁଥିଲେ, 'ମହାରାଜାଙ୍କ ଆଜ୍ଞା' । ସେମାନଙ୍କ ରହିବା ସ୍ଥାନକୁ ନାମିତ କରାଯାଇଥିଲା ଡଗରପଡ଼ା ।

କିନ୍ତୁ ଡଗରପଡ଼ାରେ ରହିବା ପରେ ହଠାତ୍ ଅନୁଭବ କଲି ଯେ ମୁଁ ମଧ୍ୟ ଗୋଟିଏ ଡଗର । ବୈଷ୍ଣବ ପାଣିଙ୍କର ଗୀତିନାଟ୍ୟ ଆପଣ ଶୁଣିଥିବେ । ପ୍ରତ୍ୟେକ ଗୀତିନାଟ୍ୟରେ ଗୋଟିଏ ଡଗର ଚରିତ୍ର ଥାଏ । ଗୀତିନାଟ୍ୟ 'ଦୁଷ୍ମନ୍ତ ଶକୁନ୍ତଳା' ହୋଇଥାଉ ପଛେ କିନ୍ତୁ ଡଗର ଯେତେବେଳେ ମଞ୍ଚ ଉପରକୁ ଆସେ, ସେତେବେଳେ ସେ ଆଧୁନିକ ଜଗତର ସାଂପ୍ରତିକ ସମସ୍ୟା ସମ୍ପର୍କରେ ଗୀତ ଗାଏ । ତେଣୁ ମୁଁ ଡଗରପଡ଼ାରେ ରହି  ଭାବିଲି, ମୁଁ ବି ଗୋଟିଏ ଡଗର । କାରଣ ଗଳ୍ପ ଛଳରେ ମୁଁ ବି ସତକଥା କହୁଛି ।

ମୋର କିନ୍ତୁ ଅପକର୍ମ ଅନେକ ଥିଲା, ଯେହେତୁ ମୁଁ ବାରମ୍ବାର ଜେଲ୍ ଯାଇଥିଲି । ସେଇ ଜେଲ୍‌ର ବନ୍ଦକୋଠରି ଭିତରେ ରହି ମୁଁ ଗଳ୍ପ ଚିନ୍ତା କରୁଥିଲି । ଅବଶ୍ୟ ନୋବେଲ୍ ପୁରସ୍କାର ପାଇବା ପାଇଁ ନୁହେଁ, ମୋ ମନର ଅରମାନ୍ ମେଣ୍ଟାଇବା ପାଇଁ । ବେଳ ଗଡ଼ିଗଲା,

ମୁଁ ଅନେକ ଗଳ୍ପ ଲେଖିଲି । କିନ୍ତୁ ଲୋକମାନେ ମନଦେଇ ପଢ଼ିଲେନି । ସେମାନେ କହିଲେ, 'ସେଇଟା ଚୋରଟା' । ସିଏ କ'ଣ ଲେଖିବ ? ସେ ତ 'ସି' ଅକ୍ଷର ବିବର୍ଜିତ ।'

ମୁଁ କିନ୍ତୁ ହାରିଯିବା ଲୋକ ନୁହେଁ । ମୁଁ ଗଳ୍ପ ଲେଖିଚାଲିଲି । ମୁଁ ଜାଣିଛି, ମୋ ଚରିତ୍ର କଳଙ୍କିତ । ମୋ ଗଳ୍ପ କୌଣସି ପାଠକ ହାତରେ ଉଠାଇ ଧରିବା ସଂଗେ ସଂଗେ ଭାବିବ ଯେ ମୁଁ କୌଣସି ନାରୀର ଚରିତ୍ର ସଂହାର କରୁଛି, ଯାହା ସହିତ ହୁଏତ ମୋର ଏକ ଗୋପନ ସଂପର୍କ ଥାଇପାରେ ।

କିନ୍ତୁ ମୋ ହିସାବରେ ମୁଁ ଏତେ ଭଲ ଗଳ୍ପ ଲେଖକ ଯେ ମୁଁ ଦମ୍ଭର ସହିତ କହିପାରେ, ଅଧିକାଂଶ ଗଳ୍ପ ମୋର କପୋଳକଳ୍ପିତ । ଅନେକ ନାୟିକା ମୋର ମାନସକନ୍ୟା - ଆଉ ମାନସକନ୍ୟା କେବେ ମାନସୀ ହୋଇପାରେନା ।

କିନ୍ତୁ ମୋର ବ୍ୟକ୍ତିଗତ ଜୀବନ ଲୋକମାନଙ୍କ ସମ୍ମୁଖରେ ଏତେ ଦୟନୀୟ ଭାବରେ ବିକ୍ଷିପ୍ତ ଓ ବ୍ୟତିବ୍ୟସ୍ତ ହୋଇ ପଡ଼ିଥାଏ ଯେ ମୋର ଏଇ ଭଲ ଗୁଣଟି ମାନେ ଏଇ ଗଳ୍ପ ଲେଖିବା ଗୁଣଟି ସବୁବେଳେ ଘୋଡ଼େଇ ହେଇଯାଏ । କିନ୍ତୁ କେହି ଜଣେ ବନ୍ଧୁ ମତେ କହିଥିଲେ ଯେ 'ଓ ହେନେରୀ' ହୋଇ ଲେଖିଯାଅ । ଯଦି ପ୍ରକୃତରେ ତୁମ ପାଖରେ ପ୍ରତିଭା ଥିବ ତେବେ ଲୁହାସିନ୍ଦୁକ ଭିତରେ ବି ତାଲାପକେଇ ରଖିଲେ ତମେ ବାହାରିଆସିବ ।

ଓ ହେନେରୀର ଏତିକି ସାନ୍ତ୍ୱନା ଯେ ସେ ଏକ ଜ୍ୱଳନ୍ତ ପ୍ରତିଭା ଯାହାର ତେଜ ଏ ଦୁନିଆ ଦେଖିପାରିଲାନି । ଓ ହେନେରୀ ସବୁଗପ ମିଛ ଗପ ଲେଖେ ସତ, କିନ୍ତୁ ସେସବୁ ଗପରେ ସତକୁ ନୂଆକରି ଆବିଷ୍କାର କରେ । ନିଜେ ନିଜ ଗପ ପଢ଼ି ଚମକିଉଠେ । ମନେମନେ କହେ, 'ଆରେ, ସତେତ, ଏମିତି ବି ଗୋଟେ ଘଟଣା ଘଟିପାରେ !'

ଏ ସମ୍ପର୍କରେ ଗୋଟେ ଘଟଣା କହୁଛି । ଓ ହେନେରୀ ଗୋଟେ ଗପ ଲେଖିଥିଲା ଯାହାର ନାମ ଥିଲା 'ମହାନଦୀରେ ଅନ୍ଧାରିବିହାର' । ଅନ୍ଧାର ରାତିରେ ନାୟକ ତା'ର ନାୟିକାକୁ ନେଇ ଗୋଟେ ଡଂଗାରେ ଯାଉଛି ମହାନଦୀରେ ଭାସିଭାସି । ଅବଶ୍ୟ ଖରାଦିନିଆ ନଦୀ । ସ୍ରୋତ ନାହିଁ କି ଗଭୀର ପାଣି ନାହିଁ । କିନ୍ତୁ କ'ଣ କରିବ ନାୟକ ? ନୟିକା ତ ପହଁରା ଜାଣିନି । ଜାଣିଥିଲେ, ଦୁହେଁ ପହଁରି ପହଁରି କୂଳକୁ ଆସିଯାଇଥାନ୍ତେ । ଏ ଏକ ଚମତ୍କାର ପରିକଳ୍ପନା, ଯଉଁଟା ମୋ ମୁଣ୍ଡରୁ ବାହାରିଥିଲା । ଯାକୁ  ଜୀବନରେ ମୁଁ କେବେ ସତକରି ପାରିଲିନି, କିନ୍ତୁ ଗୋଟେ ଗଳ୍ପ ଲେଖିଲି, ପଢ଼ି ଅନେକ ଭାବିଲେ, ଏଇଟା ଗୋଟେ ସତକଥା । ତେଣୁ ଏ ଗଳ୍ପ ଅମର ହୋଇଗଲା । ଓ ଦିନେ ଜଣେ ଭଦ୍ରମହିଳା ଓ ହେନେରୀକୁ ଫୋନ୍ କଲେ । ରାତି ଅନେକ ।

'ହ୍ୟାଲୋ !'

'ହ୍ୟାଲୋ !'

ଆପଣ କ'ଣ ସେଇ ଗାଳ୍ପିକ ଯିଏ 'ମହାନଦୀରେ ଅନ୍ଧାରୀବିହାର' ଗଳ୍ପ ଲେଖିଛନ୍ତି ?'

‘ହଁ, ମୁଁ ସେଇ ।’

‘କିନ୍ତୁ ଆପଣଙ୍କର ନାମ ପଛରେ ଅନେକ କଳଙ୍କ । ଅର୍ଥାତ୍ ଆପଣଙ୍କ ନାଁ ଅସଲି ନୁହେଁ । କାରଣ ଅସଲି ଲୋକଟିର ଅପକର୍ମ ସାରା ଦୁନିଆ ଜାଣେ ।’

‘ଆପଣଙ୍କ କହିବା କଥା କୁହନ୍ତୁ ।’

‘ଏତେ ଅପକର୍ମ ଭିତରେ ଆପଣ କେମିତି ଏମିତି ଗୋଟେ ଗପ ଲେଖିପାରିଲେ ? ବୋଧହୁଏ ଆପଣ ଅସଲ ଜୀବନରେ ଯେପରି ଅନ୍ୟକୁ ଦୁଃଖ ଦେଇପାରନ୍ତି, ସେଇପରି ଏଇ ନକଲ୍ ନାମରେ ଗୋଟେ ସରଳ ଝିଅକୁ ବଦନାମ କରିଛନ୍ତି ।’

‘ହୁଏତ କରିଛି, କିନ୍ତୁ ଆପଣ କେମିତି ଜାଣିଲେ, ଏହା ଏକ ସତ୍ୟ ଘଟଣା ଉପରେ ଆଧାରିତ ?’

‘ଏହା ସତ୍ୟ – ଡାଇରେକ୍‌ଟଲି ଫ୍ରମ୍ ହରସେସ୍ ମାଉଥ । ଯେଉଁ ଲୋକ ଉପରେ ଆପଣ ଆପଣଙ୍କ ପ୍ରେମିକାକୁ ନେଇ ଡଂଗାରେ ବସି ଖସି ପଳେଇବାକୁ ଚେଷ୍ଟା କରୁଥିଲେ - ସେଇ ଲୋକ କହୁଥିଲା ।’

‘ସେଇ ଲୋକ କହୁଥିଲା ? କ’ଣ ମୋ ଗଳ୍ପ ପଢ଼ିବା ଆଗରୁ ନା ମୋ’ ଗଳ୍ପ ପଢ଼ିବା ପରେ ?’

‘ସେ ଆପଣଙ୍କ ଗଳ୍ପ ଆଦୌ ପଢ଼ିନାହାନ୍ତି । ଆପଣ କେମିତି ଆଶାକରୁଛନ୍ତି, ସେ ଆପଣଙ୍କର ପ୍ରେମିକାର ମାମୁପୁଅ ଭାଇ ଆପଣଙ୍କ ଗପ ପଢ଼ିବେ ? ବରଂ ପୁରାତନ ଇତିହାସକୁ ଘୃଣାକରିବେ ।’

‘ମାନିଲି, ସେ ପଢ଼ିନାହାନ୍ତି । ଘୃଣାକରିବା ମାନେ ନୁହେଁ ଯେ ପୁରୁଣା ଦିନର ଘଟଣା (ଅର୍ଥାତ୍ ମୋ ପ୍ରେମଜନିତ ଘଟଣା)କୁ ନେଇ ଆଗରେ ଆଲୋଚନା କରି ବାହାଦୁରି ନେବ ।’

ସେପାଖରେ ନୀରବତା । ବର୍ତ୍ତମାନ ସେ ବୁଝିପାରିଲେ ଯେ ଯେଉଁ ଭଦ୍ରବ୍ୟକ୍ତି ଏଇ ଘଟଣାଟି ବନେଇଚୁନେଇ କହିଛନ୍ତି ସେ ନିଶ୍ଚୟ ମୋ ଗଳ୍ପ ଲୁଚେଇଲୁଚେଇ ପଢ଼ନ୍ତି ଏବଂ ପଢ଼ିଛନ୍ତି । ସେ କହିଲେ –

‘ତା’ହେଲେ ଏଥିରୁ କ’ଣ ବୁଝିବାକୁ ପଡ଼ିବ ?’

‘ବୁଝିବାକୁ ପଡ଼ିବ ଏଇଆ ଯେ ସେପରି ଚରିତ୍ର ନାହିଁ । ସେମିତି ଘଟଣା ଘଟି ନଥିଲା । ଏସବୁ ମୋର କଳ୍ପନା, କିନ୍ତୁ ମୋର ଏଇ ଗୌଣ ପାପ ସହିତ ସଂଶ୍ଳିଷ୍ଟ ଅନ୍ୟାନ୍ୟ ଚରିତ୍ର ନିଜନିଜକୁ ଆବିଷ୍କାର କରନ୍ତି ଗୋଟିଏ ଗୋଟିଏ ଚରିତ୍ର ରୂପେ ମୋ କାହାଣୀରେ । ତେଣୁ ବଢ଼େଇ ନିଅନ୍ତି ।’

‘ଏଇଥିପାଇଁ ଗର୍ବ ନୁହେଁ, ଗର୍ବ ଏଇଥିପାଇଁ ଯେ ଏ ବିଷୟରେ ଜଣେ ଭଦ୍ରମହିଳା ତାଙ୍କ ନିଜ ପରିଚୟ ନ ଦେଇ ମୋ ଭୁଲିଯାଇଥିବା ଅଧ୍ୟାୟ ଉପରେ ଆଲୋଚନା କରୁଛନ୍ତି । ହୁଏତ ନିଜ ସ୍ୱାମୀ ଅଜାଣତରେ ।’

'ଆପଣ କେମିତି ଜାଣିଲେ ମୁଁ ବିବାହିତ ? ମୁଁ କୁମାରୀ ହୋଇଥାଇପାରେ ।'

'ଖୁବ୍ ସରଳ । କୌଣସି କୁମାରୀ ଏ ବିଷୟରେ ଜାଣିବାକୁ ପଚାରିବନି । କୁମାରୀ ଯେତେବେଳେ ତା' ପ୍ରେମିକକୁ ଭଲପାଏ, ସେତେବେଳେ ତା' ଅତୀତକୁ ନଜର ଦିଏନା । କିନ୍ତୁ ଜଣେ ଭଦ୍ରମହିଳା ତଥା ବିବହିତା ଯେତେବେଳେ ଅନ୍ୟ ପୁରୁଷ ପ୍ରତି ଇଣ୍ଟରେଷ୍ଟେଡ୍ ହୁଅନ୍ତି, ସେତେବେଳେ ସେଇ ଲୋକର ପୁରୁଣା ଖାତା ଆଗେ ଖୋଲନ୍ତି ।'

'ଆପଣଙ୍କର ଚମତ୍କାର ଆନାଲିସିସ୍ । ଆଉ କ'ଣ କୁହନ୍ତୁ ।'

'କହିବା ପାଇଁ ଆପଣ ମତେ ଫୋନ୍‌କଲେ । ଶୁଣିବା ପାଇଁ ମୁଁ ଫୋନ୍ ଉଠାଇଲି ।'

'ଏଇକଥା ଶୁଣିପାରିଲା ପରେ - ବ୍ୟକ୍ତିଗତ ଭାବେ ଆପଣଙ୍କ ସହିତ କଥାବାର୍ତ୍ତା କରିବାକୁ ଇଚ୍ଛା ହେଉଛି ।'

'ସେ ସ୍ୱପ୍ନ ବି ସଫଳକରିବା କାମ ଆପଣଙ୍କ ହାତରେ । କାରଣ ଆପଣ ଜାଣନ୍ତି ଆପଣଙ୍କ ବାତାବରଣ ।'

'ସୁଯୋଗ ଆସିଲେ ଜଣେଇବି । ଆଜି ପାଇଁ ରହିଲି ।'

ବାଃ ! ସାମାନ୍ୟ ଗୋଟେ କଳ୍ପନା । ଯାହା ନଈକୂଳରେ ବସିଥିଲାବେଳେ ମୋ ମୁଣ୍ଡକୁ ଆସିଥିଲା ଆଉ ନିଜକୁ ନିଜେ ନେଇ ସେଇ ଡଂଗା ଉପରେ ଭସେଇଦେଇଥିଲି ମହାନଦୀର ନିଶ୍ଚଳ ଜଳରେ । କୌଣସି ଏକ ଅନ୍ଧାର ରାତି । ମୋ ପ୍ରେମିକା ନଥିଲା ପାଖରେ । କିମ୍ବା ତାକୁ ନେଇ ଏତେବଡ଼ ସାହସ କରିବାର ଅବକାଶ ମଧ୍ୟ ମୋର ନଥିଲା । ନଈକୂଳରେ ବସିଥିଲି ।

ହଠାତ୍ ଦେଖିଲି, ନଡାବୁହା ହେଇ ଆସିଥିବା ଡଂଗାଟା ବୋଧହୁଏ ଢିଲାବନ୍ଧା ହୋଇଥିବା ହେତୁ ପବନରେ ଖେଳିଗଲା ଓ ନଈ ଭିତରକୁ ଚାଲିଗଲା ଏକ ଲକ୍ଷ୍ୟହୀନ ଯୁବକ ପରି । ମୁଁ ମନେମନେ ହଠାତ୍ ଚିନ୍ତାକଲି, 'ଆଃ, ଏଇ ଡଙ୍ଗାଟା ଆପେ ଲାଗୁଥାଆନ୍ତା ଓ ମୁଁ ଗୋଡ଼ରେ ଧକ୍କା ଦେଇ ପୁଣି ନଈମଝିକୁ ଚାଲିଆସନ୍ତି'-

ଏଇଠୁ ସୃଷ୍ଟିହେଲା ହେନେରୀର ଗୋଟେ ଗଳ୍ପ । ଛାପାହେଲା । ଆଉ ଗୁଜବ ବଢ଼ି ବଢ଼ି ଗଢ଼ି ଗଢ଼ି ଆସି କୋଉଠି ପହଂଚିଲାଣି । ଓ ହେନେରୀର ଦୋଷ, ସେ କାହିଁକି ଏପରି ଗୋଟାଏ ଗପ ଲେଖିଲା ! ତେଣୁ ମୋର ହେଲା ନିର୍ବାସନ, ଏବଂ ନିଜ କୋଠରିରେ ନିଜେ ହେଲି ବନ୍ଦୀ ।

ଫୋନ୍ କରିଥିବା ଭଦ୍ରମହିଳା ଧୀରେଧୀରେ ପାଖେଇଆସିଲେ ମତେ ପୁଣି ଦ୍ୱିତୀୟ ଥର କ୍ରିମିନାଲ କରିଦେବା ପାଇଁ । କିନ୍ତୁ ସେତିକିରେ ତାଙ୍କୁ ଶାନ୍ତି ଘଟିଲାନି । ସେ ଆଉ ଜଣେ ଭଦ୍ରମହିଳାଙ୍କୁ ଖବରଦେଲେ ଏଇ ଗଳ୍ପ ବିଷୟରେ ଓ ଓ ହେନେରୀ ନାଁରେ ଏକ ମଜ୍ଜାଦାର

ପାପ ଯେ ଲୁଚିରହିଛି ତା'ର ସୂଚନା ମଧ୍ୟଦେଲେ । ତେଣୁ ହଠାତ୍ ଦ୍ୱିତୀୟ ଭଦ୍ରମହିଳାଙ୍କ ଫୋନ୍ ।

'ହ୍ୟାଲୋ !'

'ହ୍ୟାଲୋ !'

'ମୁଁ କ'ଣ ଓ ହେନେରୀଙ୍କ ସାଂଗେ କଥାବାର୍ତ୍ତା କରୁଛି ?'

ହଁ, ଆପଣ କରୁଛନ୍ତି । କୁହନ୍ତୁ ।'

'ମୁଁ ଆପଣଙ୍କ 'ମହାନଦୀରେ ଅନ୍ଧାରୀବିହାର' ଗଳ୍ପଟି ପଢ଼ି ନଥିଲି, ଏବେ ପଢ଼ିଲି ।'

'କେମିତି ଲାଗିଲା ?'

'ମିଛ କଥା ପରି ।'

'କାହିଁକି ?'

'ଏମିତି ସାହସୀ ଝିଅ କ'ଣ ଅଛନ୍ତି ?'

'ନିଜେ ପ୍ରେମ କରନ୍ତୁ, ଦେଖିବେ ସାହସ ବଳେ ହୋଇଯିବ ।'

- ମୁଁ ଯଦି କହେ, ମୋର ଆଉ ପ୍ରେମ କରିବାକୁ ବୟସ ନାହିଁ !'

'ଏ ତ ଜଣା କଥା, ପ୍ରେମ କରିବାକୁ ବୟସର ଆବଶ୍ୟକତା କିଛି ନାହିଁ । କିନ୍ତୁ ଆପଣ ଯେଉଁ ପ୍ରେମକଥା ମିନ୍ କରୁଛନ୍ତି, ସେଥିପାଇଁ ହୁଏତ ଆପଣଙ୍କର ବୟସ ନଥାଇପାରେ । କିନ୍ତୁ ପରକୀୟା ପାଇଁ ସବୁବେଳେ ବୟସ ଥାଏ - ଯଦି ଆପଣଙ୍କର ଇଚ୍ଛା ଓ ହାତରେ ଯଥେଷ୍ଟ ସମୟ ଥାଏ ।'

'ବାଃ ! ଅପା କହୁଥିଲେ ଆପଣ କେବଳ ଭଲ ଲେଖନ୍ତି ନାହିଁ, ଭଲ ଗପନ୍ତି ମଧ୍ୟ ।'

'ଭଲ ମିଛକଥା କହିଜାଣିଲେ, ଭଲ ଗପ ଲେଖିହୁଏ ।'

'ତେବେ ଏସବୁ କଥା କ'ଣ ମିଛକଥା !'

'ନାଇଁ ନାଇଁ - ମୁଁ ମିନ୍‌କଲି ବନେଇଚୁନେଇ କହିବା ଲୋକ ଭଲଗପ ଲେଖିପାରିବ । ତା' ବୋଲି ଆଦୌ କଥା କହେନା ଯେ ସେ ଖରାପ ଲେଖିବ ସେ କଥା ମୁଁ କହୁନି । ମୁଁ କହୁଛି ଯେ ମୋର ଦୁଇଟାଯାକ ଗୁଣ ଅଛି ।'

ପୁନଶ୍ଚ ଦ୍ୱିତୀୟ ଭଦ୍ରମହିଳା ମତେ କ୍ରାଇମ୍ କରିବାକୁ ପ୍ରବର୍ତ୍ତାଇଲେ । ନିଜ ପାଖରେ ବାରମ୍ବାର ବନ୍ଦୀ ହୋଇ ମଧ୍ୟ ମୋ ଗପ ଲେଖିବାର ସଉକ୍ କମିଗଲା ନାହିଁ । କାରଣ ଗପ ମାତ୍ର ଗୋଟିଏ ବାଟ ଥିଲା, ଯେଉଁବାଟେ ଓ ହେନେରୀ ତା' ନିଜ ମନକଥା ଶୂନ୍ୟ ସହିତ ଗପିପାରୁଥିଲା । ସେ ଶବ୍ଦ ତରଙ୍ଗରେ ମିଶିଯାଉଥିଲା - ଆଉ ତାକୁ ଧରିରଖିବାପାଇଁ କୌଣସି ରେଡ଼ିଓ ଆଣ୍ଟେନା ନଥିଲା ।

ଓ ହେନେରୀ ଯେଉଁ ପାପ ଅର୍ଜନ କରୁଥିଲା, ତାକୁ ସେ ପାପ ହିସାବରେ କେବେ ଦେଖୁନଥିଲା । ତାହା ତା'ର ସାମୟିକ ଉଦ୍ଦୀପନା । ସମସ୍ତେ ଏଇ ଉଦ୍ଦୀପନା ପାଇଁ ବେଳେବେଳେ ଭଲକାମ କରନ୍ତି । ଯଥା – ମନେକର ଟ୍ରାଫିକ୍ ଷ୍ଟାଣ୍ଡରେ ପୁଲିସ୍ ନାହିଁ । ତେବେ ସେ ସମୟରେ ଭୁଲବାଟରେ ଯିବା ସବୁ ଗାଡ଼ିଚାଳକଙ୍କ ପ୍ରବୃତ୍ତି । ଫରକ୍‌ଟା ଓ ହେନେରୀ ପାଇଁ ଏତିକି ଯେ ଅନ୍ୟମାନେ ଯେତେବେଳେ ପୁଲିସ୍ ନଥାଏ ଭୁଲ୍‌ବାଟରେ ଯାଆନ୍ତି କିନ୍ତୁ ଓ ହେନେରୀ ପୁଲିସ୍ ଥାଉନଥାଉ ଯାଏ । ତା'ପରେ ପୁଲସ୍ ସଂଗେ ତର୍କ । ତା'ପରେ କେସ୍ । ତା'ପରେ ଥାନା ଅଫିସରଙ୍କୁ ଧରିବା ଏସବୁ ଓ ହେନେରୀର ଉଦ୍ଦୀପନା ଓ ପ୍ରେରଣା । ତା'ରି ଭିତରେ ମିଳେ ତାକୁ ତା' ଗପର ଖୋରାକ ।

ପାପ ପରେ ପାପ ଏବଂ ଗପ ପରେ ଗପ । କିନ୍ତୁ ଓ ହେନେରୀ ଗପର ଆଲୋଚନା କେଉଁଠି ନାହିଁ । ବେଳେବେଳେ ଓ ହେନେରୀ ଭାବେ, ଏମିତି ଗୋଟେ ସୃଷ୍ଟିଛଡ଼ା ଗପ ଲେଖିବ ଯେ ସମସ୍ତେ ସେ ବିଷୟରେ ଆଲୋଚନା କରିବେ । କିନ୍ତୁ ଗପ ଆରମ୍ଭ ହୋଇଗଲା ପରେ ଧୀରେ ଧୀରେ ତା'ର ସାନ୍ଦ୍ରତା କମି ଆସେ । ଏତେ କମିଯାଏ ଯେ ପାଣି ଉପରେ ବି ଭାସେ । ଏଇ ମନେକର ମହାନଦୀରେ ଅନ୍ଧାରୀବିହାର ଗଳ୍ପ । ପ୍ରଥମେ ଠିକ୍ କଳ୍ପନାରେ ଲେଖାଚାଲିଥିଲା, କିନ୍ତୁ ଶେଷକୁ ଏମିତିଗୋଟେ ଜାଗାରେ ଆସି ପହଂଚିଗଲା ଯେ ଯେଉଁଠି ପାଠକମନରେ ଗୁଡେ ସନ୍ଦେହ ଓ ପାଠିକାମାନଙ୍କ ମନରେ କଳଙ୍କର ନିଆଁ କୁହୁଳିଗଲା ।

କିନ୍ତୁ ମୁଁ ଭାବିଲି, ଏଇଟା ହିଁ ମୋର ସଫଳତା । ଯଦି ଗୋଟେ ପୂରାପୂରି ମିଛ କଥାକୁ ଗଳ୍ପ ଆକାରରେ ଲେଖି ମୁଁ ଯଦି ଏତେ ସନ୍ଦେହର ଶିକାର ହୋଇପାରିଲି, ତେବେ ମୁଁ କିଛି କମ୍ ବଡ଼ ଗାଳ୍ପିକ ନୁହେଁ । ହୋଇପାରେ ମତେ ସରକାରୀ ସ୍ୱୀକୃତି ମିଳିନି । ସେଥିରେ କ'ଣ ଅଛି ? ମୁଁ ମୋର ବ୍ୟକ୍ତିଗତ କ୍ରାଇମ୍ ଓ ମିଛଗପ ଲେଖିବା ଭିତରେ ହିଁ ବଂଚିବି – ମୋ ନିଜ ନାଁ ଗୋଟେ ଓ ଲେଖକ ନାଁ ଓ ହେନେରୀ । କ୍ଷତି କ'ଣ ? ଜଣେ ଲୋକ ଭିତରେ ଦୁଇଟା ବ୍ୟକ୍ତିତ୍ୱ ।

କିନ୍ତୁ ଓ ହେନେରୀ ଯାହା ଲେଖିଛି ସେଥିରେ ଅସଲ 'ମୁଁ ଟି କଳଙ୍କିତ ହେଉଛି । ଅସଲ ମୁଁ ଲୋକଟି ଭଲ ବୋଲି କେବେ ପ୍ରମାଣିତ କରିବି ?

ଦିନେ ମୋ ଘର ଆଗରେ ବୁଲୁଛି । ହଠାତ୍ ଘରଭିତରୁ ଫୋନ୍‌ର ଆୱାଜ୍ ଆସିଲା ।

'କିଏ ?'

'ମତେ ଆପଣ ଚିହ୍ନିପାରିବେନି । କିନ୍ତୁ ଆପଣଙ୍କ ଗଳ୍ପପଢ଼ି ମୁଁ ପ୍ରକୃତରେ ମୁଗ୍‌ଧ ହୋଇଯାଇଛି ।'

'ଆପଣ ମୋ ଟେଲିଫୋନ୍ ନମ୍ବର ପାଇଲେ କେମିତି ?'

'କାହିଁ, ଟେଲିଫୋନ୍ ଡିରେକ୍ଟରିରୁ ।'

'ସେଥିରେ ତ ଓ ହେନେରୀ ନାଁରେ ଫୋନ୍ ନାହିଁ!'

'ଆପଣଙ୍କ ଅସଲି ନାଁରେ ଅଛି । ମୁଁ ଅସଲି ଲୋକଟିକୁ ଚିହ୍ନେ ଓ ଆହୁରି ଅନ୍ତରଂଗ ଭାବେ ଚିହ୍ନିବାକୁ ଚାହୁଁଚି । ଆପଣଙ୍କର କିଛି ଆପତ୍ତି ଅଛି ?'

ଭଗବାନ୍ ରକ୍ଷାକର । ଲୋକ ମତେ କ'ଣ ଭାବିବାକୁ ଆରମ୍ଭ କଲେଣି ? କିଏ ଏହି ନାରୀ ଯେ କି ମୋ ଅସଲ ନାଁ ଜାଣିଗଲାଣି ଓ ପୁଣି ନିକଟର ହେବାକୁ ଚାହୁଁଛି !

'ଆପଣଙ୍କ ପରିଚିୟ ?'

'ଦେଖାହେଲେ ପାଇବେ ।'

'କିନ୍ତୁ ଦେଖାହେବ କେମିତି ? ମୁଁ ଜାଣିନି, ଆପଣ କିଶୋରୀ କି ଯୁବତୀ, ଆପଣ ବିବାହିତା ନା ଅବିବାହିତା ? ଆପଣଙ୍କ ଘର ଏ ରାସ୍ତାରେ ନା ସେ ରାସ୍ତାରେ ? ଆପଣ ମୋ ଘରକୁ ଆସିବେ ନା ମୁଁ ଆପଣଙ୍କ ଘରକୁ ଯିବି ?'

'ସେସବୁ ବନ୍ଦୋବସ୍ତ ହୋଇଯିବ । ଆପଣ ଯେତେବେଳେ ଜଣେ ଏତେବଡ଼ ପ୍ରେମିକ, ଆପଣଙ୍କୁ ଏସବୁ ବିଶେଷ ଅସୁବିଧା ହେବନି । ମୁଁ ଜଣେଇବି ।'

ସେ ଟେଲିଫୋନ୍ ରଖିଦେଲେ । ବାହାରେ ଜଣେ ଯୁବକ ଅପେକ୍ଷାକରିଛନ୍ତି ।

'ସାର, ମୁଁ ଆପଣଙ୍କ ଫ୍ୟାନ୍ । ଦେଖନ୍ତୁ, ଆପଣଙ୍କ ନେମ୍‌ପ୍ଲେଟ୍ ଲେଖିଆଣିଛି । ଦେଖିଲି, ହାତରେ ତା'ର ଏକ ସୁନ୍ଦର ନେମ୍‌ପ୍ଲେଟ୍ ଯାହା ଉପରେ ଲେଖାହେଇଛି –

'ଓ ହେନେରୀ'

ମୁଁ ଖୁବ୍ ଖୁସିହୋଇ ତାକୁ ଧନ୍ୟବାଦ୍ ଜଣେଇ ତାକୁ ଗ୍ରହଣ କଲି ।

କିନ୍ତୁ ତାକୁ ମୋ ଫାଟକ ଆଗରେ ଲଗେଇବାକୁ ଇଚ୍ଛା ହେଲା ନାହିଁ । ଓ ହେନେରୀ ଗୋଟେ ସିମ୍ବଲ । ଆଉ ସିମ୍ବଲ ପଛରେ ଥିବା ମଣିଷଟି ସମ୍ପୂର୍ଣ୍ଣ କଳଙ୍କିତ । ହୁଏତ ଅସଲ ମଣିଷର duende ଜାଗ୍ରତ ହେବା ସମୟରେ କାଳିସୀ ଲାଗିଲା ପରି ସେ ଏଣୁତେଣୁ ଲେଖିପକାଏ । ସେଇମିତି ଗୋଟେ ନିଛକ ମିଛ କାହାଣୀକୁ ନେଇ ସେ ଗଳ୍ପ ଲେଖିଲା 'ମହାନଦୀରେ ଅନ୍ଧାରୀବିହାର' । ଆଉ ତାକୁ ସମସ୍ତେ ସତ ଭାବିଲେ । ସମସ୍ତେ ଭାବିଲେ, ଲୋକଟା ଖାସ୍ ପ୍ରେମିକ, ଏବଂ ନାରୀ ପ୍ରତି ହୁଏତ ତା'ର ଦୁର୍ବଳତା ଥାଇପାରେ । ତେଣୁ ଅସଲ ଲୋକକୁ କଳଙ୍କିତ କରିଛି ଏଇ ଓ ହେନେରୀ ।

ତେଣୁ ମୋ ଫାଟକ ଆଗରେ ସେଇ ନେମ୍‌ପ୍ଲେଟ୍‌ଟା ଆଉ ଲଗାହେଲାନି । ବରଂ ବଗିଚାର ଗୋଟେ ଗଛତଳେ ପଡ଼ିରହିଲା ଖରାବର୍ଷା ସହ୍ୟକରି । ଭୋଗୁଥାଉ ଓ ହେନେରୀ । ମତେ ବହୁତ କଳଙ୍କିତ କରିଛି ସେ । ତା ମୁହଁ ବି ଚାହିଁବିନି । ଗପ ବି ଲେଖିବିନି । ଆଉ ମିଛ କହିବିନି । ଏବଂ ଖୁବ୍ ଶୀଘ୍ର ଏକ ହସ୍ତାକ୍ଷର ଖାତା ଆଣି ପୁଣିଥରେ ଅଭ୍ୟାସ କରିବି ଲେଖିବାକୁ ଯେ –

'ମିଛ କହିବା ମହାପାପ ।'

ଶେଷରେ ଆସିଲା ମୋର ବିଗତ ପ୍ରେମିକା, ଯାହାକୁ ନେଇ 'ମହାନଦୀରେ ଅନ୍ଧାରୀବିହାର' ଗଳ୍ପ କଳ୍ପନା କରିଥିଲା ।

ଦେଖାହେଲା – ଅତୀତର ପୁନରାବୃତ୍ତି । କେତେ ଦୃଶ୍ୟ – କେତେ ହସ – କେତେ କାନ୍ଦ – ପ୍ରେମର ସୁନାଝରା ଦିନମାନଙ୍କରେ ଆମ ପ୍ରେମରେ ବାଧାସୃଷ୍ଟି କରୁଥିବା ଭିଲେନ୍‌ମାନଙ୍କ ବିଷୟରେ ଚର୍ଚ୍ଚା ଓ ଶେଷରେ –

'ମହାନଦୀରେ ଅନ୍ଧାରୀବିହାର' ଗଳ୍ପଟା ପଢ଼ିଲି । ଭଲଲାଗିଲା ଯେ...

'ଯେ ମାନେ... ?'

'ତମେ କ'ଣ ମତେ ରଖେଇଥୋଇ ଦେବନି ? ଯେକୌଣସି ଲୋକ ତାକୁ ପଢ଼ିବ ସେ ଭାବିନେବ ଯେ ମୋ ପାଇଁ ଲେଖାଯାଇଛି । ଏମିତି ତମେ କାହିଁ ଲେଖ ? ସବୁ କଥା ସତ ହୋଇପାରେ, କିନ୍ତୁ ତାକୁ କ'ଣ ବାହାରେ ଏମିତି କୁହାଯାଏ ?'

'ସତ ହୋଇପାରେ ମାନେ ? ତୁ ବି କ'ଣ ଭାବିଛୁ ଏଇଟା ସତ ?'

'ମୋର ମନେପଡୁଛି ଥରେ ଆମେ ଏମିତି ଡଂଗାରେ ବସି ଯାଇଥିଲେ ନା କ'ଣ ?'

'କେବେ ଯାଇଥିଲୁ ? ତୋ'ର କ'ଣ ସ୍ମୃତିଶକ୍ତି କମିଗଲାଣି ? ମୁଁ ତ କେବେ ଯାଇନି । ଏ କେବଳ କପୋଳକଳ୍ପିତ ଗଳ୍ପ । ତୁ ଭାବିନେଇଛୁ ଏଇଟା ସତ ?'

'ସମସ୍ତେ କହିଲେ – ଜଣେ ଦି'ଜଣ ଥଟ୍ଟାକଲେ – ଶେଷରେ ମୁଁ ବାଧହୋଇ ମାନିନେଲି – ହଁ, ସତରେ ଏମିତି ଗୋଟେ ଘଟଣା ଘଟିଥିଲା । ତୁମେ ଓ ମୁଁ ନଈକୂଳରେ ଖରାଛୁଟିରେ ବସିଥିଲୁ । ମୋ' ମାମୁପୁଅଭାଇ ଆସି ପହଂଚିଗଲେ ଓ ଆମେ ଦୁହେଁ ଗୋଟେ ଖାଲି ଡଙ୍ଗାରେ ଲୁଚିଗଲୁ । ଡଂଗାଟା ବନ୍ଧା ହୋଇଥିଲା, ମାତ୍ର ଖସିଗଲା ଓ ନଈ ଭିତରେ ଭାସିବାକୁ ଲାଗିଲା ।'

'ବାସ୍ ବାସ୍ – ଏମିତି ଘଟଣା ଘଟିନି, ଘଟିଚି କେବଳ ମୋ' ଗପରେ – ମୁଁ କେହି ନୁହେଁ – ଓ ହେନେରୀ ହିଁ ସବୁ – ସେ ଯାହା କହୁଛି, ତା'ରି କଥାଉପରେ ବ୍ୟକ୍ତିତ୍ୱ ଉଠୁଛି, ପଡୁଛି । ହସୁଛି, କାନ୍ଦୁଛି, ନାଚୁଛି ।'

ଫେରିଆସିଲି ତା' ପାଖରୁ । ବଗିଚାରେ ପଡ଼ିଥିବା ନେମ୍‌ପ୍ଲେଟ୍‌କୁ ପରିଷ୍କାର କରି ମୋ ଫାଟକ ଆଗରେ ଲଗେଇଦେଲି । ଓ ହେନେରୀ ଖୋଳ ଭିତରେ ରହିଗଲା ମୋ ବ୍ୟକ୍ତିତ୍ୱ – ମୋ ପ୍ରେମ... ।

# ଜୁଆର

କାଲି ମୋ' ଗଳିଟା ହୋଇଗଲା ଜୁଆରିଆ ସମୁଦ୍ର । କିନ୍ତୁ ମତେ ନିଦ ଲାଗିଆସୁଥିଲା ଓ ଆବଛାୟା ନିଦରେ ମୁଁ ଦେଖୁଥିଲି ସମୁଦ୍ରରେ ଅସଂଖ୍ୟ ଢେଉ । କେବଳ ଶବ୍ଦର ଢେଉ । ଘୁ ଘୁ ହୋଇ ମାଡ଼ିଆସୁଥିଲା ଛକ ଉପରେ ଗଳିର ମଝି ପର୍ଯ୍ୟନ୍ତ ଏବଂ ଫେରିବାର ଶବ୍ଦ ।

ଏକ ଦିଗନ୍ତଭରା କୁକୁର ଭୁକୁଥିଲେ ଦୂରରେ ଏବଂ ସମୁଦ୍ର ଲହଡ଼ିର ଫେରନ୍ତା ବାଟରେ ଆସି ସେମାନେ ତଡ଼ିଦେଉଥିଲେ ସମୁଦ୍ରକୁ, ମୋର ବୁଝିବାର ବାହାରେ । ଏ କ'ଣ ଗୋଟେ ଶବ୍ଦ, ଯାହା ସ୍ଥିର ହୋଇଯାଇଛି ! କିନ୍ତୁ ଶବ୍ଦରୁ ବାହାରେ ପ୍ରତିଧ୍ୱନି ଏବଂ ପ୍ରତିଧ୍ୱନିରୁ ବାହାରେ ପ୍ରତିଧ୍ୱନି ।

ପୁଣି କୁକୁର ଭୁକିଲେ, ମୋର ଏକ ଆତଙ୍କ ।

'ଏ କୁକୁରମାନେ ସମୁଦ୍ରର ଜୁଆରକୁ ଭୁକୁଛନ୍ତି ନା ।' ସମୁଦ୍ର ଭାସମାନ ଏକ ନିଶ୍ଚିତ ମୃତ୍ୟୁର ଶବକୁ ଦେଖିକି ଭୁକୁଛନ୍ତି !

ଧୀରେଧୀରେ କୁକୁରଙ୍କ ଭୁକା କ୍ଷୀଣତର ହୋଇଆସୁଥିଲା । ଶେଷରେ କେବଳ ଦୁଇଚାରିଟା କୁକୁର ଭୁକୁଥା'ନ୍ତି । ତା' ବି ଧୀରେଧୀରେ ବନ୍ଦ୍ ହୋଇଗଲା ।

ତା'ପରେ ହଠାତ୍ ନିସ୍ତବ୍ଧ ନୀରବ ସବୁ । ସମୁଦ୍ରର ଶବ୍ଦ ଶୁଭୁ ନାହିଁ କିମ୍ବା ଦିଗନ୍ତଭରା କୁକୁରଙ୍କ ରାବ ଶୁଭୁ ନାହିଁ ।

ସକାଳ ହେଲା । ସାହିସାରା ନୀରବତାର ଏକ ପାହାଡ଼ । ମୁଁ ଫାଟକ ଖୋଲି ରାସ୍ତା ଉପରକୁ ଆସିଲି ।

ଅସଂଖ୍ୟ କୁକୁରଙ୍କ ମଲାଦେହ ।

ଛକ ଉପରେ ଥିବା ପାନଦୋକାନୀକୁ ପଚାରିଲି – କାଲିରାତିରେ ଏ କୁକୁରମାନଙ୍କର ଭୁକିବାର କାରଣ ?

ଦୁଇଚାରିଜଣ କହିଲେ ଯେ କାଲି ମ୍ୟୁନିସିପାଲଟି ପଠେଇଥିଲା ଗୋଟିଏ କୁକୁରଧରା ଗାଡ଼ି । କାରଣ ଆମ ସାହି ଭିତରକୁ ପଶିଆସିଥିଲା ଗୋଟେ ପାଗଲା କୁକୁର । ଯାହାର କାମୁଡ଼ା ଖାଇଲେ ସବୁ କୁକୁର ଓ ମଣିଷ ପାଗଳ ହୋଇଯିବେ । ତେଣୁ ଆମ ସାହି ସମାଜସେବୀ ମୁରବିମାନେ ମ୍ୟୁନିସିପାଲଟିକୁ ଖବର ଦେଇଥିଲେ, ସେଇ ପାଗଲା କୁକୁରକୁ ବିଷଦେଇ କିମ୍ବା ବାଡ଼େଇ ବାଡ଼େଇ ମାରିବାକୁ ।

ମୁଁ ଆଶ୍ୱସ୍ତ ହେଲି ।

କିନ୍ତୁ ହଠାତ୍ ଦେଖିଲି, ସେଇ ପାଗଲା କୁକୁରଟି ଚାଖଣ୍ଡେ ଲମ୍ବର ଜିଭ ହଲେଇ ଗୋଟେ ପଥରଖଣ୍ଡ ପାଖରେ ବସିଛି ।